ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)-୫୩

# କବି ଦୀନକୃଷ୍ଣ ଗ୍ରନ୍ଥାବଳୀ

## (ଦ୍ୱିତୀୟ ଭାଗ)

ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟ
ଓଡ଼ିଶା, ଭୁବନେଶ୍ୱର

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)—୫୩

# କବି ଦୀନକୃଷ୍ଣ ଗ୍ରନ୍ଥାବଳୀ

( ଦ୍ୱିତୀୟ ଭାଗ )

ସଙ୍କଳନ ଓ ସମ୍ପାଦକ
**ପ୍ରଫେସର କାହ୍ନୁ ଚରଣ ମିଶ୍ର**

ପ୍ରକାଶକ :

**ସଂସ୍କୃତି ନିର୍ଦ୍ଦେଶାଳୟ, ଓଡ଼ିଶା**

ଭୁବନେଶ୍ୱର

ପ୍ରଥମ ସଂସ୍କରଣ :

**୨୦୦୦ ମସିହା**

ମୁଦ୍ରକ :

**ଭଗବତୀ ପ୍ରେସ୍**

ଝାଙ୍ଗୀ, ସମଗଡ଼, କଟକ

**ମୂଲ୍ୟ—ଟ ୧୦୪-୦୦**

Orissan Oriental Test Series (Oriya)—53

# KAVI
# DEENAKRUSHNA GRANTHAVALI
## ( Part—II )

Complited & Edited by
Prof. Kanhu Charan Mishra

Published by :

**Directorate of Culture, Orissa**
Bhubaneswar

Frist Edition—**2000 A.D.**
500 Copies

Printed at :

**Bhagabati Press**
Tangi, Ramgarh, Cuttack.

**Price—Rs. 104-00**

# ଅଗ୍ରଲେଖ

ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟ ପକ୍ଷରୁ 'ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା'ର ଏକାବନତମ ଅବଦାନ ରୂପେ 'ଦୀନକୃଷ୍ଣ ଗ୍ରନ୍ଥାବଳୀ' ପ୍ରଥମ ଭାଗ ୧୯୯୮ ମସିହାରେ ପ୍ରକାଶିତ ହୋଇଅଛି । ସେଥିରେ ସଂକଳକ ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କ ଦ୍ୱାରା ପ୍ରସ୍ତୁତ ବିସ୍ତୃତ ମୁଖବନ୍ଧ ସହ କବି ଦୀନକୃଷ୍ଣଙ୍କର ପ୍ରଖ୍ୟାତ କାବ୍ୟ ରସକଲ୍ଲୋଳ, ଜଗମୋହନ ଛାନ୍ଦ, ରାମ ପୁରାଣ, ଅଲଙ୍କାର ବୋଲି ଏବଂ କୃପାସିନ୍ଧୁ ଲଙ୍ଘପ୍ତି ଓ କଳ୍ପଦ୍ରୁମାବଳୀ ନାମକ ସଂସ୍କୃତ ରଚନା ଦୁଇଟି ସନ୍ନିବେଶିତ ହୋଇଛି ।

ପ୍ରସ୍ତୁତ ଦ୍ୱିତୀୟ ଭାଗରେ ଦୀନକୃଷ୍ଣ ଦାସ ବିରଚିତ କମଳାକାନ୍ତ ଚଉତିଶା, ଗୁଣସାଗର, ଧର୍ମପୁରାଣ, ଆରତତ୍ରାଣ ଚଉତିଶା ଓ ମାଘମାହାତ୍ମ୍ୟ ମୁଦ୍ରିତ ହୋଇଛି । ପୂର୍ବରୁ ମୁଖବନ୍ଧରେ ସ୍ପଷ୍ଟ କରି ଦିଆଯାଇଛି ଯେ ଓଡ଼ିଆ ସାହିତ୍ୟ ଜଗତରେ ଏକାଧିକ ଦୀନକୃଷ୍ଣଙ୍କର ଆବିର୍ଭାବ ହେତୁ ସମ୍ପାଦକ ପ୍ରଫେସର ମିଶ୍ର ଦୀନକୃଷ୍ଣ ଦାସ ଭଣିତ ସମସ୍ତ ରଚନା ସଂକଳନ କରିଛନ୍ତି ।

ବିଭିନ୍ନ ବାଧାବିଘ୍ନ ମଧ୍ୟରେ ଗ୍ରନ୍ଥାବଳୀର ଶଂସିତ ସଂସ୍କରଣ ପ୍ରକାଶ ଲାଭ କରୁଛି । ତେଣୁ କିଛି ଦୋଷତ୍ରୁଟି ରହିଥିବା ଅସମ୍ଭବ ନୁହେଁ, ତଥାପି ପାଠକ ଓ ଗବେଷକମାନଙ୍କର ଆକାଂକ୍ଷା ପୂରଣରେ ସହାୟକ ହେବ ବୋଲି ଆଶା ।

**ନରେନ୍ଦ୍ର କୁମାର ମିଶ୍ର**
୧୦-୧୦-୨୦୦୦
ନିର୍ଦ୍ଦେଶକ, ସଂସ୍କୃତି

# ଗ୍ରନ୍ଥ ସୂଚୀ



—×—

# କମଳାକାନ୍ତ ଚଉତିଶା

( ରାଗ ଦେଶାକ୍ଷ )

କମଳାକାନ୍ତ ବାହାନ ଭକ୍ଷଧାରୀ ନାରୀଯାନ
ତା ସୁତ ତା ରିପୁ ପୂର୍ଣ୍ଣ ମୁଖ ମଳିନ ।
କନକପୁର ଯାହାର ତା ରିପୁ ଦୂତ ଭଣ୍ଡାର
କରିଛ ପାଣି ସଂଯୋଗ ରବିସୁତେଣ ।
କୁଚେ ପଡ଼େ କଜ୍ଜଳପାଣି,
କରି ରିପୁପତି ମସ୍ତକରେ କି ଜାଣି । ୧ ।

ଖସିଛି କବରୀ ଭାର ପଡ଼ୁଛି ଚମର ପର
ଝରରିପୁ ଗଗନରେ ଯେସନେ ଶୋଭା ।

---

୧ । କମଳା ଲକ୍ଷ୍ମୀ କାନ୍ତ ବିଷ୍ଣୁ, ବାହାନ ଗରୁଡ଼, ଭକ୍ଷ ସର୍ପ ଧାରୀ ଶିବ, ନାରୀ ଦୁର୍ଗା, ଯାନ ସିଂହ ତା ସୁତ ଅର୍ଥାତ୍ ସିଂହିକା ସୁତ ରାହୁ ରିପୁ ଚନ୍ଦ୍ର ପୂର୍ଣ୍ଣ କି ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ମୁଖ ମଳିନ ହୋଇଅଛି କନକପୁର ଲଙ୍କା, ଯାହାର ରାବଣର ରିପୁ ରାମଚନ୍ଦ୍ର, ଦୂତ ହନୁମାନ, ଭଣ୍ଡାର ଗାଲ, ପାଣି ହସ୍ତ, ରବି ସୁତ ଅର୍ଥାତ୍ କର୍ଣ୍ଣ ଅର୍ଥାତ ଗାଲ ଓ କର୍ଣ୍ଣରେ ହାତ ଦେଇ ବସିଛ । ମାନକରି କାନ୍ଦିବାରୁ କଜ୍ଜଳପାଣି ଯେ ଆଖିର ଲୁହ ସେ କୁଚ ଉପରେ ପଡ଼ୁଅଛି, କରୀ ହସ୍ତୀ ରିପୁ ସିଂହ, ପତି ପାର୍ବତୀ, ପତି ଶିବ ଅର୍ଥାତ୍ ମହାଦେବଙ୍କ ଉପରେ ଆକାଶ ଗଙ୍ଗାର ଧାର ପଡ଼ିଲା ପ୍ରାୟ ଜଣାଯାଏ ।

୨ । ଖସିଛି କି ମନଯୋଗେ କବରୀ ଭାର ପଡ଼ୁଛି ଚରମରେ ପିଠି-ଉପରେ, ଝର୍ଝରିପୁ ମେଘ ଗଗନ ଆକାଶ । ଅର୍ଥାତ୍ ପିଠି ଉପରେ ବାଳ ଫିଟି ପଡ଼ି ଆକାଶରେ ମେଘ ଉଦୟ ହେଲାପରି ଶୋଭା ପାଉଛି, ସୀମା କରି ସିଂହ

କ୍ଷୀଣ କଟୀ ଶଶୁମଦ ଭାଲରେ ଚନ୍ଦନ ବିନ୍ଦୁ
ସମ୍ପୂର୍ଣ୍ଣ ଉଦୟ ଦ୍ୱିଜରାଜ କି ଅବା ।
କାଞ୍ଚନ ତୋ କର୍ଣ୍ଣ କୁଣ୍ଡଳ
ଖଗପତି ସୁତର ମୁକୁଟ ମଣ୍ଡନ । ୨ ।

ଗଜଶିର ମୋତିଫଳ ପ୍ରବାଳେ ମିଶ୍ରିତ ମାଳ
ଗଳାରୁ କାଢ଼ି କି କମ୍ପା ଥୋଇଛ ତଳେ ।
ଗଙ୍ଗାଧର ନାରୀଯାନ ଶତ୍ରୁଦନ୍ତ ପଲ୍ୟଙ୍କେଣ
ନଶୋଇ ଶୋଇଛ କମ୍ପା ଶାରଙ୍ଗ ପରେ ।
ଗୋରୀ ମୋତେ କଲ କି ମାନ ।
ଗଙ୍ଗାଧର ଧାରୀ ମୁଖୀ ତୁ ମୋ ଜୀବନ । ୩ ।

ଘୃତଭୋଗୀ ଶତ୍ରୁସୁତ ଘଟଣ ମୁଖ ଦୀପିତ
ଘୂମିତ ଦଶୁଛି ବନ ସୁତ ଲୋଚନ ।
ଘାତକ କର ଅରି ଶତ୍ରୁ ଅଗେ ଲୋଚନ ଘୋର

ଶତ୍ରୁ ମୃଗମଦ, କସ୍ତୁରୀ, ଭାଲ ପଟଳେ କସ୍ତୁରୀ ବିନ୍ଦୁ ଉପରେ ଚନ୍ଦନ ବିନ୍ଦୁ ଯୋଗଥିବାରୁ ଦ୍ୱିଜରାଜ ଚନ୍ଦ୍ର, ପୂର୍ଣ୍ଣଚନ୍ଦ୍ର, ଉଦୟ ହେଲ ପ୍ରାୟ ଦେଖାଯାଏ । ତୋହର କର୍ଣ୍ଣରେ ଥିବା କୁଣ୍ଡଳ ଖଗ ଗରୁଡ଼ପତି ଶ୍ରୀକୃଷ୍ଣ ସୁତ କନ୍ଦର୍ପ, କନ୍ଦର୍ପର ଦର୍ପଣ ପ୍ରାୟ ଦେଖାଯାଏ ।

୩ । ଗଜମୋତି ଓ ପ୍ରବାଳ କି ପୋହଳା ମିଶ୍ରିତ ଗୁନ୍ଥା ହୋଇଥିବା ମାଳାକୁ ଗଳାରୁ କାଢ଼ି କାହିଁକି ତଳେ ରଖିଦେଇ ଅଛ । ଗଙ୍ଗାଧର ଶିବ ନାରୀ ଦୁର୍ଗା, ଯାନ ସିଂହ, ଶତ୍ରୁ ହସ୍ତୀ, ହସ୍ତୀ ଦନ୍ତ ପଲ୍ୟଙ୍କ ତ୍ୟାଗ କରି ଶାରଙ୍ଗ ପୃଥିବୀ ଭୂମିରେ ଶୋଇଛ କାହିଁକି । ହେ ଗୋରୀ ! ମୋତେ ମାନ କଲକି ? ଗଙ୍ଗାଧର ଶିବ ଧାରୀ ଚନ୍ଦ୍ର, ହେ ଚନ୍ଦ୍ରମୁଖୀ ! ତୁମେ ମୋ ଜୀବନର ଜୀବନଦାତ୍ରୀ ।

୪ । ଘୃତଭୋଗୀ ଅଗ୍ନି, ଶତ୍ରୁ ଜଳ, ସୁତ ପଦ୍ମ, ପଦ୍ମପ୍ରାୟ ଘଟଣ ହୋଇ ପ୍ରକାଶ ପାଉଥିବା ମୁଖରେ, ବନ ଜଳସୁତ ରକ୍ତପଦ୍ମ ପରି ରଙ୍ଗ ହୋଇ ନେତ୍ର ଘୂମାଇଲା ପରି ଦିଶୁଛି । କରି ହସ୍ତୀ ଅରିର ସିଂହ, ଶତ୍ରୁ ମୃଗ ଶବର ଦ୍ୱାରା ଆଘାତ ପାଇ ଯେପରି ନିଶ୍ୱାସ ଛାଡ଼ଇ ପ୍ରାୟ ତୁ ଘନଘନ ନିଶ୍ୱାସ ଛାଡ଼ ବାମନା

ଘନଘନ ହୋଇ ଶ୍ୱାସ ମନ ବମନ ।
ଘଟଣ ତୋ ଅଳକା ପନ୍ତି ।
ଯେନଣ ବଦରେ ଚନ୍ଦ୍ର ଚକୋର ପନ୍ତି । ୪ ।

ନବୀନ ମୁକୁର କାନ୍ତି ନନ୍ଦେ ଗଣ୍ଡସ୍ଥଳ ଜ୍ୟୋତି
ନିବେଶିଛୁ ଶଚିପତି ବାହାନ ନେଇ ।
ନଖରେ ଶାରଙ୍ଗ ଚର ଆନନ୍ଦ ଶାରଙ୍ଗୋ ପର
ନୀଳକଣ୍ଠ ଶିରରେ କି ଶଶାଙ୍କ ଉଇଁ ।
ନୀଳକଣ୍ଠ ଶାରଙ୍ଗ ଉରେ
ନିଶ୍ଚୟ ଧରିଛି ରୂପ ଶାରଙ୍ଗ ପରେ । ୫ ।

ଚନ୍ଦ୍ର ତାତ ସୁତ ନାସେ ମାରଧନୁପାଶ କି ସେ
ଚନ୍ଦ୍ରଧାରୀ ଶମ୍ଭୁବାମ ନିଶ୍ୱାସ ମଣି
ଚଣ୍ଡୀ ତାପେ ନପ ନାଶେ ଦେଖିଗଲା ତିଳ ପୁଷ୍ପେ
ଶୁକ ମୁଖା ନାସା ଶୋଭା ଭାରତୀ ଜଣି ।

---

ହୋଇଅଛୁ । ତୋହର ଅଳକାଶ୍ରେଣୀ ଏପରି ଘଟନା ହୋଇଅଛି କି ଚନ୍ଦ୍ର ଚକୋର ପନ୍ତି ଯେନ ବଦାର କଲା ପ୍ରାୟ ଅର୍ଥାତ ତୋହର ମୁଖ ଚନ୍ଦ୍ର ଓ ଅଳକା ଚକୋର ପନ୍ତି ।

୫ । ନବୀନ ନୂତନ ମୁକୁର ଦର୍ପଣ କାନ୍ତି ଶୋଭା ନୂତନ ଦର୍ପଣ ଶୋଭାକୁ ନିନ୍ଦା କରୁଥିବା ଗଣ୍ଡ ସ୍ଥଳରେ ଶଚିପତି ଇନ୍ଦ୍ର ବାହାନ ହସ୍ତୀ କି ହସ୍ତ, ହସ୍ତ ଦେଇ ବସିଛୁ । ନଖରେ ଶାରଙ୍ଗ କି ପୃଥିବୀକୁ ଚିରୁଛୁ, ଶାରଙ୍ଗ କି ସ୍ତନ ଉପରେ ମୁଖ ରଖିବାରୁ ନୀଳକଣ୍ଠ କି ଶିବଙ୍କ ମସ୍ତକରେ ଶଶାଙ୍କ ଚନ୍ଦ୍ର ଉଦୟ ପ୍ରାୟ ଦିଶୁଛି । ଅନୁମାନ ହୁଅଇ ନୀଳକଣ୍ଠ ଯେ ଶିବ ସେ ଶାରଙ୍ଗ ମସ୍ତକ ଉପରେ, ଶାରଙ୍ଗ ଚନ୍ଦ୍ରଙ୍କୁ ଧରି ଅଛନ୍ତି କି ।

୬ । ଚନ୍ଦ୍ରତାତ ସମୁଦ୍ର ସୁତ ମୁକୁତା ଥିବା ନାସା କନ୍ଦର୍ପର ପାଶ ପ୍ରାୟ ଦିଶଇ । ଆଉ ତୋହର ନିଶ୍ୱାସ ଚନ୍ଦ୍ରଧାରୀ ଶିବଙ୍କୁ ବାମ କାମଶର କାମ ପ୍ରାୟ ଜଣାଯାଏ । ହେ ଚଣ୍ଡିକି କୋପହେ । ତୋହର ନାସାର ପ୍ରତାପରେ ତିଳ ପୁଷ୍ପଫୁଲ ତପକରି ସମାନ ହୋଇବାକୁ ଆଶାଏ ଓ

ଶୁଦ୍ଧ ବିମ୍ବଫଳ ଅଧର ।
ନୂତନ ନବପଲ୍ଲବ କି ଜିଣି ମନ୍ଦାର । ୬ ।

କ୍ଷୀରୋଦ ନନ୍ଦନ ମାଳ ସିନ୍ଦୂର କଳଚୁ ମେଳ
ଛନ୍ଦକୁ ଦଶନ ଶ୍ରେଣୀ ସୁସଙ୍ଗ କଲ ।
କ୍ଷୀଣ କଟି ପଞ୍ଚକାନ୍ତ ନାଶଗ୍ରୁ ତାର ମଇତ୍ର
ତା ବାଣୀ ବିଧାତା ତୋର ସ୍ୱ କଣ୍ଠେ ଭର
ଗୁଡ଼ ତାପ କହ ବଚନ ।
ଗୁଡ଼ଯାଉ ଶୁଣି ମୋ ମାନସ୍ର ଶୋଚନ । ୭ ।

ଜଳଜ ବିଧାତା ଆଣି ମୃଗଳ ଖଞ୍ଜନ ଘେନ
ମନନେ ଆନନ ନିର୍ମାଣ କଲ ।
ଯୋଗୀ ତପ ହତକର ଶୃଦାଣି ତୋହର ଶର
ଭ୍ରୂଲତା ଗୁଣ ଅଞ୍ଜନ ପୁଣ ରଚଲ ।
ପଞ୍ଚ ଯୋଗଧାତ୍ରୀ ହୋଇଲେ ।
ସିଦ୍ଧ ତା ଧଇର୍ଯ୍ୟ ପଣ ମୁଖ ଦେଖିଲେ । ୮ ।

---

କାଳ ସରଣ ହାରଗଲେ । ତୋହର ଅଧର ବିମ୍ବଫଳ, ନାଲ, ଆମ୍ବପତ୍ର ଓ ମନ୍ଦାର ଫୁଲକୁ ଜିଣିଅଛୁ ।

୭ । କ୍ଷୀରୋଦ ସମୁଦ୍ର, ନନ୍ଦନ ମୁକ୍ତା, ମାଳ ଶ୍ରେଣୀ, ମୁକ୍ତା ଶ୍ରେଣୀକ ସିନ୍ଦୂରରେ ଗୋଳ ଛନ୍ଦ ରକ୍ଷିଲା ପ୍ରାପ୍ତ ତୋର ଦନ୍ତପନ୍ତି ଦେଖାଯାଏ । କ୍ଷୀଣ କଟି ସିଂହ, ପଞ୍ଚ ଦୁର୍ଗା, କାନ୍ତ ଶିବ, ଶତ୍ରୁ କନ୍ଦର୍ପ ମିତ୍ର କୋକିଳ, ବିଧାତା କୋକିଳ ବାଣୀକି ଆଣି ତୋ କଣ୍ଠରେ ରଖିଅଛି, ଏବେ ମନରୁ ତାପ ତ୍ୟଜ ମଧୁର ବାଣୀ କହ, ତା ଶୁଣି ମୋହର ମନଦୁଃଖ ଗୁଡ଼ଯାଉ ।

୮ । ଜଳଜ ପଦ୍ମ ବିଧାତା ପଦ୍ମ ଗୋଟିଏ ଯୋଡ଼ିଏ ଖଞ୍ଜନ ପକ୍ଷୀ ଆଣି ତୋହର ମୁଖ ଓ ଚକ୍ଷୁ ଦୁହିଙ୍କି ନିର୍ମାଣ କଲା । ଯୋଗୀମାନଙ୍କ ତପକୁ ହରିବାକୁ ତୋହର ଗୃନ୍ଦାଣିକ ଶରକର ଭ୍ରୂଲତାକୁ ମୁଖ୍ୟମନ୍ତ୍ର କର ତହିଁରେ ଅଞ୍ଜନ ଗୁଣକୁ ଚଢ଼ାଇଛି । ଯୋଗଧାତ୍ରୀ ପଞ୍ଚ ହୋଇ ସିଦ୍ଧା ତୋହର ମୁଖକୁ ଦେଖିଲେ ତାଙ୍କ ଧୈର୍ଯ୍ୟ ରହିପାରିବ ନାହିଁ ।

ଝାଡ଼ପତି ସୁତା-ରିପୁ    ମଣି ବକ୍ଷଜଇ ଚମ୍ପୁ
ଝଷକେତନ ଆସନ ମଧ୍ୟ ବିରାଜେ ।
ଝଟକ ଜ୍ୟୋତି ବିରାଜେ    ଜ୍ୟୋତିଷ୍କର ତେଜ ଗଞ୍ଜେ
ହିରଣ୍ୟମୟ ମଣ୍ଡଳେ ଅରୁଣ ମାଝେ ।
ଝଟକଇ ରୋମାଞ୍ଚ ଶ୍ରେଣୀ ।
ଝରେ ହିମଗିରିରୁ କି ହର ଧରଣୀ । ୯ ।

ନୀଳକଣ୍ଠଙ୍କର ବାଦ୍ୟ    ନାଦଇ ତୋହର ମଧ୍ୟ
କର୍ଣ୍ଣୀରବ ଠାଣି ଜାଣି × × × ରାମା ।
ନୀଳବାସ ଆଭରଣ    ଶାରଙ୍ଗ ଜ୍ୟୋତି ଯେସନ
ନିର୍ମିତ ଅଷ୍ଟ ରତନେ ଓଢ଼ଣୀ ସୀମା ।
ନ ବହଇ ଶାରଙ୍ଗ ଡରେ
ନୀରଜ ଲପନ ବହି ଭାଙ୍ଗିବା ଡରେ । ୧୦ ।

ଝୋପ ରେ ନିମଗ୍ନ ନାଭି    ଦେଖି ମୁନି ଯୋଗ ଭଙ୍ଗି
ଝାଣପଣ କେ ଧରିବ ନୟନେ ଦେଖି ।

---

୯ । ଝାଡ଼ପତି ସିଂହ କି ସିଂହିକା, ସୁତ ରାହୁ, ରିପୁ ଚନ୍ଦ୍ର, ଚନ୍ଦ୍ରକାନ୍ତ ମଣି ବକ୍ଷସ୍ଥଳରେ ଥିବାରୁ ଝଷକେତନ କନ୍ଦର୍ପ କନ୍ଦର୍ପର ସିଂହାସନ ଥିବା ପ୍ରାୟ ଦେଖାଯାଏ । କର୍ଣ୍ଣରେ ମାଣିକ୍ୟ ଖଚିତ କୁଣ୍ଡଳ ଥିବାରୁ ତହିଁର ଝଟକ ଜ୍ୟୋତି ବିରାଜି ଜ୍ୟୋତିଷ୍କର ସୂର୍ଯ୍ୟ-ସୂର୍ଯ୍ୟଙ୍କ ତେଜକୁ ନିନ୍ଦାକରି ଅରୁଣ ମଧ୍ୟରେ ସୂର୍ଯ୍ୟ ମଣ୍ଡଳ ପ୍ରାୟ ଦେଖାଯାଏ । ରୋମାବଳି ସ୍ତନ ପର୍ଯ୍ୟନ୍ତ ଯାଇଥିବାରୁ ହିମାଳୟ ପର୍ବତରୁ ହର ଧରଣୀ ଗଙ୍ଗା, ଗଙ୍ଗା ଝରିଲା ପ୍ରାୟ ଶୋଭା ପାଉଅଛି ।

୧୦ । ନୀଳକଣ୍ଠ ଶିବ, ବାଦ୍ୟ ଡମ୍ବରୁ ଡମ୍ବରୁ ପ୍ରାୟ ସରୁ ତୋହର ମଧ୍ୟ କର୍ଣ୍ଣୀରବ ସିଂହ ହେ ରାମା । ତୋହର ଠାଣି ସିଂହ ଠାଣି ପ୍ରାୟ । ନୀଳବାସ କି ନୀଳଲୁଗା ପିନ୍ଧିଥିବାରୁ ସେ ଶାରଙ୍ଗ ମେଘ ପ୍ରାୟ ଦିଶୁଛି ଏବଂ ଅଷ୍ଟରତ୍ନ ଲାଗିଥିବା ବସ୍ତ୍ରର ଓଢ଼ଣୀ ତୋହଠାରେ ଅଛି । ଶାରଙ୍ଗ ପବନ ତୋହ ଉପରକୁ ବହଇ-ନାହିଁ । ଯେହେତୁ ସରୁକଟି ବୃନ୍ତ ସ୍ତନ ଯୋଗେ ଭାଜି ପଡ଼ିବାର ଶଙ୍କା ।

୧୧ । ଝୋପ ଖାଲ, ନିମଗ୍ନ ଗଭୀର ତୋହର ଗଭୀର ନାଭିକି ଦେଖିଲେ ଯୋଗୀଙ୍କ ଯୋଗ ଭାଙ୍ଗିଯିବ ଆଉ ଏବାକିଏ ତାକୁ ଦେଖି ଝାଣପଣ ରହିବ ।

ବାଣରେ ମକର ଧ୍ୱଜ ପୀଡ଼ଇ ଅତ୍ୟନ୍ତ ତେଜ
ବାଣ ତୋ ହୃଦୟୁ ଦେଖି ମୁହିଁ ନିର୍ମାଖି ।
ବୋପେ ପଡ଼ି ଯେସନ୍ତେ କୁରଙ୍ଗୀ
ବୋପ ନାଭି ରସକୂପେ ମୋ ମନସଙ୍ଗୀ । ୧୧ ।

ଠୁଳ ତୋର ଉରୁ ବେନ ନାଗ ଶୁଣ୍ଡ ଶୋଭା ଜିଣି
ଠୁଳେ ନିର୍ମାଣିଲା ଧାତା ଯୋଗ ଆସନ ।
ଠୁଳକରି ଲକ୍ଷବାନ ନିର୍ମଳ ଶୁଦ୍ଧ କାଞ୍ଚନ
ନିର୍ମାଣିଲା ଚମ୍ପା ରମ୍ଭା ବାରି ଜସନ ।
ଠଣ ବାରି ପଯୂର
ଠିକେ ନଖେ ରହିଲା ପଣ୍ଡିତ ପିଅର । ୧୨ ।

ଡାଳମ୍ବ କୁସୁମ ଜବା ରକ୍ତକ ଫୁଲର ଆଭା
ପ୍ରବାଳ ଜ୍ୟୋନ୍ଧ ଅଙ୍କୁର ହରଣ୍ୟ ମୁଦ୍ଧ ।
ଉହିଲା ସୋହାଗରଯୁ ନିର୍ମାଣିଲା ମଞ୍ଜୀରକୁ

---

ପକରଧ୍ୱଜ କନ୍ଦର୍ପ, ବାଣକରି ମୋତେ ପୀଡ଼ା ଦେଉଛୁ. ଏବଂ ତୋହର ହୃଦୟୁ ବାଣ ଦେଖି ମୁ ନିର୍ମାଷୀ ହେଉଛୁ । ବୋପେ ଖାଲରେ କୁରଙ୍ଗ ମୃଗ ପଡ଼ିଲା ପ୍ରାୟୁ ତୋହ ଗଭୀର ନାଭି ରସ କୂପ ପ୍ରାୟୁ ତହିଁରେ ମୋ ମନ ମଗ୍ନି ହୋଇଅଛୁ ।

୧୨ । ଠୁଳ ବର୍ତ୍ତୁଳ, ନାଗ ଶୁଣ୍ଡ ହସ୍ତୀ ଥୋର ବର୍ତ୍ତୁଳ ଉରୁ ଦୁଇକ ତୋହର ହସ୍ତୀ ଥୋର ପ୍ରାୟୁ ସୁନ୍ଦର କରି ବିଧାତା କରିଅଛି । ଆଉ ଲକ୍ଷବାନ ସୁ ନିର୍ମଳ ଶୁଦ୍ଧ କାଞ୍ଚନ କ ସୁବର୍ଣ୍ଣ ଚମ୍ପା ଏମାନଙ୍କରେ ତୋହର ରୂପ , ରମ୍ଭା କଦଳୀ ଗଛ ପ୍ରାପେ ଉରୁ ବାରିଜ ପଦ୍ମ, ଚନ୍ଦ୍ର ପ୍ରାୟୁ ମୁଖ, ଘନମେଘ ପ୍ରାୟୁ କେଶ ରଚନା କରିଛି । ଠଣ ସୁନ୍ଦର ବାରିଜାତ ଚନ୍ଦ୍ର, ଚନ୍ଦ୍ର ପ୍ରାୟୁ ପାଦ ସୁନ୍ଦର, ପଣ୍ଡିତ ବୁଧ କ ବୁଧଗ୍ରହ, ପିତା ଚନ୍ଦ୍ର ତୋର ନଖରେ ଚନ୍ଦ୍ର ରହିଛନ୍ତି କ ।

୧୩ । ଡାଳମ୍ବ ଫୁଲ, ଜବା ମନ୍ଦାର ରକ୍ତକଫୁଲ ରଙ୍ଗ କହିଁ ଏମାନଙ୍କ ପରି ରଙ୍ଗ, ତୋହ ପାଦରେ ରତ୍ନମୁଦ୍ଧ ଅଛି । ଉହିଲା ତୋଡ଼ା ଯାଇଥିବା ସୋହାଗରଯୁ ସୁବର୍ଣ୍ଣ, ସୁବର୍ଣ୍ଣମଞ୍ଜରୀ ଯେ ପାଦଭୂଷଣ ତୋହର ଅଛି । ସେହ ମଞ୍ଜୀର ନାଦରେ ଅଳି ଭ୍ରମର ଜଳାହୀ ଜୋକିଲ ତୁନ ହୋଇ ଶରଣ ଗଲେ

ତରରେ ଶରଣ ଗଲେ ଅଳ ଜଳାଦ୍ରି
ତାକ ସୁମାଧୁଷ୍ଠ ଯେତେକ
ତହିଁ ପୂରାଇଲା ମଞ୍ଜୀରରେ ତେତେକ । ୧୩ ।

ତାଳ ଗୃହିଁ ହେମ କୁଚେ ଘଟଣା କଲ୍ ସୁ ସଙ୍ଗେ
ତାଳ ପୂରାଇଲା ତହିଁ ସୁର ଆହାର ।
ଢଳ ଢଳ ରସାଣରେ ରସାଣିଲା ଧାତାକରେ
ତାଳେ ନ ଦଶଇ ଗଣ୍ଠି ଶିରା ମନ୍ତ୍ର
ଢଳେ ପଦ୍ମ ପତ୍ରେ କ ଜଳ
ତାଳେ ଜନମିଛ ତୁମ୍ଭେ ବାରଜକୁଳ । ୧୪ ।

ଅଙ୍ଗ ତୋ ଅରୁଣ ଭାବ ଅନଙ୍ଗ ଦେଖି ଅଜୀବ
ଅଗ୍ନି ଉତପତ୍ତି ମୁଁ ତା ଦେଖି ମୋହିତ ।
ଆଉ ଯେ ଅଛି ଜଗତେ ନୟନେ ଦେଖିଲେ ତୋତେ
ଦେବାସୁର ନର କେହୁ ଧରିବ ଚିତ୍ତ

---

କ ସୁମଧୁର ତାକ ଯେ ଶବ୍ଦ ତାହା ସବୁ ପୋଡ଼ ଶୃଙ୍ଖଳିତ ଏହି ତୋହର ମଞ୍ଜୀରରେ ବିଧାତା ପୂରାଇ ଅଛିକ ।

୧୪ । ହେ ସଖୀ ! ନେହ ତାଳକରି ମୋତେ ଗୃହଁ । ହେମ ସୁବର୍ଣ୍ଣ କୁଚ ସ୍ତନ, ତୋହର କୁଚକୁ ସୁବର୍ଣ୍ଣରେ ନିର୍ମାଣ କରି ସୁନ୍ଦର କରିଛି । ତହିଁରେ ସୁର ଆହାର ଅମୃତ, ଅମୃତକୁ ତାଳକରି ପୂରାଇଛି ବିଧାତା ସେହି ସ୍ତନକୁ ରସାଣ ଦ୍ୱାରା ରହାଣି ଥିବାରୁ ପଦ୍ମପତ୍ରରେ ପାଣି ଢଳଢଳ ହେଲପରି ଦିଶୁଛି, ଆଉ ମଧ ତହିଁରେ ଗଣ୍ଠି କ ଶିରା ଦେଖାଯାଉନାହିଁ । ହେ ରାଧେ ତୁମ୍ଭେ ବାରଜ କ କଳି କୂଳରେ ଜନ୍ମିଅଛ ।

୧୫ । ହେ ରାଧେ ତୋହ ଅଙ୍ଗ ଅରୁଣ ପ୍ରାପ୍ତ ଆରକ୍ତ ବର୍ଣ୍ଣ ତୋହ ରୂପ ଦେଖି ଅଜୀବ ଯେ ଅନଙ୍ଗ ତାହାର ଅଗ୍ନି ଉତ୍ପତ୍ତି ହୋଇ ପୀଡ଼ଇ କାନ୍ତ, ମୁଁ ତୋତେ ଦେଖି ମୋହିତ ହୋଇଅଛି, ଜଗତ ମଧ୍ୟରେ ଦେବ ଅସୁର ଓ ନରମାନେ ତୋତେ ଦେଖି କେହି ଚିତ୍ତ ଧରି ପାରିବେ ନାହିଁ । ମୋହତାରେ

ଅଣ ହେଳା ନକର ମୋତେ
ଅଦୋଷେ ଦଣ୍ଡିଲେ ସଭା ହସିବେ ତୋତେ । ୧୫ ।

ତ୍ରିଲୋଚନ ଧ୍ୟାନ ଭଙ୍ଗ    କରଣ ନାବେ ଅନଙ୍ଗ
ସନକ ପିଅର ମୂଳେ ବୀଣାକୁ ଥୋଇ ।
ତିନି ଏକ ମୁଖ ଯାର    ନିର୍ମାଣିଲା ରୂପ ତୋର
ତୁମ୍ବୀ ଦୁଇ ସ୍ଥାପି କଲା ଉରଜ ଦୁଇ ।
ତୋର କଣ୍ଠେ ଗୁଣ ଖଞ୍ଜିଲା
ତୁ ତାକୁ ଶୁଣାନ୍ତେ ଚନ୍ଦ୍ରସୁତ ହଜିଲା । ୧୬ ।

ସ୍ଥାଣୁ ତୋ କୁଚ ରୂପରେ    ସ୍ଥାନ ଦେଖି ତୋ ହୃଦରେ
ହିରଣ୍ୟ ଲିଙ୍ଗ ଶଇଳ ହୋଇ ରହିଲା ।
ଥୋଇଛୁ ଆନନ ତହିଁ    ପ୍ରତ୍ୟକ୍ଷ ମୋତେ ଦିଶଇ
ସ୍ଥାଣୁ ଶିରେ କି ଏ ଦ୍ୱିଜରାଜ ଉଇଁଲା
ଥୋଇ ସୁଧା ହେମ କୁମ୍ଭରେ
ଥିରରେ ମୁଦିଲା ତାହା ନୀଳମଣିରେ । ୧୭ ।

---

ହେଳା ନକର, ଆଉ ଅଦୋଷେ ମୋତେ ଦଣ୍ଡିଲେ ତୋତେ ସମସ୍ତେ ଦୋଷ ଦେବେ ।

୧୬ । ତ୍ରିଲୋଚନ ଶିବ, ଶିବଙ୍କ ଧ୍ୟାନ ଭଙ୍ଗ କରି ଅନଙ୍ଗ କି କାମ ପାଇଁ ସନକ ପିଅର ବ୍ରହ୍ମାଙ୍କ ନିକଟରେ ତାହାର ବୀଣାକୁ ରଖିଗଲା । ତିନି ଏକ ମୁଖ ଚତୁର୍ମୁଖ କି ବ୍ରହ୍ମା ତୋହ ରୂପ ନିର୍ମାଣିଲା ବେଳେ ସେହି ବୀଣାରୁ ତୁମ୍ବୀ ଦୁହିଁଙ୍କି ଆଣି ତୋହର ଉରଜ ଦୁଇ କି ସ୍ତନ ଯୁଗଳ ରଚନା କଲା ସେହି ବୀଣାର ଗୁଣକୁ ତୋହ କଣ୍ଠରେ ଖଞ୍ଜିଥିବାରୁ ତୁ ବୀଣା ବଚନୀ ହୋଇଅଛୁ, ଆଉ ତୁ ଏହି ଶୋଭକୁ ବହି ତାକୁ କି ବ୍ରହ୍ମାଙ୍କୁ ଶୁଣାନ୍ତେ ତାହାର ଚନ୍ଦ୍ରସୁତ ବୁଧ କି ବୁଦ୍ଧି ହଜିଗଲା ।

୧୭ । ସ୍ଥାଣୁ ଶିବ କୁଚ ସ୍ତନ ତୋହର ହୃଦୟ ସ୍ଥାନକୁ ଦେଖି ହିରଣ୍ୟ ଲିଙ୍ଗ କି ସୁବର୍ଣ୍ଣ ଲିଙ୍ଗ ପର୍ବତ ରୂପରେ ତହିଁ ବସିକରି ଅଛନ୍ତି । ସେହି ସ୍ତନ ଉପରେ ତୋ ମୁଖ ରହି ଥିବାରୁ ଶିବଙ୍କ ଉପରେ ପୂର୍ଣ୍ଣଚନ୍ଦ୍ର ରହିଥିଲା ପ୍ରାୟେ ମୋତେ ଜଣାଯାଏ । ହେମ କୁମ୍ଭରେ ଅମୃତ ରଖି ନୀଳମଣିରେ ତାକୁ ମୁଦିଲା ପ୍ରାୟେ ତୋହ ସ୍ତନ ଦୁହେଁ ଦେଖାଯାନ୍ତି ।

ଦଶ ଖୃଣ୍ଡ ଭୁବନର ଦିବ୍ୟସ୍ତ୍ରିଶ ଯେତେ ତୋର
ଦୁଇପାଦେ ଭୁଲାଇତ ନୋହିଲେ କେହି ।
ଦକ୍ଷ ଦେବ ନାଗ ନର ଗନ୍ଧର୍ବ ଯକ୍ଷ କନ୍ନର
ଦେଦଣ୍ଡ ଚନ୍ଦ୍ର ତନୟ ଦରଇ ଗୃହିଁ ।
ଦିନମଣି ଦେଖି କୁଣ୍ଡଳ
ଦିବ୍ୟ ତେଜ ନେଜ ରହେ ଘନମଣ୍ଡଳ । ୧୮ ।

ଧୀରେ ଦେଖି ଗତ୍ତି ତୋର ବନତେଜ କରୀବର
ଧାତା ଯାନ ଦେଖିଣ ଯେ ଗତ୍ତି ଗୁଡ଼ିଲା ।
ଧ୍ୱନ ମଞ୍ଜିରନ୍ତୁ ଶୁଣି ଷଟ୍‌ପଦ ମଧୁବାଣୀ
ଧିକାର କରିଣ ଆପେ ଭୁନ ହୋଇଲା ।
ଧାଇଁ ଶାରଙ୍ଗକୁ ବସିଲା
ଧିକ ତା ଶାରଙ୍ଗ ପଣ ବାଣୀ ମୁଦିଲା । ୧୯ ।

---

୧୮ । ଦଶ ଗୃଣ ଚଉଦ, ଚଉଦ ଭୁବନରେ ଯେତେ ସୁନ୍ଦରୀ ସ୍ତ୍ରୀ ଅଛନ୍ତି ସେମାନେ ତୋର ଦୁଇପାଦ ତଳକୁ ସମାନ ନୁହନ୍ତି । ଦକ୍ଷ ଚତୁର ଅଟନ୍ତି ଦେବ, ନାଗ, ନର, ଗନ୍ଧର୍ବ, ଯକ୍ଷ ଓ କନ୍ନର ଏମାନେ ତୋହର ରୂପକୁ ଦେଖିଲେ ଚନ୍ଦ୍ର ତନୟ ବୁଧ କ ବୁଦ୍ଧି ହରାଇବେ । ତୋହର କର୍ଣ୍ଣର କୁଣ୍ଡଳକୁ ଦିନମଣି ସୂର୍ଯ୍ୟ ଦେଖି ତେଜରେ ସମାନ ନୋହି ଘନ ମଣ୍ଡଳ କ ମେଘ ମାନଙ୍କ ମଧରେ ଲୁଚିରହେ ।

୧୯ । ଧୀ ବୁଦ୍ଧି, କରୀବର କ ହସ୍ତୀ ତୋର ଗତି ଦେଖି ଶିଖିବା ପାଇଁ ବୁଦ୍ଧିରେ ବଡ଼ୁର ବନ ଅରଣ୍ୟକୁ ତେଜ ଦେଶକୁ ଅଇଲା । ଧାତା ବ୍ରହ୍ମା, ଯାନ ହଂସ ତୋ ଗତିକ ସମାନ ନ ହେବା ଦେଖି ଆପଣା ମନ୍ଦର ଗତି ଗୁଡ଼ ଉଡ଼ିବାର ଅଭ୍ୟାସ କଲା । ତୋହ ପାଦ ଭୂଷଣ ମଞ୍ଜୀରରେ ଧ୍ୱନ ଶବ୍ଦକୁ ଶୁଣି ଷଟ୍‌ପଦ ଭ୍ରମର ଆପଣାର ମଧୁର ବାଣୀ ସମାନ ନୋହିବାରୁ ଆପଣାକୁ ନାନାକର ଭୁନ ହୋଇଅଛି । ଶାରଙ୍ଗ ବୀଣା ସମାନ ନୋହି ଶାରଙ୍ଗ ପୃଥିବୀକୁ ଗୃହିଁ ବସିଲା କ ପୃଥିବୀରେ ପଡ଼ି ଆପଣାର ବାଣୀକି ମୁଦିଲା ।

ନୟନ ମୀନ ହରିଣ          ଆବର ମୃଗ **ଖଞ୍ଜନ**
ନିନ୍ଦେ ସୁମଞ୍ଜ ନ ଦେଖି ଏମନ୍ତ ଦିଶେ ।
ନୀରଜ କୁସୁମବନ          ନବଳ ହୁଏ ଦଳନ
ନାରାୟଣ ସୁତ ଧନୁ ବନ୍ଧଣ କି ସେ ।
ନେତ୍ରରୁ ଯା ନୀର ପଡୁଛି
ନିଧି ନନ୍ଦନକୁ କି ଖଞ୍ଜନ ଗିଳୁଛି । ୨୦ ।

ପାଣି ଟୋ ପାଣିଜ କୁଳ          ପଲ୍ଲବ ବାହୁ ଯୁଗଳ
ନାଗଶୁଣ୍ଢ ଜିଣି ଅତି ମଳିନ ଶୋଭା ।
ପଦ୍ମରାଗ ଚନ୍ଦ୍ରମଣି          ବାଜୁ ବନ୍ଧେ ବନ୍ଧେ ଠାଣି
ପବନ ହିରଣ୍ୟ ଚୂଡ଼ି ଟୋ ଭୁଜେ ଶୋଭା ।
ପାଣି ଟୋ ନୋହେତ ନୀରଜ
ପଲ୍ଲବ ଅଙ୍ଗୁଳି ନିନ୍ଦେ କଡ଼ କରଜ । ୨୧ ।

ଫୁଟି ହେମଗିରି ଭେଦ          ବହେ କି କାଳିନ୍ଦୀ ନଦୀ
କୁଟିଳ କୁନ୍ତଳ ବେଣୀ ଶୋହେ ପିଠିରେ ।

---

୨୦ । ତୋହର ନୟନ ମୀନ ହରିଣ ମୃଗ, ଖଞ୍ଜନ ଏମାନଙ୍କୁ ନିନ୍ଦଇ ଏବଂ ନୀରଜ କୁସୁମ, ପଦ୍ମ ବନକୁ ସେହି ନେତ୍ର ଶୋଭାରେ ଦଳି ଦେଉଛି । ନାରାୟଣ ସୁତ କନ୍ଦର୍ପ, କନ୍ଦର୍ପଧନୁ ତୋହର ଭ୍ରୂଲତା ହୋଇ ସେହି ନେତ୍ରରୁ ଅଶ୍ରୁବିନ୍ଦୁ ଝଡ଼ିବାରୁ ନିଧି ସମୁଦ୍ର ନନ୍ଦନ ମୁକୁତା ମୁକୁତାକୁ ଖଞ୍ଜନ ଗିଳି ବାନ୍ତି କଲାପ୍ରାୟ ଦେଖାଯାଉଅଛି ।

୨୧ । ତୋହର ପାଣି ହସ୍ତ ଦୁହେଁ ପଦ୍ମପ୍ରାୟ କରପଲ୍ଲବ ହସ୍ତ ପଦ୍ମପତ୍ର ପ୍ରାୟ, ବାହୁ ଦୁହେଁ ନାଗଶୁଣ୍ଢ ହସ୍ତୀ ଥୋରକୁ ଜିଣିଲେ ହେଁ ମଳିନ ଦିଶୁଛି । ପଦ୍ମରାଗମଣି ଚନ୍ଦ୍ରକାନ୍ତ ମଣି ଖଚିତ ହୋଇ ବାଜୁବନ୍ଧ ଏବଂ ହିରଣ୍ୟ କି ସୁବର୍ଣ୍ଣ ଚୂଡ଼ି ତୋ ବାହୁକୁ ଶୋଭା କରିଅଛନ୍ତି । ତୋ ହସ୍ତ ଯେ ହସ୍ତ ପଦ୍ମର ପାଖୁଡ଼ା କରଜ ନଖ, ନଖମାନେ କଡ଼କୁ ନିନ୍ଦା କରୁଅଛନ୍ତି ।

୨୨ । ହେମଗିରି ମେରୁ, କାଳିନ୍ଦୀ ଯମୁନା ତୋହର ପିଠିରେ କୁଟିଳ ବେଣୀ କୁଞ୍ଚକୁଞ୍ଚିଆ କେଶ ଫିଟି ପଡ଼ିଥିବାରୁ ମେରୁ ପର୍ବତକୁ ଭେଦି ଯମୁନା

ଫୁଟି ଦଶେ ଶ୍ରେଣୀ ଦୁଇ    ମଣ୍ଡିତ ହୋଇଛି ତହିଁ
ରସ ସିନ୍ଦୁରେ ପୁଲକ ପରି ସେଠାରେ ।
ଫରହର ହାର କମ୍ପଇ
ଫନି ଖୋଜେ ଗଙ୍ଗା ଭଗୀରଥକୁ ମାଗି । ୨୨ ।

ବଦନ ଟେକି ନ ଚାହୁଁ    ବଚନ କଥା ନ କହୁ
ବଗୁରବୁ ଚିତ୍ତେ ନଷ୍ଟେ ମାରିବୁ ମୋତେ
ବୈଦ୍ୟ ହୋଇ କରି ଯେବେ    ମନ୍ଦ ଚିନ୍ତାକରି ତେବେ
ବାତ ପିତ୍ତ ବିଷ ଦେଲେ ହୋଏ ଯେମନ୍ତେ
ବୀଜ ପୋତି ଅଙ୍କୁର୍ କଲୁ
ବାରି ନ ଦେଇଣ ରବି ତାପେ ମାରିଲୁ । ୨୩ ।

ଭାବରେ ମଜ୍ଜିଲି ତୋରେ    ଭିନ୍ନ ତୁ ମଣୁଛୁ ମୋରେ
ଭିନ୍ନ ଅବା କଥା କହୁ ମୃଗାଙ୍କମୂର୍ଦ୍ଧି ।
ଭୂମି ଛୁଇଁରେ ସଙ୍ଗାତ    କରୁଛି ତୋହ ଶପଥ
ଭୂମଣ୍ଡଳେ ତୋହ ବିନୁ ଅନ୍ୟ ମୋର ନାହିଁ

---

ବହିଲ ପ୍ରାପ୍ତ ଜଣାଯାଏ । ଶ୍ରେଣୀ ନିତମ୍ବ ବନ୍ଧ ସହିତ ଫୁଟି କି ଉଚ୍ଚ ହୋଇ ଦିଶୁଥିବା ନିତମ୍ବ ଦ୍ୱୟେଁ ହେଲ ରସ ସିନ୍ଦୁର ପୁଲକ କି ଶୃଙ୍ଖଳ ବାଲି ବୁଦ ପ୍ରାୟେ ଅନୁମାନ ହୁଅଇ ପୁଷ୍ପହାର ଯାହା ପବନ ଯୋଗେ କମ୍ପୁଅଛି ସେ ପକ୍ଷୀ ହୋଇ ଭଗୀରଥ ରାଜାଙ୍କୁ ଖୋଜୁଅଛି କି ?

୨୩ । ହେ ରାଧେ ! ମୁହଁ ଟେକି ଯାହା ମୋତେ ନ ଚାହୁଁ ଏବଂ କି ନ କହୁ, ଏଥୁ ଜଣାଯାଏ ମୋତେ ମାରିବାକୁ ତୁ ବସିଛୁ । ବୈଦ୍ୟ ହୋଇ ରୋଗର ଭଲ ଚିନ୍ତା ନକରି ; ଔଷଧ ବୋଲି ବିଷ ଦେବା ପ୍ରାୟ ତୁ ମୋହ ପ୍ରତି କରୁଅଛୁ । ମଞ୍ଜି ପୋତି ଗଜା ଉଠାଇଥିବା ଗଛରେ ପାଣି ନଦେଇ ଖରା ତାପରେ ମାରିଲା ପ୍ରାୟ ତୁ କରୁଅଛୁ ।

୨୪ । ହେ ରାଧେ ! ମୁଁ ତୋହ ଭାବରେ ମଜ୍ଜିଛି, ତୁ ମୋତେ ପର କରି ଦେଉଛୁ । ମୃଗାଙ୍କ ଚନ୍ଦ୍ର, ହେ ଚନ୍ଦ୍ର ମୁହିଁ । ମୋତେ ପର କରୁଛୁ । ହେ ସଙ୍ଗାତ ଭୂମିଛୁଇଁ ଶପଥ ନିଅୁମ, ତାହାକୁ ନପୁନ କରୁଛି । ଏ ଭୂମଣ୍ଡଳରେ ତୋହ ବିନା ମୋହର ଆଉ କେହି ନାହିଁ, ନିଜ ସେବକ ମୋ ମୁଁ

ଭଜନ୍ତ ଦେଖି ନିଜ ସେବକେ
ଭୁବନେ ଦେଖିଲେ କିମ ବୋଲିବେ ଲୋକେ । ୨୪ ।

ମୋର ତୁ ମୁକୁଟ ଶିରେ ମାଳ ତୁ ମୋର କଣ୍ଠରେ
ମନର ରମଣୀ ତୁହି ଭବ ବିଭବ ।
ମୀନ କେତନର ଡରେ ଶରଣ ପଶିଲି ତୋରେ
ମୋତେ ନାଶ କରି କିସ ପାଇବୁ ଲଭ
ମୃଗ ଶିଶୁ ନୟନୀ ଗୁହିଁ
ମରଣ କାଳ ବେଳକୁ ହୁଅ ତୁ ସାହି । ୨୫ ।

ଜାହ୍ନବୀ ଧର ଅରି ଜାଣି ଚତ୍ତେ କୋପ କରି
ଜୀବନ ହରୁଛୁ ମୋର ତୋ ମାନ ସରେ ।
ଯୁବକ ରତନ ମଣି ହତାହତ ଅଛୁ ଜାଣି
ଜଗତରେ ହେବ ଦୋଷ ନାଶିଲେ ମୋର
ଜଳୁଅଛି ଶରୀର ମୋର
ଯତନେ କରାଅ ସ୍ନାନ ରସ କପୁର । ୨୬ ।

---

ମୋତେ ଭଜନ୍ତ ପ୍ରାୟ ଦେଖୁଛୁ । ଭୁବନଭିତରେ ଏହା ଶୁଣି ଲୋକମାନେ କ'ଣ କହିବେ ଅର୍ଥାତ୍ ନିନ୍ଦା କରିବେ ସିନା ।

୨୫ । ହେ ସଖୀ ! ତୁ ମୋହର ଶିରର ମୁକୁଟ କଣ୍ଠର ମାଳାମନର ରମଣୀ କ ପ୍ରିୟା ଏ ଭବ ବିଭବରେ ଏ ସଂସାରରେ ମୀନ କେତନ କନ୍ଦର୍ପ ଡରରେ ମୁଁ ତୋହଠାରେ ଶରଣ ଗଲି, ମୋତେ ନାଶ କରାଇଲେ ତୋହର କ ଲଭ ହେବ । ହେ ବାଳ ମୃଗ ନେତ୍ରି ମୋତେ ଗୁହିଁ ଏବଂ ଏହି ମରଣ ସମୟରେ ସାହାହୁଅ ।

୨୬ । ଜାହ୍ନବୀଧର ଶିବ ଅରି କାମ ତୋହ ମନ ଜାଣି କୋପ ଚିତ୍ତରେ ତୋହ ଅଭିମାନସର ଯୋଗେ ମୋର ପ୍ରାଣ ନେଉଅଛି । ହେ ଯୁବତୀ ଶ୍ରେଷ୍ଠ ତୁ ତ ହତାହତ ଜାଣିପାରୁ ମୋତେ ନାଶକଲେ ଜଗତରେ ଅପଯଶ ପାଇବୁ । ମୋହ ଶରୀର ବିରହରେ ଜଳୁଅଛି ଅତଏବ ରସ କୂପରେ ଯତ୍ନରେ ସ୍ନାନ କରାଅ ।

ରମିଲି ତୋର ସଙ୍ଗରେ ନ ରୁଚଇ ଆନ ମୋରେ
ରସବନ୍ତ ଆନ କେବା ତୋର ସମାନ ।
ରଖ ତୁ ଏବେ ଜୀବନ ନକର ତୁ ଆନମନ
ରଜତ ଜିତ ସୁହାସି ଶୁକ ବଦନ
ସାମା ଚାହିଁ ରଙ୍ଗ ଲୋଚନେ
ରଖ ନିଜ ଦାସ ପ୍ରାଣ କହି ବଚନେ । ୨୭ ।

ଲୋହିତ ପାଦ କମଳ ପଲ୍ଲବ କି ଜବାଫୁଲ
ନିବାର କାମ ପାବକ ମୋ ଶିରେ ଦେଇ ।
ଧରୁଛି ତୋର ପୟର ବାରେକ ମୋତେ ଉଦ୍ଧର
ଲଗାଇଲେ ପାଦେ ପାଣି ଦେବାଧି ସାଇଁ
ଲୋଚନେ ନିରେଖି ସୁମୁଖୀ
ଲୋକନାଥ ପାଦେ ପଡ଼ି ହୁଅଇ ଦୁଃଖୀ । ୨୮ ।

ବନମାଳି ପାଦଧରୁ କହଇ ରାଧା ସୁଭୁରୁ
ବେଳୁ ବେଳ କର ଚାପ ଏମାନ କରି

---

୨୭ । ହେ ସଖୀ, ମୁଁ ତୋହ ସଙ୍ଗେ ରମିଲି, ଆଉ ଅନ୍ୟ ରସବନ୍ତ ମୋତେ ରୁଚୁ ନାହିଁ, ତୋହ ସମାନ ଅବା କିଏ ଅଛି । ଏବେ ତୁ ଆନମନା ନହୋଇ ମୋହ ଜୀବନକୁ ରକ୍ଷାକର । ହେ ରଜତଜିତ ସୁହାସି କି ଶୁକନାସୀ ବଦନକୁ ଗୁଡ଼ ରଙ୍ଗ ନୟନରେ ମୋତେ ଚାହିଁ, ହସି କଥା କହି ଏହି ନିଜ ଦାସକୁ ରକ୍ଷା କର ।

୨୮ । ହେ ସଖୀ, ଜବା ମନ୍ଦାର ଫୁଲ ପ୍ରାୟ ଲୋହିତ ରଙ୍ଗ ପଲ୍ଲବ ନୂତନ ପତ୍ର ଏପରି ତୋହ ରଙ୍ଗ ଚରଣକୁ ମୋହ ଶିରରେ କି ମୁଣ୍ଡରେ ଦେଇ କାମ ପାବକ କାମାନଳକୁ ନିବାରଣ କର । ତୋହ ପାଦ ଧରୁଛି, ମୋତେ ବାରେ ଉଦ୍ଧାର କର । ଏହା କହି ଦେବାଧି ସାଇଁ ଶ୍ରୀକୃଷ୍ଣ ରାଧାଙ୍କ ପାଦରେ ପାଣି ହସ୍ତ ଲଗାଇଲେ କି ପାଦକୁ ଧରିଲେ । ସୁମୁଖୀ ରାଧା ଶ୍ରୀକୃଷ୍ଣଙ୍କର ଏପରି ଦୁଃଖ ଲୋଚନରେ ଆଖିରେ ଦେଖି ଦୁଃଖିତ ହୋଇ ତାଙ୍କ ପାଦତଳେ ପଡ଼ିଲେ ।

୨୯ । ବନମାଳୀ ଶ୍ରୀକୃଷ୍ଣ ରାଧାର ପାଦ ଧରୁଁ, ସୁଭ୍ରୁ ସୁଲୋଚନା ରାଧା କହିଲେ ହେ କୃଷ୍ଣ ! ଆପଣ ଏମାନ କି ଏହି ରୀତ କରି ବେଳକୁ ବେଳ

ବାମା ଅଙ୍ଗ ଧରିକରି ବଶିଖ ଲାଞ୍ଛନଧାରୀ
ବେଳେହେଁ କ ପାରି ବରହ୍ମଣୀ ଉଦ୍ଧରି
ବେଗେ ତୁମ୍ଭେ ଗୁଡ଼ ଚରଣ
ବନସ୍ପୃ ଭାବରେ ଗୈଶ୍ୱା କଲଣି ମନ । ୨୯ ।

ଶୁଣି ଶ୍ୟାମ ଶ୍ୟାମ ବାଣୀ ଦୀନପାଇ ଦ୍ୱିଜମଣି
ଶଶୀ ଦେଖି ଚକୋର ଶାରଙ୍ଗ ।
ଶିଷ୍ୟ ଯେହ୍ନେ ବିଦ୍ୟା ପାଇ ବନ୍ଧ୍ୟା ବାଳ ପ୍ରସବଇ
ସଦା ସୁଦରିଦ୍ର ପାଇ ନିଧି ସମ୍ପଦ
ଶିଖିଧର ଆନନ୍ଦ ତେହ୍ନେ
ସୁଧାପାନ କରି ମନ ମନୁଷ୍ୟ ଯେହ୍ନେ । ୩୦ ।

ଶାରଙ୍ଗଦନ୍ତ ପଲ୍ୟଙ୍କେ ଶାରଙ୍ଗେ ଧେନ ନଶଙ୍କେ
ଶାରଙ୍ଗମୁଖୀ ଶାରଙ୍ଗ କେଳି ସ୍ଥଳେ ।
ଶାରଙ୍ଗ ନାଳ ବାହୁରେ କାନ୍ତା ଭିଡ଼ି ଶାରଙ୍ଗରେ
ଉପରୁ ଶୀଘ୍ର ତୋଳି ଯେ ନେଲେ

---

ତାପ କାହିଁକ ବଢ଼ାଉଛ । ସ୍ଥିର ହୋଇ କରି ବଶିଖ ଲାଞ୍ଛନଧାରୀ କାମ, କାମ ତାପରୁ ବରହ୍ମଣୀ କ ଉଦ୍ଧାର ପାରିବକ । ଅତଏବ ତୁମ୍ଭେ ବେଗରେ ମୋହ ଚରଣକୁ ଗୁଡ଼, ଆଉ ତୁମ୍ଭେ ବନସ୍ପୃ ଭାବରେ ମୋହ ମନକୁ ଗୈଶ୍ୱା କରି ସାରିଲଣି ।

୩୦ । ଶ୍ୟାମ-ଶ୍ରୀକୃଷ୍ଣ ଶ୍ୟାମ-ତପ୍ତ ସୁବର୍ଣ୍ଣା ରାଧାଙ୍କ ବଚନ ଶୁଣି ଦୀନ-ଦରିଦ୍ର, ଦ୍ୱିଜମଣି, ପରଶମଣି ଚକୋର, କୁମୁଦ-ରାଜି ଏମାନେ ଚନ୍ଦ୍ରକୁ ପାଇଲେ ଯେପରି ହୁଏ, ଆଉ ଶିଷ୍ୟ ବିଦ୍ୟା ବନ୍ଧ୍ୟା ବାଳକ ଅତି ଦରିଦ୍ର ନିଧି ପାଇଲା ପ୍ରାୟ ଆଉ ମନୁଷ୍ୟ ଅମୃତ ପାନକଲା ପ୍ରାୟ ଶିଖିଧର ଶ୍ରୀକୃଷ୍ଣ ଯେପରି ଆନନ୍ଦକୁ ପାଇ ସନ୍ତୋଷ ଲଭିଲେ ।

୩୧ । ଶାରଙ୍ଗ-ହସ୍ତୀ, ହସ୍ତୀଦନ୍ତ ପଲ୍ୟଙ୍କରେ ଶାରଙ୍ଗରେ, ଶାରଙ୍ଗ ଶଯ୍ୟାରେ ନଶଙ୍କରେ ଶାରଙ୍ଗରେ ଶାରଙ୍ଗ ମୁଖୀ ଚନ୍ଦ୍ରମୁଖୀ ରାଧାଙ୍କୁ ଧେନ ଶାରଙ୍ଗ କେଳି କାମ କେଳି ରଙ୍ଗରେ, ଶାରଙ୍ଗନାଳ ପଦ୍ମନାଳ ପ୍ରାୟ ବାହୁରେ କାନ୍ତା ରାଧାଙ୍କୁ ଶାରଙ୍ଗରେ କୋମଳରେ ଭିଡ଼ି ଶାରଙ୍ଗ ଉପରୁ ପୃଥିବୀକୁ ତୋଳି

ଯା'ର ପ୍ରେମ ଶାରଙ୍ଗ ରଣ
ଯାହାକେ ଭଜିଲେ ଶାନ୍ତ ଯୁଗଳ ପ୍ରାଣ । ୩୧ ।

ସୁମୁଖୀ କରାଇ ବେଶ ଶ୍ୟାମଳ କୁଟିଳ କେଶ
ସୁରଙ୍ଗ ରଙ୍ଗ ପଟମା ପିନ୍ଧାଇ ବାନ୍ଧୁ ।
ଶାରଙ୍ଗ ଅଇରମଦ ପତ୍ରାବଳୀ କୁଚ ମଧ୍ୟ
ସିନ୍ଦୂର ଚନ୍ଦନ ଚିତା କପୋଳେ ରଚ
ସୁସଞ୍ଜ ଅଳତା ରଚିଲେ
ସୁବର୍ଣ୍ଣ ନାନା ଭୂଷଣ ଦେହେ ମିଞ୍ଚିଲେ । ୩୨ ।

ହରଚସ୍ନୁ କଳ ଧାମ ହରଣାଙ୍କ ସୁତନାଶ
ହିରଣ୍ୟ ଅଙ୍ଗୀର ସଙ୍ଗେ ରମିଲେ ପୁଣି ।
ହରିଙ୍କ କୋଳରେ ବସି ବଗୃରଇ ଶୁଭ୍ରକେଶୀ
ଚଉଷଠି ପଶବନ୍ଧେ କର ରମଣୀ
ହୋଇଲେ ସୁସ୍ଥିର ତରୁଣୀ
ହସି ଗବାକ୍ଷକୁ ଫିଟାଇଲେ ସେ ପୁଣି । ୩୩ ।

---

ନେଇ ଗଲେ । ସେ ଦୁହେଁ ଶାରଙ୍ଗ ରଣ କାମ ଯୁଦ୍ଧ ଯାର ଯୁଗଳପ୍ରାଣ, ରାଧା କୃଷ୍ଣ ଦୁହେଁ ଶାନ୍ତିକି ଲଭିଲେ ।

୩୨ । ଶ୍ରୀହରି ସୁମୁଖୀ ରାଧାଙ୍କୁ ବେଶ କରାଇ ଶ୍ୟାମଳ-କାଳିଆ କୁଟିଳ କୁଞ୍ଚକୁଞ୍ଚିଆ କେଶକୁ ସଜାଡ଼ି ଉତ୍ତମ ରଙ୍ଗ ପଟମା ଶାଢ଼ୀ ପିନ୍ଧାଇଲେ । ଶାରଙ୍ଗ ଅଇର ମଦ ମୃଗମଦ କି କସ୍ତୁରୀ ପତ୍ରାବଳୀ କୁଚ ସ୍ଥଳରେ ଲେଖିଲେ । କପାଳରେ ଚନ୍ଦନ ଓ ସିନ୍ଦୂର ଚିତାକୁ ଦେଲେ । ପାଦରେ ସରୁ ଅଳତା ଦେଇ ସୁବର୍ଣ୍ଣର ନାନା ଭୂଷଣ ତାଙ୍କ ଅଙ୍ଗରେ ଖଞ୍ଜିଲେ ।

୩୩ । ହରଚସ୍ନୁ କାମ ଯେହ୍ନେ ସମସ୍ତରେ ଉପୁଜିଲା, ହରଣାଙ୍କ ଚନ୍ଦ୍ର ସୁତ ବୁଧ ବୁଦ୍ଧି ରହିଲା ନାହିଁ, ପୁଣି କି ପୁନଃ ପୁନଃ ହିରଣ୍ୟ ଅଙ୍ଗୀ; ସ୍ୱର୍ଣ୍ଣାଙ୍ଗୀ ରାଧାଙ୍କ ସଙ୍ଗେ ମାତିଲେ, ହରି ଶ୍ରୀକୃଷ୍ଣଙ୍କ କୋଳରେ ବସି ଶୁଭ୍ର କେଶୀ ରାଧା ଚଉଷଠି ବନ୍ଧରେ ନାନାଦ କ୍ରୀଡ଼ା କଲେ, ତହିଁ ଉତ୍ତାରୁ ସ୍ଥିର ହୋଇ ପବନ ସକାଶେ ଗବାକ୍ଷ ଜଳା କବାଟିକି ଫିଟେଇ ଦେଲେ ।

ଛାଡ଼ ନ ବଳଇ ଚିତ୍ତ ଛନ୍ଦ ଭୁଜେ ଧରେଜ ଗାତ୍ର
ଷଡ଼ାନନ ତାତ ରିପୁ ବାଧା ନିମନ୍ତେ ।
ଛାଡ଼ିଲେ ସକଳ ଚିନ୍ତା ପଡ଼ିଲେ କାନ୍ତ କାନ୍ତା
ଛଦ୍ମ ବିଜୁଳୀ ନବଘନେ ଯେମନ୍ତେ
କ୍ଷୁଦ୍ର ବୁଦ୍ଧି ଧନ ବଞ୍ଚିନ
ଲଭିଲେ ବିଗ୍ଧର ଏ ମର୍ତ୍ତ୍ୟ ଅନୁଭବ । ୩୪ ।

---

୩୪ । ସେହି ସମୟରେ କେହି କାହାକୁ ଛାଡ଼ିବାକୁ ଚିତ୍ତ ବଳାଇ ନାହିଁ । ଷଡ଼ାନନ-କାର୍ତ୍ତିକେୟଙ୍କ ତାତ ଶିବ ରିପୁ କାମବାଧା ହେତୁରୁ ସବୁ ଚିନ୍ତା ଛାଡ଼ି କାନ୍ତ କାନ୍ତା କି ରାଧାକୃଷ୍ଣ ଦୁହେଁ ଏକାନ୍ତରେ ପଡ଼ିଲେ ମେଘ ଓ ବିଜୁଳି ପ୍ରାୟେ ଦେଖାଗଲେ କ୍ଷୁଦ୍ର ବୁଦ୍ଧି ଧନକୃଷ୍ଣ ଏ ଗୀତ ରଚିଲେ ।

# ଗୁଣସାଗର

ଶ୍ରୀକୃଷ୍ଣ ଚରିତ ଚମ ସୁଧାକର
ବିସ୍ତାର ଜଗତ ଲୁଚନ୍ତେ
ଶ୍ରବଣେ ଶୁଣନ୍ତେ କଳୁଷ ନାଶନ
ଭବ ଦୁରିତ ହିଁ ଖଣ୍ଡେ ॥ ୧ ॥
ଅମୃତ ପୟୋଧି ବ୍ରହ୍ମଜ୍ଞାନ ସାଧି
ତ୍ରିଭୁବନେ ଦିବ୍ୟସାର
ବାଳ୍ମିକ ମତ କୃଷ୍ଣଦାସ ଭଣଇ
ଉଦ୍ଧବ ଗୋପୀ ବିଗ୍ରହ ॥ ୨ ॥
କହନ୍ତି ଶ୍ରୀକୃଷ୍ଣ ଉଦ୍ଧବକୁ ଚାହିଁ
ଭକତ ଲକ୍ଷଣ ଚହ୍ନି
ଆଜ ତୁମ୍ଭେ ଗୋପପୁରକୁ ଚାଲିବ
ଆମ୍ଭର ବାରତା ଘେନି ॥ ୩ ॥
ସେ ଗୋପ ପାଟଣା ଅପୂର୍ବ ଘଟଣା
ମନୁଷ୍ୟେ ନିର୍ମାଣ ନୋହି
ଅମର ବୈକୁଣ୍ଠ ମର୍ତ୍ତ୍ୟେ ଅବତୀର୍ଣ୍ଣ
ଦେଖିଲେ ହୋଇବ ମୋହି ॥ ୪ ॥
ରାଧା ଆଦିକରି ଯେତେ ଗୋପ ନାରୀ
ଜନମି ଅଛନ୍ତି ଗୋପେ
ପୂର୍ବର ତପେ ସେ ଆମ୍ଭର ଭକତ
ବରଜ କାମିନୀ ରୂପେ ॥ ୫ ॥

---

ସୁଧାକର — ଚନ୍ଦ୍ର
କଳୁଷ — ପାପ

ବେଲାରେ ଆମ୍ଭେ ନନ୍ଦଘରେ ବଢ଼ିଲୁଁ
ମଥୁରା ରହିଲୁଁ ଆସି
ଆମ୍ଭର ଶ୍ରୀମୁଖ ଦର୍ଶନ ନପାଇ
ଝାଳୁଛନ୍ତି ଗୋପୀ ବସି ॥ ୬ ॥
ଏବେ ତୁମ୍ଭେ ଆମ୍ଭ ଆଜ୍ଞା ଘେନିଯାଇ
ଗୋପପୁରେ ଦିନେ ରହ
ଜଣେ ଜଣେ କରି ପ୍ରବୋଧି ଗୋପୀଙ୍କି
ଜ୍ଞାନପଥ ତାଙ୍କୁ କହ ॥ ୭ ॥
ଶ୍ରୀକୃଷ୍ଣ ବଚନ ଶୁଣିଣ ଉଦ୍ଧବ
ଦିବ୍ୟରଥ ସଜକଲା
ରଜନୀ ପ୍ରଭାତେ ଜୟ ଶଙ୍ଖବାଇ
ଗୋପ ପାଟଣାକୁ ଗଲା ॥ ୮ ॥
ସେଦିନ ଗୋପରେ ପ୍ରଚୁର ଆନନ୍ଦ
ଗାଈ ବନ୍ଦାଇବା ବୃନ୍ଦ
ଗୋପପୁର ମଣ୍ଡି ଉତ୍ସବ ଆନନ୍ଦ
ଯାହା କରୁଅଛନ୍ତି ନନ୍ଦ ॥ ୯ ॥
ଏମନ୍ତ ସମୟେ ଉଦ୍ଧବ ଯାଇଣ
ଗୋପରେ ପ୍ରବେଶ ହୋଇ
ନନ୍ଦ ସିଂହଦ୍ୱାରୁ ରଥୁଁ ଓହ୍ଲାଇଣ
ଭକତମାନଙ୍କୁ ଚାହିଁ ॥ ୧୦ ॥
ଦେଖି ଯଶୋବନ୍ତୀ ପାଦ ପଖାଳନ୍ତି
ଆନନ୍ଦେ ଯଶୋଦା ରାଣୀ
ବସିବାକୁ ଦିବ୍ୟ ଆସନ ଦେଇଣ
ବାରତା ପୁଛନ୍ତି ପୁଣି ॥ ୧୧ ॥
ଯଶୋଦା ବୋଇଲେ ହେ ଉଦ୍ଧବ ଶୁଣ
କଥାଏ କହିବା ତୋତେ
କେଉଁ ଦୁଃଖେ ଯାଇଁ ମଥୁରା ରହିଲେ
ଅନାଥ କରିଣ ମୋତେ ॥ ୧୨ ॥

ଧନୁର ଉତ୍ସବ ଯାତ୍ରା କରି କଂସ
ଅକ୍ରୂରଙ୍କୁ ପେଷିଦେଲ
ସେ ଆସି ଗୋପରେ ହାଲୋଳ ଲଗାଇ
ରାମକୃଷ୍ଣ ଘେନଗଲା ॥ ୧୩ ॥
ସେହିଦିନୁ ତାହାଙ୍କ ଶ୍ରୀମୁଖ ନଦେଖି
କ୍ଷଣେ ସୁସ୍ଥ ନାହିଁ ମନ
କାହିଁ ଗଲେ ମୋର ଦୁଃଖର ମଣ୍ଡଳ
କୃପଣ ପେଟିଆ ଧନ ॥ ୧୪ ॥
ଅନ୍ଧର ଲଉଡ଼ି ହୃଦୟ ପଦକ
ଦରିଦ୍ର ଲୋକଙ୍କ ବିତ୍ତ
ତାଙ୍କ ବିନା ମୁଁ ଯେ ଅନାଥ ହୋଇଲି
କେମନ୍ତେ ଧରିବି ଚିତ୍ତ ॥ ୧୫ ॥
ଉଦ୍ଧବ ବୋଇଲେ ଶୋକ ପରିହର
କହୁଛି ସବୁ ବାରତା
ସାବଧାନ ହୋଇ ଶୁଣିବା ଗୋସାଇଁ
ଠାକୁରଙ୍କ ନିଜ ମାତା ॥ ୧୬ ॥
ନିରାକାର ଜ୍ୟୋତି ମର୍ତ୍ତ୍ୟରେ ଜନ୍ମିଛି
ବେଦମୂର୍ତ୍ତି ଧରିହରି
ଅଶେଷେ ବ୍ରହ୍ମାଣ୍ଡେ ଯେ ପ୍ରଭୁ ଠାକୁର
ତୁମ୍ଭେ କହ୍ନା ବୋଲ ମୋର ॥ ୧୭ ॥
ସବୁର ଜୀବନ ସବୁଙ୍କର ଧନ
ସବୁର ଜୀବିକା ସେହି
ସଂସାର ଭିତରେ ଯେତେ ଜୀବଜନ୍ତୁ
ତାଙ୍କବିନୁ ନାହିଁ କେହି ॥ ୧୮ ॥
ଏବେ ତୁମ୍ଭେ ତାଙ୍କୁ ଯେମନ୍ତେ ଲୋଡ଼ିବ
କହିବା ତହିଁର ରୀତି
ମନସ୍ଥିର କରି ରଙ୍ଗ ଅଧରକୁ
ଦେଉଥିବ ଚିତ୍ତବୃତ୍ତି ॥ ୧୯ ॥

---

ହାଲାଲ — ହାୟ ହାୟ ଶବ୍ଦ, ହଟ୍ଟଗୋଳ

ଭାବକୁ ନକଟ ପ୍ରସନ୍ନ ହୁଅନ୍ତି
ଭାବ ବନୋଦଆ ରାମ
ଭକତକୁ ଭେଳା ଶ୍ୱେତ ଚନ୍ଦ୍ର ତୋଳା
ନବୀନ ସୁନ୍ଦର ଶ୍ୟାମ ॥ ୨୦ ॥

ଯଶୋଦା ସଙ୍ଗତେ ବଗୃର କରନ୍ତେ
ଜାଣିଲେ ବରଜ ବାସୀ
ଏକସଖୀ ଆଗେ ଆରେକ କହୁଛୁ
ଉଦ୍ଧବ ଅଛନ୍ତି ଆସି ॥ ୨୧ ॥

ଚଳିଗୋ ସମସ୍ତେ ଆଗେ ଉଦ୍ଧବଙ୍କୁ
କରିବା ଯାଇଁଣ ସେବା
ଏତେକାଳେ ଆମ୍ଭ ଦଶା ପାଲଟିଲା
ଶ୍ରୀକୃଷ୍ଣ ଆସିବେ ଅବା ॥ ୨୨ ॥

ଶୁଣି ବ୍ରଜନାରୀ ସକଳ ପାସୋରି
ଘୁଡ଼ଣ କୁଟୁମ୍ବ ଆଶ
ଏକଠୁଣ୍ଡ ହୋଇ ସର୍ବଗୋପାଙ୍ଗନା
ମିଳିଲେ ଉଦ୍ଧବ ପାଶ ॥ ୨୩ ॥

କ୍ରୋଧଭର ହୋଇ ସମସ୍ତେହେଁ ଯାଇଁ
ଭକତ ଭାବ ଯୁଗତେ
ଶିରେ କରଯୋଡ଼ ଭକତଙ୍କୁ ବେଢ଼ି
କାନ୍ଦନ୍ତି ଆକୁଳ ଚତ୍ତେ ॥ ୨୪ ॥

ପ୍ରଭୁ ଗୁଣଗୁଣି ବରଜ ତରୁଣୀ
ସମସ୍ତେ କରନ୍ତି କୋହ
ଏକସଖୀ ମୁଖୁ ଆରେକ ଗୁଆଳ
ଅଞ୍ଚଳେ ପୋଛନ୍ତି ଲୁହ ॥ ୨୫ ॥

ହାହା, କୃଷ୍ଣ ବୋଲି ରୋଦନ କରନ୍ତି
ଉଦ୍ଧବଙ୍କ ଚରଣେ ପଡ଼ି
ଗୋପୀମାନଙ୍କର ଭକତ ଦେଖିଣ
ଉଦ୍ଧବହେଁ କରଯୋଡ଼ ॥ ୨୬ ॥

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ଏତୁମ୍ଭ ନୁହଇ ଭଲ
ତୁମ୍ଭେ ଆମ୍ଭଙ୍କୁ ଯେ ଓଳଗି ହୋଇଲ
ଏତେ କର୍ମ କପାଁ କଲ ॥ ୨୭ ॥
ଆମ୍ଭେ ଗୋପନାରୀ ବନଜନ୍ତୁ ସର
ଅଶାନ୍ତ ଆଗ୍ରରେ ଥାଉଁ
ଦଧିମୁଣ୍ଡେ ଯେନ ବ୍ରାହ୍ମଣ ଚଣ୍ଡାଳ
ସବୁଦ୍ୱାରେ ବୁଲିଯାଉଁ ॥ ୨୮ ॥
ତୁମ୍ଭେ ଯେ ପ୍ରଭୁଙ୍କ ଅଙ୍ଗମଙ୍ଗ ଲୋକ
ସନ୍ତ ଭକତ ସୁମତି
ବଡ଼ କପାଁ ହୋଇ ଆମ୍ଭକୁ ଓଳଗ
ଏ ତୁମ୍ଭର କେଉଁ ରୀତି ॥ ୨୯ ॥
ଉଦ୍ଧବ ବୋଇଲେ ତୁମ୍ଭ ମୁଖ ଦେଖି
ଗଲା ମୋର ସବୁ ଦୁଃଖ
ଭକ୍ତକୁ ଭକ୍ତ ଯେ ଭେଟାଭେଟି ହେଲେ
ହୁଅଇ ସେମାନଙ୍କୁ ସୁଖ ॥ ୩୦ ॥
ଯେଉଁମାନେ କୃଷ୍ଣ ପଦାରେ ନଥାନ୍ତି
ସେ ପ୍ରାଣୀ ମାନେଟି ଜଡ଼
ତୁମ୍ଭମାନଙ୍କର ଭକତି ଭାବକୁ
ମୁଁ ଗୁର ନୁହଇ ବଡ଼ ॥ ୩୧ ॥
ଯେତେବେଳେ ଧ୍ରୁବ ତପବୃତ୍ତି ହେଲେ
ଶ୍ରୀକୃଷ୍ଣ ଚରିତ ଠାକୁ
ମାରକଣ୍ଡ ଋଷି ସର ନୋହିଲେଟି
ସାତ ବରଷ ପୁଅକୁ ॥ ୩୨ ॥
ଗୋପୀ ବୋଇଲେ ତା କେମନ୍ତେ ଜାଣିବା
ଆମ୍ଭମନେ ପ୍ରତେନାହିଁ
ତୁମ୍ଭେ ହେ ମହତ ଠାକୁରଙ୍କ ହିତ
ସମସ୍ତ କହ ଗୋସାଇଁ ॥ ୩୩ ॥

---

ଓଳଗ — ନମସ୍କାର

ଉଦ୍ଧବ ବୋଇଲେ ଶୋକ ତେଜ ତୁମ୍ଭେ
ଏକମୁଖ ହୋଇ ଆସ
ଆମ୍ଭଠାରୁ ଯେବେ ସେକଥା ଶୁଣିବ
ଧଇର୍ଯ୍ୟ ଧରଣ ବସ ।। ୩୪ ।।

ଧନୁମାସ ଅନ୍ତେ ମକର ପଶନ୍ତେ
ବଡ଼ ଏକାଦଶୀ ଦିନ
ସର୍ବ ଋଷିମାନେ ଗଙ୍ଗାଘାଟରେ ଯାଇ
ପ୍ରଭାତରେ କଲେ ସ୍ନାନ ।। ୩୫ ।।

ଅଙ୍ଗିରା ଅଗସ୍ତି ଭୃଗୁ ପରାଶର
ନାରଦ ଏ ମହାମୁନି
ସନକ ମାର୍କଣ୍ଡ ବ୍ୟାସ ଶୁକ ସଙ୍ଗେ
ଅଷ୍ଟାବକ୍ର ଆଦିଯେନି ।। ୩୬ ।।

ଧ୍ରୁବ ଆଦିକରି ବିଶ୍ୱାମିତ୍ର ମୁନି
ସମସ୍ତେ ଅଛନ୍ତି ବସି
ଷଟ୍‌କର୍ମ ସାରି ମୁକତ ମଣ୍ଡପେ
ଗୋଷ୍ଠୀକଲେ ସର୍ବଋଷି ।। ୩୭ ।।

ଅଗସ୍ତି ବୋଇଲେ ଆହେ ପରାଶର
ଶ୍ରୀକୃଷ୍ଣ ମହିମା କହ
ଆମ୍ଭମାନଙ୍କର ଦୁଷ୍କୃତ ହରିବ
ତୁମ୍ଭେହିଁ ମୁକତ ହୁଅ ।। ୩୮ ।।

ସେ ତହୁଁ କହିଲେ ଏଡ଼େ ଭାଗ୍ୟ କାହିଁ
କହିବ ଶ୍ରୀକୃଷ୍ଣ କଥା
ମୁହିଂଗୁର ବେଳେ ଉଚ୍ଚାରି ନ ପାରେ
ଶ୍ରୀ ବାସୁଦେବଙ୍କ କଥା ।। ୩୯ ।।

ପରାଶର ମୁଖୁଁ ଶୁଣିଣ ଅଗସ୍ତି
ବ୍ୟାସଙ୍କ ମୁଖକୁ ଚାହିଁ
ବୋଇଲେ ଶ୍ରୀକୃଷ୍ଣ ଚରିତ ଗୋସାଇଁ
ତୁମ୍ଭେ ପାରିବକି କହି ।। ୪୦ ।।

ବ୍ୟାସ କହିଲେ ମୁଁ କୋଟି କୋଟି ଶ୍ଳୋକ
ଅକ୍ଳେଶେ ରଚନା କଲି
ଆଜଯାଏ ତାଙ୍କ ଅନ୍ତ ନ ପାଇଣ
ବୃଥାରେ ଗଞ୍ଜି ହୋଇଲି ।। ୪୧ ।।
ବ୍ୟାସ ମହାମୁନି ବଚନ ଶୁଣିଣ
ଅଗସ୍ତି ପାଇଲେ ବ୍ୟଥା
ଶୁକମୁନି ମୁଖ ଚୃହିଁଣ ବୋଇଲେ
ତୁମ୍ଭେ କହ କୃଷ୍ଣ କଥା ।। ୪୨ ।।
ଶୁକ କହିଲେ ଯେ ଶ୍ରୀକୃଷ୍ଣ ଚରିତ
ପିତା ନ ଯାଣିଲେ ଯହିଁ
ତାହାଙ୍କ ବୀର୍ଯ୍ୟରୁ ଜାତ ହୋଇ କରି
ମୋହର ଭରସା କାହିଁ ।। ୪୩ ।।
ଶୁକମୁନି ମୁଖୁ ଶୁଣିଣ ଅଗସ୍ତି
ମନେ ମନେ ଭ୍ରମହୋଇ
ନାରଦ ମୁଖକୁ ଚୃହିଁଣ ବୋଇଲେ
ତୁମ୍ଭେ ପାରିବକି କହି ।। ୪୪ ।।
ନାରଦ ବୋଇଲେ ଯୋଗାଦ୍ୟ ପୁରୁଷ
ନାମ ଯାର ମାୟାଧର
ମୁହିଁ ଗୁର କାହିଁ ସେକଥା କହିବି
ବ୍ରହ୍ମାଙ୍କୁ ତ ଅଗୋଚର ।। ୪୫ ।।
ତନପୁରେ ଯହିଁ ଯେତେକ ଦେଖଇ
ତାଙ୍କ ଚରିତ ଅଲେଖ
ସିଦ୍ଧମାନେ ଯାଙ୍କ ଭେଟ ନ ପାଆନ୍ତି
ମୁଁ ଗୁର ବା କେଉଁ ଲେକ ।। ୪୬ ।।
ନାରଦ ବଚନେ ଅଗସ୍ତି ଋଷିପ୍ରେ
ଅଙ୍ଗିରାଙ୍କ ମୁଖ ଚୃହିଁ
ଭାଷିଲେ ଶ୍ରୀକୃଷ୍ଣ ଚରିତ ଗୋସାଇଁ
ତୁମ୍ଭେ ପାରିବକି କହି ? ।। ୪୭ ।।

ଅଙ୍ଗିରା ବୋଇଲେ ଶୁଣିମା ଅଗସ୍ତି
ବେଳେ ମୁଁ ଏମନ୍ତ କଲି
ଗୁରୁଆଜ୍ଞେ ତାଙ୍କ ମହିମା ଖୋଜିଣ
ମହାଦେବ ଠାକୁ ଗଲି ।। ୪୮ ।।

ଅନେକ ପ୍ରକାରେ ଚରଣେ ବନ୍ଦି
ପଚାରିଲି ଶିବଙ୍କୁଲେ
ସେହି ବୋଇଲେ ମୁଁ ଯୋଗ ସାଧୁଅଛି
ଅନ୍ତ ପାଉନାହିଁ ହଲେ ।। ୪୯ ।।

ଅଙ୍ଗିରା ବଚନ ଶୁଣିଣ ଅଗସ୍ତି
ମାରକଣ୍ଡ ମୁଣି ଗୃହେଁ
ବୋଇଲେ ଶ୍ରୀକୃଷ୍ଣ ଚରିତ ଗୋସାଇଁ
ତୁମ୍ଭେ ପାରିବକି କହି ? ।। ୫୦ ।।

ବେଦ ବିଦ୍ୟା ତୁମ୍ଭେ ଅନେକ ସାଧିଛ
ଅନେକ କାଳର ଯତି
ତୁମ୍ଭଠାରୁ ଆମ୍ଭେ ପ୍ରଭୁକଥା ଶୁଣି
ସର୍ବେ ଲଭିବୁଁ ମୁକତି ।। ୫୧ ।।

ଅଗସ୍ତି ବଚନେ ମାରକଣ୍ଡ ମୁନି
ବୋଇଲେ ଶୁଣହେ ଋଷି
ଆମ୍ଭେ ଯେ ଶ୍ରବଣ ଶ୍ରୀକୃଷ୍ଣ କଥାରେ
ଲିତାଏଁ ନପାରୁଁ ପଶି ।। ୫୨ ।।

ଯୁଗ ଶେଷକାଳେ ଭ୍ରମି ଯାଉଥିଲୁ
ଗମ୍ଭୀର ସମୁଦ୍ରେ ପଡ଼ି
ପ୍ରଭେ ଷାହିକର ବୋଲ ନ କହିଲେ
ନଷ୍ଟପୁ ମରନ୍ତୁ ବୁଡ଼ି ।। ୫୩ ।।

ଆମ୍ଭ ମନ କଥା ହୃଦୟୁ ବାରତା
ଜାଣିଲେ ସାରଙ୍ଗ ପାଣି
ପ୍ରଭେ ଷାହିକର କହିବା ମାତ୍ରକେ
ଗର୍ଭେ ସମ୍ଭରିଲେ ଆଣି ।। ୫୪ ।।

କେବଳ ମାତ୍ର ମୁଁ ଗର୍ଭରେ ପଶିଲି
ନ ଜାଣଇ ଆଉ କଛି
ଦେଖିଲି ଶ୍ରୀକୃଷ୍ଣ ଉଦର ଭିତରେ
ଅଶେଷ ବ୍ରହ୍ମାଣ୍ଡ ଅଛି ।। ୫୫ ।।

କୋଟୀ କୋଟୀ ମେରୁ କୋଟି କୋଟି ପୃଥ୍ୱୀ
ଯେଉଁ ଆଡେ ଅଛି ଯେତେ
କେତେ ଯୁଗଯାଏ ଗର୍ଭରେ ବୁଲିଲି
କଳନା ନଗଲା ମୋତେ ।। ୫୬ ।।

ବ୍ୟାସ ମହାସନ୍ତ ବ୍ରହ୍ମରୁ ଉତ୍ପତ୍ତି
ଅନ୍ତ ନ ପାଇଲେ ସହି
ମୁହିଁ ହୀନ ଛାର ତାହାଙ୍କ ମହିମା
ବଶେଷି କହିବି କାହିଁ ।। ୫୭ ।।

ଯେମାନେ ତାହାଙ୍କ ଭକତ ଅଟନ୍ତି
ଶୁଣ ତୁମ୍ଭେ ସର୍ବ ଋଷି
ମହା ସୂକ୍ଷ୍ମମୟ ଯୋଗାଧି ପୁରୁଷ
ସେହିଠାରେ ଛନ୍ତି ବସି ।। ୫୮ ।।

ଶ୍ରୀକୃଷ୍ଣ ଚରିତ ଉଚ୍ଚାର କରିବେ
ମେହିତ ଯୋଗ୍ୟ ନୋହିଲେ
ଧ୍ରୁବେ ଶୁହିଁ ବୋଲେ ଠାକୁରଙ୍କ କଥା
ଏହି କହିବେ କହିଲେ ।। ୫୯ ।।

ଏତେବୋଲି ମୁନି ଆସନ ଉପେକ୍ଷି
ଧଇଲେ ବାଳକ ପାଦ
ଦେଖି ମୁନିମାନେ ଚକିତ ହୋଇଲେ
ମନେ କଲେ ମହା ଖେଦ ।। ୬୦ ।।

ସର୍ବ ଋଷିମାନେ ତାହାଙ୍କୁ କହିଲେ
ନଷ୍ଟପ୍ରୟ କଲ ଅମିତ
କଅଁଳା ପୁଅର ଚରଣ ଧଇଲ
ଏ ତୁମ୍ଭର କେଉଁ ସ୍ୱତ ।। ୬୧ ।।

ସାତ ବରଷର ବାଳକ ଶିଶୁଏ
ତୁମ୍ଭେ ସାତକଳ୍ପ ମୁନି
ଏତେ ସତ୍ତ ହୋଇ ପାଦ ଯେ ଧଇଲ
ପୂରବ ହୋଇଲା ହାନି ॥ ୬୨ ॥

ମୁନି ବୋଇଲେ ଏ ବାଳକ ଶୁଣହୁ
ବ୍ରହ୍ମଙ୍କନେ ବଡ଼ ଦୂତ
ଜନ୍ମ କାଳୁ ଲେଖା ଦେଖିଲା ମୋଠାରୁ
ବେଦବର୍ଣ୍ଣ ଅଟେ ବଡ଼ ॥ ୬୩ ॥

ଋଷି ବୋଇଲେ ତା କେମନ୍ତେ ଜାଣିବା
ଆମ୍ଭମନେ ପ୍ରତେନାହିଁ
ଏହାଙ୍କ ଆଦ୍ୟନ୍ତ ବାରତା କେମନ୍ତ
କାହୁଁ ଜାଣିଲ ଗୋସାଇଁ ॥ ୬୪ ॥

ମୁନି ବୋଇଲେ ଏ ଯେଉଁ ସମୟରେ
ମାତାଙ୍କ ଗର୍ଭରେ ଥିଲେ
ଜନନୀ ଉଦରେ ଥାଇ ଧ୍ରୁବ ସତ
କୃଷ୍ଣନାମ ଆଶ୍ରେକଲେ ॥ ୬୫ ॥

ବ୍ରତଚର ହୋଇ କୃଷ୍ଣଙ୍କୁ ଭଜଲେ
କ୍ଷଣେ ନ ଗ୍ଭଡ଼ନ୍ତି ଚିତ୍ତେ
ରଜନୀ ଦିବସେ ଶ୍ରୀକୃଷ୍ଣ ଚରିତ
ଉଚ୍ଚାରନ୍ତି ନତ୍ୟେ ନତ୍ୟେ ॥ ୬୬ ॥

ତଦନ୍ତରେ ପୁଣି ପ୍ରସବ ସମୟେ
ଜନନୀ କଲେ ଜନମ
ଏତେ ସତ ଏହିଁ ଗର୍ଭୁଁ ପଡ଼ିଲେହେଁ
ଘୋଷୁଥାନ୍ତି କୃଷ୍ଣନାମ ॥ ୬୭ ॥

ସେହିଦିନୁଁ ପୂର୍ବ ବାସନା ଘେନିଣ
ବିଷୟେ ଚିତେ ନଗଲେ
ସପ୍ତମ ବରଷ ସମ୍ପୂର୍ଣ୍ଣ ହୁଅନ୍ତେ
କୃଷ୍ଣନାମ ଆଶ୍ରେକଲେ ॥ ୬୮ ॥

---

ସାତକଳ୍ପ — ସାତଯୁଗ ଧରି

ଆମ୍ଭେମାନେ ଯନ୍ତ ଶ୍ରୀକୃଷ୍ଣ ସେବକ
ଅନେକ କାଳରୁ ନୋହୁଁ
ଦଣ୍ଡେକର ନାମ ନବୋଲ ଧଇଲେ
ଧ୍ରୁବ ମଙ୍ଗେ ମଣକାହୁଁ ।। ୬୯ ।।

ଷଣେ ଦଣ୍ଡେ କର ଭଜନ କରନ୍ତେ
ତେବେ ସେ ପୂର୍ଣ୍ଣ ନୋହଲ
ସାତକଳ୍ପ ଯାକ ଲେଷ୍କ ଲେଷ୍କ ମତେ
ପାଞ୍ଚବରଷ ହୋଇଲା ।। ୭୦ ।।

ତେଣୁକର ଧ୍ରୁବ ବେନ ବରଷର
ମୋଠାରୁ ଅଟନ୍ତି ଉଚ
ତୁମ୍ଭେ ମହାମୁନ ବବେକୀ ପୁରୁଷ
ବଚୃର ଆମ୍ଭଙ୍କୁ ବାଛ ।। ୭୧ ।।

ଶୁଣି ସବଋଷି ସାନନ୍ଦ ହୋଇଲେ
ଗୁଡ଼ଲେ ହୃଦସୁ ବ୍ୟଥା
ଉଦ୍ଧବ ବୋଇଲେ ଶୁଣ ଗୋପନାର
ପ୍ରଭୁଙ୍କ ସେବକ କଥା ।। ୭୨ ।।

ତୁମ୍ଭେ ଯେ କହଲ ମାନକୁ କପାଇଁ
ଓଲଟି ହୋଇଲ ପୁଣ
ସାନ ଲୋକଙ୍କର ଏମନ୍ତ ମହମା
ଆମ୍ଭଠାରୁ ତୁମ୍ଭେ ଶୁଣ ।। ୭୩ ।।

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ତୁମ୍ଭେ ଯାହା କହୁଅଛ
ଧ୍ରୁବ ମହାଯନ୍ତ ପ୍ରତ୍ୟକ୍ଷ ଈଶ୍ବର
ଆମ୍ଭେ କାହିଁ ତାଙ୍କୁ ଲକ୍ଷ୍ୟ ।। ୭୪ ।।

ଦେଖିଲଟିକ ଶ୍ରୀମାର୍କଣ୍ଡେୟ ମୁନ
ଚରଣ ଧଇଲେ ଯାଇଁ
ଆମ୍ଭେ ଗୁର ହୀନ ପାମରୀ ଗୁଆଳୀ
ଧ୍ରୁବ ମଙ୍ଗେ ମଣକାହୁଁ ।। ୭୫ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ଏକଥା ମାନ ଗୋ ଘୁଡ଼ି
ମୋର ଈଶ୍ବରଙ୍କୁ ଏମନ୍ତ ଭାଶଇ
ଧ୍ରୁବଠାରୁ ତୁମ୍ଭେ ବଡ଼ ॥ ୭୬ ॥

ପ୍ରଭୁଙ୍କର ଅଙ୍ଗ ସଙ୍ଗିନୀ ହୋଇଲ
ତେଣୁକରି ମହାଜ୍ଞାନୀ
ଷୋଡ଼ଶ ସହସ୍ର ମୁନିଜନ୍ମ ହେଲେ
ପୂର୍ବର ବାସନା ହେନ ॥ ୭୭ ॥

ଗୋପୀଏ ବୋଲିଲେ କେମନ୍ତେ ଜାଣିବା
ଆମ୍ଭମାନେ ପ୍ରତେନାହିଁ
ତୁମ୍ଭେ ଯେଉଁ କଥା ଉତ୍ଥାପନ କଲ
ସଂକ୍ଷେପି କହ ଗୋସାଇଁ ॥ ୭୮ ॥

ଉଦ୍ଧବ ବୋଇଲେ ଆମ୍ଭେ ତା ନଜାଣୁ
ପୁରାଣରେ ଅଛି ଯଥା
ତେଣୁ ତୁମ୍ଭ ଆଗେ ପ୍ରକାଶ କରୁଛୁ
ତୁମ୍ଭ ପୂର୍ବଜନ୍ମ କଥା ॥ ୭୯ ॥

ଯେଉଁଦିନ ତୁମ୍ଭେ ବ୍ରହ୍ମାଙ୍କ ନନ୍ଦିନୀ
ହୋଇଥିଲ ବ୍ରଜନାରୀ
ଦୃଢ଼ତର ହୋଇ ମନ ସ୍ଥିର କର
କହିବା କରି ବିସ୍ତାର ॥ ୮୦ ॥

ସତ୍ୟଯୁଗ ଅନ୍ତେ ତ୍ରେତା ପ୍ରବେଶନ୍ତେ
ବସୁନାମେ ଏକଧାତା
ଷୋଡ଼ଶ ସହସ୍ର ମୁନି ଜନ୍ମ କଲେ
ଏକେ ଏକେ ବଳବନ୍ତା ॥ ୮୧ ॥

ସେ ଦିବସେ ତୁମ୍ଭେ ଧର୍ମକଥା ଶୁଣି
ଜ୍ଞାନ ସାଧିବାକୁ ଗଲ
ମୁକତି ହୋଇବା ନିମିତ୍ତରେ ତୁମ୍ଭେ
ଈଶ୍ବରଙ୍କୁ ସେବାକଲ ॥ ୮୨ ॥

ଈଶ୍ୱରଙ୍କ ପାଦେ ମନଜ୍ଞାନ ଦେଇ
ଛାଡ଼ିଲ ସଂସାର ଆଶ
ଗଙ୍ଗାକୂଳେ ବସି ତପକଲ ତୁମ୍ଭେ
ନବେ ସହସ୍ର ବରଷ ॥ ୮୩ ॥

ଜ୍ଞାନ ଅନଳରେ ପ୍ରକୃତି ଦାହିଲ
ଇନ୍ଦ୍ରିୟମାନଙ୍କୁ ମାରି
ଅନ୍ନପାଣି କିଛି ଭକ୍ଷଣ ନକଲ
ପବନ ଆହାର କରି ॥ ୮୪ ॥

ଧୂପ ଦୀପ କରି ଚମ୍ପୂମାନ ଖୋଜି
ଈଶ୍ୱରଙ୍କୁ କଲ ପୂଜା
କୈଳାସ କନ୍ଦରେ ଆସନ କରାଇ
ଜାଣିଲେ ଦେବାଧି ରାଜା ॥ ୮୫ ॥

ତୁମ୍ଭମାନଙ୍କର ଭକତି ଦେଖିଣ
ବିଜେ କଲେ କାଶୀବାସୀ
ଡିବିଡିବି କରି ଡମ୍ବରୁ ବଜାନ୍ତି
ବୃଷଭ ପିଠିରେ ବସି ॥ ୮୬ ॥

ଶିରେ ଦିବ୍ୟଜଟା କଟୀରେ କାଛଟା
ବିଭୂତି ଭୂଷଣେ ଶୋହେ
ମହା ଯୋଗେଶ୍ୱର ଭୋଳା ଦିଗମ୍ବର
ପ୍ରସନ୍ନ ହୋଇଲେ ଭାବେ ॥ ୮୭ ॥

ଦେଖି ଦେବ କାଶୀନାଥ ପରଶଂସି
ବୋଇଲେ ବାକ୍ୟ ସଂକ୍ଷେପେ
ମର୍ତ୍ତ୍ୟରେ ଥିବକ ସ୍ୱର୍ଗକୁ ଯିବ ହେ
ଏତେ ଦୃଢ଼ତର ତପେ ॥ ୮୮ ॥

ଇନ୍ଦ୍ରଦ୍ୟୁମ୍ନ ନରେଶ୍ୱ ଆମ୍ଭାରେ ନମନ୍ତି
ଆମ୍ଭପାଦେ କଲ ସେବା
ତୁମ୍ଭ ସେବା ଦେଖି ପ୍ରସନ୍ନ ହୋଇଲୁଁ
ବରମାଗ ଏବେ ଦେବା ॥ ୮୯ ॥

ମୁନିଏ ବୋଇଲେ ଯୋଗେଶ ପ୍ରତ୍ୟକ୍ଷ
ଶୁଣିମା ତ୍ରିଦଶ ସାଇଁ
ଏତେ ଘୋର ତପ ତୁମ୍ଭଙ୍କୁ କରୁଛୁ
ମୁକତି ଲଭିବା ପାଇଁ ॥ ୯୦ ॥

ଈଶ୍ୱର ବୋଇଲେ ଏ ମହା ବିଶ୍ୱରେ
ନାହିଁ ଆମ୍ଭ ଅଧିକାର
ମୁକତି ବୋଲି ମୋ ଯେଉଁ କଥା ଗୋଟି
ବିଷ୍ଣୁଙ୍କ କୋଠ ଭଣ୍ଡାର ॥ ୯୧ ॥

ରାଜତ୍ୱ ସମ୍ପଦ ବନ୍ଦ୍ରପଣ ଆଦି
ଏହା ସବୁ ଦେବାଘେନ
ମୁକତି ଦେବାକୁ ସକ୍ଷମ ନୋହୁଁ ସେ
ଠାକୁରଙ୍କ କୋଠଧନ ॥ ୯୨ ॥

ମୁନିଏ ବୋଇଲେ ଏକ ବିପରୀତ
ଶୁଣିବେ ଶ୍ମଶାନବାସୀ
ବୃଥା ଆମ୍ଭେମାନେ ଯେତେ ତପକଲୁଁ
ନିଷ୍ଫଳ ହୋଇଲା ଆସି ॥ ୯୩ ॥

ପାର୍ବତୀ ନାଥଙ୍କୁ ସେବା କରି ଯେବେ
କିଛି ଫଳ ନ ପାଇଲୁଁ
କାର୍ଯ୍ୟ କାରଣ ତ କିଛି ହିଁ ନୋହିଲା
ବୃଥାରେ ଗଞ୍ଜି ହୋଇଲୁଁ ॥ ୯୪ ॥

ଶୁଣି ସଦାଶିବ ମୁନିଙ୍କି ବୋଇଲେ
ଆତଙ୍କେ ନ ଭାଳ କିଛି
ଆମ୍ଭ ସେବାକରି ମୁକତି ନ ହେବା
ତୁମ୍ଭଙ୍କୁ କାରଣ ଅଛି ॥ ୯୫ ॥

ତ୍ରେତା ଯୁଗରେହିଁ ଯେତେ ତପକଲ
ଫଳ ପ୍ରସୂତ ଆଉନାହିଁ
ତୁମ୍ଭମାନଙ୍କର ପୁଣ୍ୟ ବିକାଶିବ
ଦ୍ୱାପର ଯୁଗରେ ଯାଇଁ ॥ ୯୬ ॥

---

ତ୍ରିଦଶ ସାଇଁ — ଈଶ୍ୱର

ନାରାକାର ପ୍ରଭୁ ମାନବ ମୂରତ୍ତି
ଦନୁଜମାନଙ୍କ ତାପେ
ଗୋପପୁରେ କୃଷ୍ଣ ନାମେ ଜନମିବେ
ଲଙ୍ଗା ଅବତାର ରୂପେ ॥ ୯୭ ॥

ତୁମ୍ଭେ ସବଂମୁନି ଏ ବାସନା ଘେନି
ମେହିପୁରେ ଜନମିବ
ଅତି ରସ କୂପ ବ୍ରଜନାରୀ ରୂପ
ଧରି ବସ୍ତା ପାଳୁଥିବ ॥ ୯୮ ॥

ନବ ଯଉବନ ରୂପ ସଦା ଥିବ
କେବେ ନୋହିବ ଭଙ୍ଗ
ପତିମାନେ କେହି ଅମାନ୍ତ ନକରି
ନ ଛୁଇଁବେ ତୁମ୍ଭ ଅଙ୍ଗ ॥ ୯୯ ॥

ସବୁ ଗୋପୀଙ୍କର ଶ୍ରୀକୃଷ୍ଣ ହୋଇବେ
ପ୍ରାଣର ବଲ୍ଲଭ ପତି
ତେତା ଯୁଗରହିଁ ଯେତେ ତପ ଫଳ
ତେଣୁ ପାଇବ ମୁକତି ॥ ୧୦୦ ॥

ସଦାଶିବ ବାଣୀ ମୁନିମାନେ ଶୁଣି
ଛାଡ଼ିଲେ ହୃଦୟ ବ୍ୟଥା
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ତୁମ୍ଭ ପୂର୍ବଜନ୍ମ କଥା ॥ ୧୦୧ ॥

ତୁମ୍ଭେ ଯେତେ ଗୋପୀ ବ୍ରହ୍ମମୟ ତପୀ
ପ୍ରତ୍ୟକ୍ଷେ ଶ୍ରୀକୃଷ୍ଣ ଦେହ
ଅନବରତରେ ପ୍ରଭୁଙ୍କୁ ଭଜିଲ
ତେଣୁ ତୁମ୍ଭେ ମାନ ନୁହଁ ॥ ୧୦୨ ॥

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ତୁମ୍ଭେ ଅଟ ମହାମାନ୍ୟ
ପୂର୍ବଜନ୍ମ କଥା ସମସ୍ତ କହିଲ
ଆମ୍ଭର ଜୀବନ ଧନ୍ୟ ॥ ୧୦୩ ॥

କୃଷ୍ଣ ଥିବାବେଳେ ଯେତେ ସୁଖମାନ
ସେ ସୁଖ ପାଇବା କାହିଁ
ଏବେ ଯେବେ ଗୋପ ପାଷଣାରେ ଅଛୁଁ
ଆମ୍ଭଠାରୁ ପାପୀ ନାହିଁ ॥ ୧୦୪ ॥

ତେତେଦିନୁ ପ୍ରଭୁ କେତେ ସୁଖ ଦେଲେ
ମନରୁ ନୁହେ ବିସ୍ମର
ଘରେବା ବାହାରେ ଯେଉଁଆଡ଼େ ଚାହୁଁ
ତେଣେ ଦିଶୁଆନ୍ତି ହରି ॥ ୧୦୫ ॥
ଏଡ଼େ ପ୍ରଭୁ ହୋଇ କେଉଁ କଥା ପାଇଁ
ମନରେ ଗର୍ବ ବହିଲେ
ଆମ୍ଭମାନଙ୍କ ତ ଅନାଥ କରିଣ
ମଥୁରା ପୁରେ ରହିଲେ ॥ ୧୦୬ ॥

ହୃଦୟ କମଳେ ଚିନ୍ତା ଦେଇକରି
ହେଜଗଲେ ହୃଦୟଚକ୍ଷୁ
ବେନି ନୟନରେ ଛାଙ୍କୁଣୀ ପଡ଼ିଲା
ଅନ୍ଧପ୍ରାୟ ହୋଇଅଛୁ ॥ ୧୦୭ ॥

ତୁମ୍ଭେ ଯେ ଭକତ ଧର୍ମପୁତ୍ରଙ୍କ ହିତ
ପ୍ରତ୍ୟକ୍ଷେ ଶ୍ରୀକୃଷ୍ଣ ଦେହ
କେତେଦିନେ ପ୍ରଭୁ ଗୋପକୁ ଆସିବେ
ସେ କଥା ଆମ୍ଭଙ୍କୁ କହ ॥ ୧୦୮ ॥

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ସେ କଥା ମୁଁ ନ ଜାଣଇଁ
ମୋତେ ପେଷିଛନ୍ତି ତୁମ୍ଭମାନଙ୍କୁ ତ
ବାରତା କହିବା ପାଇଁ ॥ ୧୦୯ ॥

ତୁମ୍ଭେମାନେ ଗୋପୀ ବ୍ରହ୍ମମୟ ତପୀ
ପ୍ରଭୁଙ୍କୁ ଭଜିଲ ଯେଣୁ
ସେହି ତୁମ୍ଭନାମ ମନରେ ସ୍ମରି
ଛାଡ଼ି ନ ପାରନ୍ତି ତେଣୁ ॥ ୧୧୦ ॥

ମୋତେ ବୋଇଲେ ତୁ ଗୋପୀଙ୍କି କହିବୁ
ପ୍ରବୋଧ ଜ୍ଞାନ ବଚନେ
ଅବଶ୍ୟ ଆମ୍ଭେମେ ଦର୍ଶନ କରିବୁଁ
ଜ୍ଞାନ କରୁଥିବେ ମନେ ।। ୧୧୧ ।।

ଗୋପୀଏ ବୋଇଲେ ଗଣ୍ଡିଆ ପୁରୁଷ
ଗୋପକୁ ଆସିବେ କାହିଁ
ତୁମ୍ଭ ମୁଖୁଁ ଶୁଣି ସେହାଙ୍କର କଥା
ଆମ୍ଭର ବିଶ୍ୱାସ ନାହିଁ ।। ୧୧୨ ।।

ଉଦ୍ଧବ କହିଲେ ବିଧାତା କରୁଛି
କର୍ମର ବିପାକ ଧନ୍ଦା
ଦୂତପଣେ ଆମ୍ଭେ ଗୋପକୁ ଆସିଲୁ
ପ୍ରଭୁଙ୍କୁ ହୋଇଲା ନିନ୍ଦା ।। ୧୧୩ ।।

ଯଥୋଚିତ ଧର୍ମ ସାତ୍ତ୍ୱିକ ଭାବରେ
କହିଲେ ବଢ଼ିଲ ରୋଷ
ଭାଷାରେ ତୁମ୍ଭଙ୍କୁ ଜିଣିତ ନ ପାରି
ନଜାଣି ଅର୍ଜିଲ ଦୋଷ ।। ୧୧୪ ।।

ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ
ତୁମ୍ଭେଯେ ପ୍ରଭୁଙ୍କ ଦେହ
ତାଙ୍କୁ ଆମ୍ଭେମାନେ କାହିଁକି ନିନ୍ଦିବୁ
ସେକଥା ଆମ୍ଭଙ୍କୁ କହ ।। ୧୧୫ ।।

ବ୍ରଜ ଗୋପୀମାନେ ଏକଥା କହନ୍ତେ
ଉଦ୍ଧବ କରୁଣା ବହି
ସାନନ୍ଦ ହୋଇଣ ଅଶ୍ରୁଧାର କଲେ
ଗୋପୀଙ୍କ ମୁଖକୁ ଚାହିଁ ।। ୧୧୬ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ତୁମ୍ଭେ ଯେ ପ୍ରଭୁଙ୍କ ଦେହ
ଏବେ ତୁମ୍ଭେ କାହିଁ ତାହାଙ୍କୁ ବାଛିଲ
ସେକଥା ଆମ୍ଭଙ୍କୁ କହ ।। ୨୧୭ ।।

ଭକତମାନଙ୍କ ମାନ ଉଦ୍ଧାରଣ
ଯଶୋଦା ଦେବୀଙ୍କ ଶିଷ
ସେ ଅବା ତୁମ୍ଭଙ୍କୁ କରୁଣା ନକଲେ
ତୁମ୍ଭେକଲ ତାଙ୍କ କମ ।। ୧୧୮ ।।
ଦରିଦ୍ରଙ୍କ ଧନ ଭକ୍ତଙ୍କ ଜୀବନ
ଆତଙ୍କର ବଜ୍ରସେହ୍ନା
କେତେକ ଦନୁଜ ଗୋପରେ ମାଇଲେ
ନଜାଣ କ ତାଙ୍କ ବାନ: ।। ୧୧୯ ।।
ବାଳକ କାଳରେ ବ୍ରଜସୁତ ମେଳେ
ଅନେକକଲେ ଯେଉଁ କୃତ୍ୟ
କାଳନ୍ଦୀ ନଦୀରୁ କମଳ ତୋଳିଲେ
କାଳୀୟୁ ଫଣାରେ ନୃତ୍ୟ ।। ୧୨୦ ।।
ବକା ଅଘାସୁର ଯାମଳା ଅର୍ଜୁନ
କେଶୀ ପ୍ରଳମ୍ବାକୁ ନାଶି
ଅଷ୍ଟମଲ୍ଲ ଷଣ୍ଢ ଶକଟା ମାଇଲେ
ପୂତନା ଜୀବନ ଶୋଷି ।। ୧୨୧ ।।
ବନଦାହ ଦିନେ ଘୋର ବୃନ୍ଦାବନେ
ମରୁଥିଲେ ବ୍ରଜସୁତ
ଭକତ ଜନଙ୍କୁ ଉଦ୍ଧାର ସେଠାରୁ
ଅଗ୍ନି ଭକ୍ଷିଲେ ଅଚ୍ୟୁତ ।। ୧୨୨ ।।
ଆତୁର ଭାରତ ଯେତେ କରିଥିଲେ
କେତେ ସୁମରିବା ଜାଣି
ଦିନେ ଯେ ନନ୍ଦକୁ ସର୍ପ ଗିଳୁଥିଲା
ତହୁଁ ରଖିଲେ କହ୍ନାଇ ।। ୧୨୩ ।।
ମଧୁବନେ ପଶି ମଲ୍ଲଗଜ ନାଶି
ସୁଦାମା ଦୁଃଖ ଭଞ୍ଜନ
କଂସ ଆଦିକରି ସମସ୍ତ ମାଇଲେ
ନ ଜାଣ କ ତାଙ୍କ ଗୁଣ ।। ୧୨୪ ।।

---

ବଜ୍ରସେହ୍ନା — ଶ୍ରେଷ୍ଠରକ୍ଷା କବଚ

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
କହିବା ଉଚିତ ବାଣୀ
ପଣ୍ଡିତମାନଙ୍କ ମଧ୍ୟେ ତୁମ୍ଭେ କି
କହୁଅଛ ଶାସ୍ତ୍ର ଆଣି ।। ୧୨୫ ।।

ଉଦ୍ଧବ ଭଣିଲେ ଶାସ୍ତ୍ରମାନଙ୍କର
ଅନ୍ତ ପାଇବାକୁ ନାହିଁ
କେତେବେଳେ କି କି ବସ୍ତୁର ଲେଖନ୍ତି
ମୁଁ ତାହା କହିବ କାହିଁ ।। ୧୨୬ ।।

ତୁମ୍ଭେ ଗୋପନାରୀ ପୂର୍ଣ୍ଣ ନ ବସ୍ତୁର
ଦୁର୍ବୁଦ୍ଧି କପାଇଁ ଧର
ପ୍ରଭୁଙ୍କ ସେବକ ଅଟନ୍ତି ସେମାନେ
ତାହାଙ୍କୁ ନିନ୍ଦା ନକର ।। ୧୨୭ ।।

ଶ୍ରୀକୃଷ୍ଣ ଚରିତ ଅତ୍ୟନ୍ତ ପବିତ୍ର
କବିଙ୍କ ମୁଖେ ପଡ଼ିଲେ
କୋଟି ଅଶ୍ୱମେଧ ଯଜ୍ଞ ତୁଲ୍ୟ ପୁନେ
ଦିନକେ ପଦେ ଯୋଡ଼ିଲେ ।। ୧୨୮ ।।

ଶୁଚିମନ୍ତ ହୋଇ ଯେଣେ ଯିବ ଯାଅ
ଶ୍ରୀକୃଷ୍ଣ କଥାରେ ଲୟ
ଧର୍ମ କର୍ମ କିଛି ନଥିଲେ ତୁମ୍ଭର
ସର୍ବଦା ତା ପୂର୍ଣ୍ଣମୟ ।। ୧୨୯ ।।

ଦିନେ ମୁଁ ପ୍ରଭୁଙ୍କୁ ଏମନ୍ତ ବୋଇଲି
ଶୁଣହେ କରୁଣା ନିଧି
କେମନ୍ତ ପ୍ରକାରେ କବିତ୍ୱ ପଣରେ
ପ୍ରସରଇ ଦିବ୍ୟବୁଦ୍ଧି ।। ୧୩୦ ।।

ଧନଜନ ଦାରା ସମ୍ପଦରେ ମୋହ
ବିଷୟସ୍ୱାଦ ସବୁ ଖେଦ
ଏତେ ମହା ଦ୍ୱନ୍ଦ ଆଶ୍ରିତ ହେବାରୁ
କାହିଁ ମୂର୍ତ୍ତି ହେବ ପଦ ।। ୧୩୧ ।।

କହିଛନ୍ତି ପ୍ରଭୁ ଆମ୍ଭର ଭକତ
ପୂର୍ବେ ହୋଇଥିଲେ ମୁନି
ଆମ୍ଭେ ଆଣି ମର୍ତ୍ତ୍ୟେ ଜନ୍ମ କରାଇଲୁ
ଆମ୍ଭର ମହିମା ଘେନି ।। ୧୩୨ ।।

ତେଣୁକରି ମୋର ଭକତ ଅଛନ୍ତି
ପଦକୁ ଭଜିବା ପାଇଁ
ଯେ ମୋତେ ଭଜିଲେ ମୁଁ ତାଙ୍କୁ ଜାଣଇ
ଏଥିରେ ସନ୍ଦେହ ନାହିଁ ।। ୧୩୩ ।।

ଶାନ୍ତଧୈର୍ଯ୍ୟ ଆଦି ବିବେକ ଆମ୍ଭର
ଅଛଇ ଯେତେକ ଗୁଣ
ସେମାନଙ୍କଠାରେ ଅଛି ମୁଁ ଥୋଇଣ
ଉଦ୍ଧବ ମୋଠାରୁ ଶୁଣ ।। ୧୩୪ ।।

ତେଣୁ କରି ମୁହିଁ ପ୍ରକାଶ ହୁଅଇ
କବିଙ୍କ ହୃଦରେ ପଶି
ଯାହାଙ୍କ ଯେ ପଦ ଯେମନ୍ତ ଘଟଇ
କହି ଦେଉଥାଏ ବସି ।। ୧୩୫ ।।

ବିଷୟ ରସରେ ଯେସବୁ କବିତା
ପଦ ବିସ୍ତରିଲେ ହେଳେ
ସେହି ପାସୋରିଲେ ମୁହିଁ ନଗ୍ଗୁଡ଼ଇ
କହି ଦେଉଥାଏ ବଳେ ।। ୧୩୬ ।।

ସେହିମତେ ପୁଣି ଅନ୍ତର୍ଗତେ ଗୁଣି
ବୋଲୁଥାଇ କୃଷ୍ଣ ରାଧା
ମନସ୍ଥିର ଦେଖି ଚିତ୍ତ ହୁଏ ସୁଖୀ
ତେଣୁ ମୁଁ ତାଙ୍କ ଶରଧା ।। ୧୩୭ ।।

ଭକ୍ତଙ୍କ ମୁଖେ ମୁଁ ନିରନ୍ତରେ ଥାଏଁ
ଏମନ୍ତ ବୋଇଲୁ ଜାଣ
ସେ ଯେତେ କରଇ ମୁଁ ତେତେ ହୁଅଇ
ଏ କଥା ମୋର ପ୍ରମାଣ ।। ୧୩୮ ।।

ଘାନ କର୍ତ୍ତ କଲା ଏମନ୍ତ ବୋଲି ଯେ
ଭକ୍ତକୁ ବାଛିଲ ଯାହା
ମୁଁ ଯେବେ ତାହାକୁ ପ୍ରସନ୍ନ ନୋହିବ
ସେ କାହିଁ କହିବ ତାହା ।। ୧୩୯ ।।

ଭକ୍ତ ମୋ ଜୀବନ ବୋଲି କହିଛନ୍ତି
ଶ୍ରୀମୁଖେ ବଚନ ଦୃଢ଼
ତେଣୁକର ଆମ୍ଭେ ଆମ୍ଭର ମହିମା
କରୁଥାଇଁ ମାନବଢ଼ ।। ୧୪୦ ।।

ସେ ମୋତେ ଚହ୍ନିଲେ ମନରେ ଭେଦନଲେ
ଆମ୍ଭେ ତା ନ ପାରୁଁ ଘୁଞ୍ଚ
ବାହ୍ୟ ପ୍ରକାରରେ ଲୋକଙ୍କ ଲଜ୍ଜାକୁ
ଅନ୍ତର୍ଗତେ ଥାଉ ଜଡ଼ ।। ୧୪୧ ।।

ମୋର ଦ୍ରବ୍ୟ ନେଇ ଜଗତେ ବିକଇ
ତେଣେ ସେ ନ ପାଏ ହାନି
ସବୁ ବାଣିଜ୍ୟରେ ବେଉସା କରଇ
ମୋହର ମହିମା ଘେନି ।। ୧୪୨ ।।

ଯେଉଁ ଧନ ମୋର ବିଷୟରେ ପଡ଼ି
ବିମୁଖ ହୁଅଇ ଯେତେ
ନାନା କୋପଭରେ ତାପ କରିଲେ ବି
ଶରଧା ଲାଗଇ ମୋତେ ।। ୧୪୩ ।।

ମୋହର ଭକତ ମୋ ଗୁଣ ଜାଣଇ
ଅନ୍ୟ ଜାଣିବାକୁ ନାହିଁ
ଏକା ବଚନରେ ସନ୍ଦେହ ଗୁଡ଼ିଲା
ଅଧିକ କହିବି କାହିଁ ।। ୧୪୪ ।।

ଭକତ ଲକ୍ଷଣ ଦେବ ନାରାୟଣ
ଶ୍ରୀମୁଖେ କହିଲେ ଯେତେ
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
କବିଙ୍କ ମହିମା ଏତେ ।। ୧୪୫ ।।

ତୁମ୍ଭେମାନେ ଅବା କେମନ୍ତ ବାଞ୍ଛିଲ
ମୋତେ ଆହେ ଗୋପୀବୃନ୍ଦ
ଆମ୍ଭର ବିଶେଷ ଅଳପ ବିଦ୍ୟାଏ
କବିଙ୍କ ଶାସ୍ତ୍ରକୁ ନିନ୍ଦ ।। ୧୪୬ ।।

ଗୋପୀ ବୋଇଲେ ତା କେ ନିନ୍ଦା କରିବ
ପ୍ରସ୍ତାବେ କହିଲୁଁ ସିନା
ଆମ୍ଭେ ବୋଇଲେ କି ସେ ନାସ୍ତି ହୋଇବ
ଶ୍ରୀକୃଷ୍ଣ ପ୍ରଭୁ ଭଜନା ।। ୧୪୭ ।।

ଆମ୍ଭେ ମହାପାପୀ ଅଲକ୍ଷଣୀ ଗୋପୀ
କର୍ମରେ ଅରଜି ନାହୁଁ
ସୁଖ ଲଭ ଦ୍ରବ୍ୟ ମୁକତି ସମ୍ପଦ
ଖୋଜିଲେ ପାଇବୁ କାହୁଁ ।। ୧୪୮ ।।

କୋକିଳ ଯେମନ୍ତ ବାୟସ ବସାରେ
ଡିମ୍ବକୁ ଥୁଅଇ ଆଣି
ପବିତ୍ର ହୋଇଣ ଅପବିତ୍ର ହେଲା
ମୂଳ କୁଟୁମ୍ବ ନ ଜାଣି ।। ୧୪୯ ।।

ପିତା ବୀଜ ଧ୍ୱଂସି ମାତା ରଜ ନାଶି
ଯାହା ଆଶ୍ରାରେ ରହିଲା
ସେହିତ ତାହାକୁ ଶତ୍ରୁପଣ କଲା
କୌଣସି ଆଡ଼େ ନୋହିଲା ।। ୧୫୦ ।।

ସେହିମନ୍ତ ଆମ୍ଭ ପୂର୍ବର ଅର୍ଜିତ
କର୍ମଫଳ ହେଲା ବୀଜ
ବିରଜ କୁଳରେ ଜାତ ହୋଇ ଦୁଇ
କୂଳରୁ ଗୁଡ଼ିଲୁ ଲାଜ ।। ୧୫୧ ।।

ତାହାପରେ ଆସି ବେନକୁଳ ନାଶି
ତାହା ଆଶ୍ରାରେ ରହିଲୁଁ
ସେ ପ୍ରଭୁ ଆମ୍ଭଙ୍କୁ ଅନାଥ କରିଲେ
କୌଣସି ଆଡ଼େ ନୋହିଲୁଁ ।। ୧୫୨ ।।

ଭକତ ଲକ୍ଷଣ କହିଲ ଆମ୍ଭଙ୍କୁ
ତାହା ବା ଆମ୍ଭର କାହିଁ
ଆମ୍ଭେ ମହାପାପୀ ଗୋପପୁର ଗୋପୀ
ଗଣ୍ଡିର ବାସନା ନାହିଁ ॥ ୧୫୩ ॥

ଉଦ୍ଧବ ବୋଇଲେ ବାସନା ନ ଥିଲେ
କେମନ୍ତେ ଦେହ ବହିଲ
ଯୁବତୀ ଉପରେ ଗୋପନାଥ ହୋଇ
କୃଷ୍ଣଙ୍କ ଅଙ୍ଗ ଛୁଇଁଲ ॥ ୧୫୪ ॥

ପୂର୍ବର କରମ ଯେଣୁ ଏ ଜନମ
ତେଣୁ ଲଭିଲ ଏ ସୁଖ
ଯୋଗୀମାନେ ଯାହା ଭେଟ ନ ପାଆନ୍ତି
ତୁମ୍ଭେ ତାଙ୍କୁ ନେତ୍ରେ ଦେଖ ॥ ୧୫୫ ॥

ଗୋପୀଏ ବୋଇଲେ କେତେଦିନ ଆମ୍ଭେ
ଦେଖୁଥିଲୁ ଗୋପେ ବସି
ଏବେ କାହୁଁ ତାଙ୍କ ଦର୍ଶନ ପାଇବୁ
ନକଟେ ମନକୁ ତୋଷି ॥ ୧୫୬ ॥

ବରଜ ତରୁଣୀ ପ୍ରଭୁଙ୍କ ଗୁଣ ଗୁଣି
ଧରୁଛ ମନେ ଆନନ୍ଦ
ଉଦ୍ଧବ ଗୋପୀଏ ଶ୍ରୀକୃଷ୍ଣ କଥାରେ
ଲଗାଇ ଅଛନ୍ତି ଦ୍ୱନ୍ଦ୍ୱ ॥ ୧୫୭ ॥

ଏମନ୍ତ ସମୟେ କଥା ପଡ଼ୁ ପଡ଼ୁ
ରାଧିକା ମିଳିଲେ ଆସି
ଉଦ୍ଧବଙ୍କୁ ଗୃହିଁ ବଚନ କହିଲେ
ଗୋପୀଙ୍କ ମଧ୍ୟରେ ବସି ॥ ୧୫୮ ॥

ଭକ୍ତଙ୍କ ଉତ୍ତମ ଶୁଣହେ ଉଦ୍ଧବ
ବସ୍ତୁର ଆସିଛ କସ
ଅକ୍ରୂରକୁ ପେଷି କୃଷ୍ଣଙ୍କୁ ନେଇଛ
ଏବେ କ ନେବାକୁ ବସ ? ॥ ୧୫୯ ॥

ନନ୍ଦ ଯଶୋଦାନ୍କ ମାତା ବେନିଜନ
ଏହାଙ୍କୁ ପାଶରିଲେ ନାହିଁ
ଗୋପପୁର ଭୁଞ୍ଜି ପରଜାଙ୍କୁ ରଞ୍ଜି
ଆମ୍ଭଙ୍କୁ ଘଉଡ଼ ଦେଇ ।। ୧୬୦ ।।
ଉଦ୍ଧବ ବୋଇଲେ ମୋହ ପଟାନ୍ତର
ଯଧୀରେ କହିବା ବାଣୀ
ସାବଧାନ ହୋଇ ଶୁଣିମା ଗୋସାଇଁ
ଶ୍ରୀକୃଷ୍ଣଙ୍କ ପାଟରାଣୀ ।। ୧୬୧ ।।
କଥାର ପ୍ରସ୍ତବେ ମନଗୁରୁ ତାପେ
ପଟାନ୍ତର ହେଲ ଯାହା
ଠାକୁରଙ୍କ ଠାରୁ ଯେଉଁ ଆଜ୍ଞା ହେଲା
ମୋଠାରୁ ଶୁଣ ଗୋ ତାହା ।। ୧୬୨ ।।
ଜଗତ ଜୀବନ ଦୁଃଖି ଲୋକ ପ୍ରାଣ
ନନ୍ଦ ଯଶୋଦାଙ୍କ ଧନ
ସେ ଯେବେ ମଥୁରା କଟକେ ରହିଲେ
ତୁମ୍ଭଠାରେ ତାଙ୍କ ମନ ।। ୧୬୩ ।।
ଯୋଗାଧି ପୁରୁଷ ଯଶୋଦାଙ୍କ ଶିଷ
ଭକତ କରୁଣା ପାଇଁ
ଦୂତପଣେ ମୋତେ ପଠାଇ ଅଛନ୍ତି
ତୁମ୍ଭଙ୍କୁ ବୋଧିବା ପାଇଁ ।। ୧୬୪ ।।
ତୁମ୍ଭ ମନକଥା ହୃଦୟ ବାରତା
ଜାଣିଲେ କରୁଣା ସିନ୍ଧୁ
ମନ ବଚନରେ ସର୍ବଦା ରଞ୍ଜିଲେ
ତେଣୁ ତୁମ୍ଭେ ତାଙ୍କ ବନ୍ଧୁ ।। ୧୬୫ ।।
ଗୋପୀଏ କହିଲେ ଯେତେ କଥାମାନ
କହନ୍ତି ସାରଙ୍ଗ ପାଣି
ମହାପ୍ରଭୁ ବୋଲି କିଛି ନ ବୋଲିବା
ଆମ୍ଭେ ସବୁ ତାହା ଜାଣି ।। ୧୬୬ ।।

---

ପଟାନ୍ତର — ତୁଳନା

ଯାହାଲାଗି ଗୃହ କୁଟୁମ୍ବ ବାନ୍ଧବ
ଜାତି କୁଳକୁ ତେଜିଲୁଁ
ତାହାଙ୍କର ଦୟା ଏତେ କାଳେ ହେଲା
ଏବେ ମନରେ ପଡ଼ିଲୁଁ ।। ୧୬୭ ।।

ଯେଯେ ନାରାୟଣ ଜଗତ କାରଣ
ଜାଣନ୍ତି ହୃଦର ବ୍ୟଥା
ଭକତମାନଙ୍କୁ ଦୁଃଖ ଯେ ଦଅନ୍ତି
ଏ ତାଙ୍କ କେମନ୍ତ କଥା ।। ୧୬୮ ।।

ଯେଉଁ ଲୋକ ଯାକୁ ପରମ ଆହ୍ଲାଦେ
ଦୃଢ଼ ମନରେ ଧରନ୍ତି
ଭୋଜନ ବସନ ନ ଦେଲେ ତାହାର
ପ୍ରଭୁପଣ କି ହେଉଛି ।। ୧୬୯ ।।

ଯେଉଁ ଜଗନ୍ନାଥ ଦର୍ଶନେ ମୁକତି
ପ୍ରସନ୍ନେ କଲୁଷ ନାଶେ
ଆପଣା ଭୃତ୍ୟକୁ ଦୁଃଖ ଦେଲେ ନିଜ
ପ୍ରଭୁପଣ ବଡ଼ ଦିଶେ ।। ୧୭୦ ।।

ପ୍ରଭୁ ହେଲେ ସୁଖୀ ଭୃତ୍ୟ ହେଲେ ଦୁଃଖୀ
ଲୋକେ ତାହାକୁ ବାଛିବେ
ଏକଥା ତାହାକୁ ଲଜ୍ଜା ନ ହେବକି
ମନରେ ବିଚାର ତୁମ୍ଭେ ।। ୧୭୧ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ବ୍ରହ୍ମାଣ୍ଡ ଠାକୁର ହରି
ଭକତମାନଙ୍କୁ ତାରିବା ନିମନ୍ତେ
ଅଛନ୍ତି ଏମନ୍ତ କରି ।। ୧୭୨ ।।

ଗୋପୀଏ ବୋଇଲେ କେମନ୍ତେ ଜାଣିବା
ମନରେ ପ୍ରତ୍ୟୟ ନାହିଁ
ତୁମ୍ଭେ ଯେ ମହତ ଠାକୁରଙ୍କ ହିତ
ବସ୍ତାରି କହ ଗୋସାଇଁ ।। ୧୭୩ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାଥ
ପ୍ରଭୁ କହିଲନ୍ତି ଯଥା
ତୁମ୍ଭ ଆଗେ ନେଣୁ ପ୍ରକାଶ କରୁଛି
ସତ୍ୟ ଯୁଗର ସେ କଥା ॥ ୧୭୪ ॥

ହିରଣ୍ୟ ନାମରେ ଦନୁଜ ଜନ୍ମିଲା
ପୃଥିବୀକ ମହାଭାର
ତାହାର କୁଳରେ ସନ୍ତାନ ଉପୁଜି
ପ୍ରହ୍ଲାଦ ନାମରେ ବୀର ॥ ୧୭୫ ॥

ସେ ମହା ହିରଣ୍ୟ ଈଶ୍ୱରଙ୍କ ପାଦେ
ସେବାକଲେ ନିତ୍ୟେ ପଢ଼ି
ଶିବ ପୁରାଣକୁ ସର୍ବଦା ପଢ଼ଇ
ବିଷ୍ଣୁ ପୁରାଣକୁ ଛାଡ଼ି ॥ ୧୭୬ ॥

ଯେଣେଯାଏ ତେଣେ ଶ୍ରୀକୃଷ୍ଣଙ୍କ ନିନ୍ଦେ
ବିଷ୍ଣୁ ନାମେ ପାଏ ବ୍ୟଥା
ପୁତ୍ର ପ୍ରହ୍ଲାଦ ଯେଉଁ ଶାସ୍ତ୍ର ପଢ଼େ
ସେହି ଶିବଙ୍କର କଥା ॥ ୧୭୭ ॥

ଅନେକ କୁମର ଚଟଶାଳୀଠାରେ
ଗୁରୁଙ୍କ ସମ୍ମୁଖରେ ପୁଚ୍ଛି
ହରିହର ବେଦ ପୁରାଣ ମଧ୍ୟରେ
ମୁକତି କାହିଁରେ ଅଛି ॥ ୧୭୮ ॥

ଗୁରୁ ବୋଇଲେ ଯେ ଶିବ ପୁରାଣରେ
ମୁକତି ନାହିଁଟି ଜାଣ
ପୁଣ୍ୟମୟୀ ମୁକ୍ତି ଯେବେ ଲଭିପାରୁ
ପଢ଼ରେ କୃଷ୍ଣ ପୁରାଣ ॥ ୧୭୯ ॥

ଗୁରୁଙ୍କ ବାକ୍ୟରେ ସନ୍ତୁଷ୍ଟ ହୋଇଲେ
ହିରଣ୍ୟ ରାଜାର ପୁତ୍ର
ଶିବ ପୁରାଣକୁ ପରିତ୍ୟାଗ କରି
ପଢ଼ିଲେ ବିଷ୍ଣୁଙ୍କ ପାଠ ॥ ୧୮୦ ॥

ହାଣି ହିବସରେ ପରଶ୍ରମ କରି
ଘୋଷନ୍ତି ବିଷ୍ଣୁ ପୁରାଣ
ଷାଠିଏ ହିନରେ ଷଷ୍ଠ କୋଟି ଗ୍ରନ୍ଥ
କଣ୍ଠସ୍ଥ କଲେ ସେ ଜାଣ ॥ ୧୮୧ ॥

ହିନକେ ହିରଣ୍ୟ ପୁତ୍ରକୁ ଡାକଣ
ପଚାରିଲା ରେ 'କୁମର
କେତେହିନ ବାବୁ କ ପାଠ ପଢ଼ିଲୁ
ମୋ ଆଗେ କହ ସତ୍ବର ॥ ୧୮୨ ॥

ପିତାଙ୍କ ବଚନେ ପ୍ରହ୍ଲାଦ କୁମର
ପୁରାଣ କଲା ବ୍ୟାଖ୍ୟାନ
ଆହି ଅନ୍ତକରି ସେ ସବୁ ପଢ଼ିଲା
ଯେତେକ ବିଷ୍ଣୁ ପୁରାଣ ॥ ୧୮୩ ॥

ଶୁଣି ତା ଦନୁଜ ପୁତ୍ରମୁଖ ଚାହିଁ
କ୍ରୋଧରେ ଓଷ୍ଠ କାମୋଡ଼
କହିଲା କୁମର ନଷ୍ଟେ ଗଲୁ ନାଶ
ଶ୍ରୀକୃଷ୍ଣ ଚରିତ ପଢ଼ି ॥ ୧୮୪ ॥

ଶିବଙ୍କ ପୁରାଣ ପଢ଼ିବ କାରଣ
ଏ ପାଠ ପଢ଼ିଲେ ମରୁ
ଆମ୍ଭର ବଇରି ଦେବ ଚକ୍ରଧାରୀ
ତାହା ନାମ କପାଁ ଧରୁ ॥ ୧୮୫ ॥

ଯେବେ ଭୁହି ବାବୁ ଅକ୍ଷୟ ହୋଇବୁ
ଶିବ ନାମ ଦୃଢ଼ କର
ମର୍ତ୍ତ୍ୟ ମଣ୍ଡଳରେ ତୋତେ ମୁଁ ସ୍ଥାପିବି
ଶ୍ରୀକୃଷ୍ଣ ନାମ ନଧର ॥ ୧୮୬ ॥

ପିତାଙ୍କ ବଚନେ ପ୍ରହ୍ଲାଦ କହିଲେ
ଶୁଣ ହେ ବାପ ଗୋସାଇଁ
କୋଟି କୋଟି ବ୍ରହ୍ମା କୋଟି କୋଟି ଶିବ
ବିଷ୍ଣୁ ସଙ୍ଗେ ସରି ନୋହି ॥ ୧୮୭ ॥

କୋଟିଏ ବ୍ରହ୍ମାଣ୍ଡ ରୋମେ ଧରନ୍ତି
ତୁମ୍ଭ ଆଗେ କହୁଁ ଶୁଣ
ଆହ୍ମର ଯେତେକ ଦେବତା ଅଛନ୍ତି
ସିନ୍ଧୁ ଫେନ ପ୍ରାୟ ଜାଣ ॥ ୧୮୮ ॥

ଶ୍ୱେତ ପଦ୍ମ୍ମଡୋଳା ସଂସାରକୁ ଭେଳା
ରୂପେ ଜଗଜନ ମୋହେ
କୋଟିଏ ଈଶ୍ୱର ଯେଉଁ ପାଦତଳେ
ଭୃତ୍ୟପଣେ ସର୍ବ ଲୋଡ଼େ ॥ ୧୮୯ ॥

ଶୁଣିଣ ହିରଣ୍ୟ ଖଡ୍ଗ ଝମକାଇ
ପୁତ୍ରକୁ ବହିଲା ରୋଷ
କୁଳ ଦେବତାଙ୍କୁ ନିନ୍ଦା କଲୁ ବୋଲି
ଆକର୍ଷି ଧଇଲା କେଶ ॥ ୧୯୦ ॥

ପାର୍ଶ୍ୱସ୍ଥ ଦୂତଙ୍କୁ ଆହ୍ୱାନ କରଣ
ଆଜ୍ଞା ଦେଲା ନୃପରାଣ
ଏହିକ୍ଷଣି ମୋର ପୁତ୍ରକୁ ନେଇଣ
ବେନଖଣ୍ଡ କର ହାଣ ॥ ୧୯୧ ॥

ଶୁଣି ଦୂତମାନେ ଧରି ନେଇଗଲେ
ଆଜ୍ଞା ଲଙ୍ଘିବାକୁ ନାହିଁ
ପ୍ରହ୍ଲାଦ ମୁଣ୍ଡକୁ କାଟି ଦୂତମାନେ
ବାରତା କହିଲେ ଯାଇଁ ॥ ୧୯୨ ॥

ଏମନ୍ତ ସମୟେ ଅନ୍ତର୍ଯ୍ୟାମୀ ନାଥ
ଧ୍ୟାନରେ ଜାଣିଲେ ତାହା
ଭକ୍ତକୁ ବିପତ୍ତି ପଡ଼ିଲା ମାତ୍ରକେ
ସେଠାରେ ହୋଇଲେ ସାହା ॥ ୧୯୩ ॥

ଅନ୍ତରୀକ୍ଷେ ଯାଇଁ ଦେଲେ ଜୀବଦାନ
ଗଣ୍ଡିମୁଣ୍ଡ ଏକ କରି
ଗୃହକୁ ଯିବର ଯାଅ ହେ କୁମର
କହି ଅନ୍ତର୍ଦ୍ଧାନ ହରି ॥ ୧୯୪ ॥

ଶ୍ରୀକୃଷ୍ଣ ବଚନ ପ୍ରହ୍ଲାଦ ଶୁଣିଣ
ନିଜ ଗୃହକୁ ଆସିଲେ
କୋଟିଏ କନ୍ଦର୍ପ ମୂର୍ତ୍ତିଧର କରି
ପିତା ନିକଟେ ମିଳଲେ ॥ ୧୯୫ ॥

ଦେଖି ନୃପସାଇଁ କୋପଭର ହୋଇ
ହସ୍ତୀ ଦନ୍ତରେ ଚଗାଇ
ବଡ଼ଶୀ କଣ୍ଠାରେ ଥୋପ ପୂର୍ଣ୍ଣ କରି
ସମୁଦ୍ରେ ମେଲିଲା ନେଇ ॥ ୧୯୬ ॥

ସମୁଦ୍ର ଭିତରେ ପ୍ରହ୍ଲାଦ ବୀରକୁ
ରାଘବ ଗିଳିଲା ଯହୁଁ
ରାଘବ ବଇରି ରାଘବକୁ ମାରି
ଭକ୍ତକୁ ଆଣିଲେ ତହୁଁ ॥ ୧୯୭ ॥

ପୁଣିହିଁ କୁମର ପ୍ରହଲ୍ଲାଦ ବୀର
ମିଳିଲେ ପିତାଙ୍କ ପାଶ
ରାକ୍ଷସ ହିରଣ୍ୟ ସୁତକୁ ଚାହିଁଣ
ମନରେ ବଢ଼ିଲା ରୋଷ ॥ ୧୯୮ ॥

ହିତସର ଶୋଷେ ଭୋଜନାବକାଶେ
ସୁତକୁ ଘେନିଣ ଗଲା
ଭୋଜନ ଦ୍ରବ୍ୟରେ ପ୍ରହ୍ଲାଦ ବୀରକୁ
କାଳକୂଟ ବିଷ ଦେଲା । ୧୯୯ ॥

ଭୁଞ୍ଜି କରି ସୁତ ହେଲା ଅଚେତ
ଅଙ୍ଗରେ ଚେତନା ନାହିଁ
ଆଚମନ ମାରି ଢଳିଣ ପଡ଼ିଲା
କାଳକୂଟ ବିଷ ଖାଇ ॥ ୨୦୦ ॥

ଦେଖି ତା ଜନନୀ ଶୋକଭର ହୋଇ
କୋଳରେ ଧଇଲା ଆଣି
ନାନା ସୁତ ବୋଲି ରୋଦନ କଇଲା
ହିରଣ୍ୟ ରାଜାର ରାଣୀ ॥ ୨୦୧ ॥

ନଗର ମନୁଷ୍ୟ ସମସ୍ତେ ଧାଇଁଲେ
ଶୁଣିକରି ଠେଲାଠେଲି
ଅନ୍ତପୁର ମଧ୍ୟେ ଡକା ପଡ଼ିଗଲା
ପ୍ରହ୍ଲାଦ ମଲା ବୋଲି ।। ୨୦୨ ।।

ଏମନ୍ତ କାରଣ ଧ୍ୟାନେ ନାରାୟଣ
ଜାଣିବା ମାତ୍ରେ ତକ୍ଷଣ
ବିପ୍ର ରୂପ ଧରି ପ୍ରବେଶ ହୋଇଲେ
ଭକ୍ତଙ୍କ ଦୁଃଖ ଭଞ୍ଜନ ।। ୨୦୩ ।।

ପରସନ୍ନ ହୋଇ କହିଲେ ଗୋସାଇଁ
ମନରେ ନ କର ତାପ
ତୋପୁତ୍ର ମରଣ ଶୁଣି ମୁଁ ଆସିଲି
କେମନ୍ତେ ମଲୁରେ ବାପ ।। ୨୦୪ ।।

କୋଟି ସୁଧାକର ସମ ନୋହେ ତୋର
ଭାଲ ଚନ୍ଦନ ବିନ୍ଦୁକୁ
ଶତ୍ରୁ ହୋଇଥିଲେ ପ୍ରହରେ ଗୃହ୍ନିବ
ମୁଖ ମଣ୍ଡଳ ଇନ୍ଦୁକୁ ।। ୨୦୫ ।।

ପୁଣି ପ୍ରହ୍ଲାଦ ଜନନୀଙ୍କ ବୋଧ
ଦେଇ କହିଲେ ଗୋ ମାତା
ତୋର ପୁତ୍ର କଥା ଆମ୍ଭଙ୍କୁ ଲାଗଇ
ଛାଡ଼ ତୁ ମନରୁ ଚିନ୍ତା ।। ୨୦୬ ।।

ଯେବେ ବେଦବାକ୍ୟ ନଷ୍ଟେଥିବ ସତ୍ୟ
ବଞ୍ଚିବ ତୋହର ଶିଷ
ତୁମ୍ଭେମାନେ କେହି ଆତଙ୍କେ ନଭାଳ
ଆମ୍ଭେ ଝାଡ଼ିବା ସେ ବିଷ ।। ୨୦୭ ।।

ମନ୍ତ୍ରକୁ ଉଚ୍ଚାରି ତ୍ରୈଲୋକ୍ୟ ବିହାରୀ
କରରେ ଆଉଁସି ଦେଲେ
ଉଠଉଠ ବୋଲି ଫୁଲପାଣି ନେଇ
କୁମର ମୁଖେ ସିଞ୍ଚିଲେ ।। ୨୦୮ ।।

ପ୍ରହ୍ଲାଦ କୁମର ଲାଗି ପଦ୍ମକର
ଉଠିଲେ ଚେତନା ପାଇ
ଅନ୍ତର୍ଦ୍ଧାନ ହୋଇ ଅଖିଳ କରତା
ଗଲେ ନ ଦେଖିଲେ କେହି ॥ ୨୦୯ ॥

ଏହି ବିଷୟକୁ କିଛିକ୍ଷଣ ପରେ
ଜାଣିଲେ ହିରଣ୍ୟ ରାଜ
ପୁଣହିଁ ପୁତ୍ରକୁ ମାରିବା ନିମନ୍ତେ
ଉପାୟ କଲେ ଦନୁଜ ॥ ୨୧୦ ॥

ଅନ୍ଧାର ନିଶିରେ ଅଚେତ ନିଦ୍ରାରେ
ଶିର ଛେଦାଇ ମାରିଲା
ଟିକିକିରେ କୁଟାଇ ଶିଳରେ ବଟାଇ
ବ୍ୟଞ୍ଜନ କରି ଖାଇଲା ॥ ୨୧୧ ॥

ଦେଖି ତା ଜନନୀ ଶୋକଭର ହୋଇ
ନାରାୟଣଙ୍କୁ ସୁମରି
ପୁତ୍ରପୁତ୍ର ବୋଲି ରୋଦନ କରନ୍ତେ
ପ୍ରସନ୍ନ ହୋଇଲେ ହରି ॥ ୨୧୨ ॥

ବୋଇଲେ ଗୋ ମାତ ମରିନାହିଁ ସୁତ
ପରକୁ କିମ୍ପାଇଁ ନିନ୍ଦୁ
ଏହିଟି ତୋ ପୁତ୍ର ଆମ୍ଭ କୋଳେ ଅଛି
ବୃଥା କାହିଁପାଇଁ କାନ୍ଦୁ ॥ ୨୧୩ ॥

ପ୍ରହଲ୍ଲାଦ କର ଧରି ଚକ୍ରଧର
ଜନନୀ କୋଳରେ ଦେଲେ
ଏହିଟି ତୋ ପୁତ୍ର ରଖି ଘେନ ବୋଲି
ଅନ୍ତର୍ଦ୍ଧାନ ହୋଇଗଲେ ॥ ୨୧୪ ॥

ଏହି ସବୁ କଥା ଦେଖିଣ ହିରଣ୍ୟ
ଅତ୍ୟନ୍ତ କୁପିତ ହେଲା
ପୁତ୍ରକୁ ଗୃହରୁ କାଢ଼ି ଦିଅ ବୋଲି
ଭାରିଯାକୁ ଗାଳିଦେଲା ॥ ୨୧୫ ॥

ଅନେକ କହାଳ କରଣ ଦନୁଜ
ଅନ୍ତଃପୁରୁ ବାହୁଡ଼ିଲା
ଆରଦିନ ନିଶି ପ୍ରଭାତେ କୁମର
ପାଠ ପଢ଼ିବାକୁ ଗଲା ॥ ୨୧୬ ॥

ପୁଣିହିଁ ପୁତ୍ରକୁ ମାରିବା ନିମନ୍ତେ
ଖୋଜୁ ଅଛି ମହୀପାଳ
ବୁଲିବୁଲି ଆସି ମଣ୍ଡପେ ଦେଖିଲା
ଆକର୍ଷି ଧଇଲା ବାଳ ॥ ୨୧୭ ॥

ଧରି ନୃପବର ହୋଇ କୋପଭର
କମ୍ପୁଅଛି ପରଚଣ୍ଡ
କହିଲା ପାମର ଆଜ କାହିଁ ଯିବୁ
ଖଡ଼୍ଗରେ କାଟିବି ମୁଣ୍ଡ ॥ ୨୧୮ ॥

ଶିବନାମ ଛାଡ଼ି କୃଷ୍ଣନାମ ଧରୁ
ମୋର ବଚନ ନ ରଖୁ
କାହିଁଅଛି ତୋର ଦେବ ଚକ୍ରଧର
ଏତେବେଳେ ଆସି ରଖୁ ॥ ୨୧୯ ॥

କୁମର ବୋଇଲା ଆତଙ୍କ ଭଞ୍ଜନ
ମୋର ପ୍ରଭୁ ନାମ ହରି
ଯେଣିକି ଚାହିଁଲେ ତେଣେ ଦିଶୁଥାନ୍ତି
ଘଟେ ଘଟେ ଛନ୍ତି ପୁରି ॥ ୨୨୦ ॥

ବିଷ୍ଣୁ ମାୟାଧର ମହିମା ଅପାର
ତାହାଙ୍କୁ ଜାଣିବ କାହିଁ
ମନକଲେ ଏହି ସ୍ତମ୍ଭରେ ଅଛନ୍ତି
ଭକ୍ତଙ୍କୁ ରଖିବା ପାଇଁ ॥ ୨୨୧ ॥

ପୁତ୍ର ବୋଲ ଶୁଣି କୋପେ ନୃପମଣି
ପାଦେକ ମାଇଲା ଆସି
ନୃସିଂହ ମୂରତି ସ୍ତମ୍ଭରୁ ବାହାରି
ହିରଣ୍ୟକୁ ମାଡ଼ିବସି ॥ ୨୨୨ ॥

ବିକଟାଳ ରୂପ ଲହ ଲହ ଜିହ୍ୱା
ବୁଲାଇ ସାରଙ୍ଗ ପାଣି
ବାମକରେ ଧରି ଦନୁଜକୁ ଧରି
ଜାନୁରେ ପାଡିଲେ ଆଣି ॥ ୨୨୩ ॥
ପ୍ରଚଣ୍ଡ ବଦନ ଘୋର ଗରଜନ
କାଳାନଳ ପ୍ରାୟେ ଆଖି
ସ୍ୱର୍ଗ ଭୁବନ ଯେ କମ୍ପମାନ ହେଲା
ସେହି ମୂରତି କୁ ଦେଖି ॥ ୨୨୪ ॥
ବାଣସମ ତୀକ୍ଷ୍ଣ ଅଙ୍ଗୁଳି ନଖକୁ
ଦନୁଜ ଗର୍ଭରେ ଭରି
ମହାବିଷ୍ଣୁ ମୂର୍ତ୍ତି ଧରି ନରହରି
ହିରଣ୍ୟ ବକ୍ଷ ବିଦାରି ॥ ୨୨୫ ॥
ହୃଦୟୁ ବିଦାରି କଣ୍ଠମୂଳ ଯାଏ
ଅନାଇଲେ ଚଉବାହା
ଗର୍ଭର ଭିତରେ ରାମନାମ ଦୁଇ
ଗୋଚର ହୋଇଲେ ତାହା ॥ ୨୨୬ ॥
ତହୁଁ ପଦ୍ମମୁଖ ମନେ ହୋଇ ସୁଖ
କିଞ୍ଚିତେ ଶାନ୍ତ ହୋଇଲେ
ହିରଣ୍ୟ ଅନ୍ତ୍ରକୁ ବିଦାରି ଆନନ୍ଦେ
ଗଳାରେ ପଇତା କଲେ ॥ ୨୨୭ ॥
ତେବେହେଁ ମନରେ ଆଉ ଶାନ୍ତି ନାହିଁ
ବ୍ରହ୍ମାଣ୍ଡେ ପୂରିଛି କାୟା
ଶୁକ ସନକାଦି ବ୍ୟାସ ମହାମୁନି
ନ ଜାଣନ୍ତି ଯାର ମାୟା ॥ ୨୨୮ ॥
ସ୍ତୁତି କଲେ ଆସି ସକଳ ଦେବତା
ଲକ୍ଷ୍ମୀକି କୋଳରେ ଦେଇ
ନୃସିଂହ ମୂରତି ବିଶ୍ୱରୂପ ତେଜି
ଶାନ୍ତ ହୋଇଲେ ଗୋସାଇଁ ॥ ୨୨୯ ॥

---

ସାରଙ୍ଗ ପାଣି — ବିଷ୍ଣୁ ଭଗବାନ
( ସାରଙ୍ଗଧନୁ ଯାହାଙ୍କ ହାତରେ )

ପ୍ରଭୁଙ୍କୁ ଚାହିଁଣ ପ୍ରହ୍ଲାଦ କହୁଛି
ମୋହ ପିତା ମୁକ୍ତ ହେଉ
ସବୁଦିନେ ତୁମ୍ଭ ଜାନୁରେ ଥାଇଣ
ଶ୍ରୀମୁଖକୁ ଚାହିଁଥାଉ ।। ୨୩୦ ।।

ପ୍ରତିମା ଲେଖନ ଚିତ୍ରପଟ ଆଦି
ଆହୁରି ପାଷାଣ ଲେଖ
ତୁମ୍ଭେ ଯହିଁ ଥିବ ସେହି ଠାଇଁ ଥିବ
ଚାହୁଁ ଥିବ ପଦ୍ମମୁଖ ।। ୨୩୧ ।।

ଶ୍ରୀକୃଷ୍ଣ କହିଲେ ଯାହା ଅର୍ଜିଅଛି
ଅବଶ୍ୟ ଭୁଞ୍ଜିବ ତାହା
ତୋହର ପିତାର ମୁକତ ହୋଇଲା
ଅଧିକ କହିବା କାହା ।। ୨୩୨ ।।

ପୂର୍ବର ଲଗିଣ ଦାନବ ହିରଣ୍ୟ
ଅସମ୍ଭବ ପୁଣ୍ୟ ପାଇ
ଆଜହିଁ ପ୍ରଭୁଙ୍କ ଜାନୁରେ ପଡ଼ିଣ
ଶ୍ରୀମୁଖକୁ ଅଛି ଚାହିଁ ।। ୨୩୩ ।।

ସକଳ ଦେବତା ପ୍ରଭୁଙ୍କୁ କହିଣ
ଯେଯାହା ପୁରକୁ ଗଲେ
ଅନ୍ତର୍ଯ୍ୟାମୀ ନାଥ ପ୍ରହ୍ଲାଦକୁ ଘେନି
ବୈକୁଣ୍ଠରେ ବିଜେ କଲେ ।। ୨୩୪ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ହିରଣ୍ୟ ରାଜାର ସୂନୁ
ତାଙ୍କର ମହିମା ପୃଥିବୀରେ ଧନ୍ୟ
ଯେଣୁକରି ପ୍ରଭୁଭକ୍ତ ।। ୨୩୫ ।।

ପୂର୍ବର ପାପରୁ ଦନୁଜ କୁଳରେ
ଜନମ ସେ ଯେ ହୋଇଲେ
ନିଜ ବାସନାକୁ ଘେନିଣ ପ୍ରହ୍ଲାଦ
ବିଷ୍ଣୁ ପାଦେ ସେବାକଲେ ।। ୨୩୬ ।।

କୋଟି କୋଟି ବ୍ରତ କଲେ ପ୍ରହ୍ଲାଦ
ଭୋଜନ କରୁ ନକର
ଇନ୍ଦ୍ରିୟ ମାନଙ୍କୁ ନିରୋଧ କରିଲେ
ଏକାଦଶୀ ବ୍ରତଧର ॥ ୨୩୭ ॥
ମଧ୍ୟାହ୍ନ ସମୟେ ବିଶୁଦ୍ଧ ହୋଇଣ
ପ୍ରଭୁଙ୍କ ପାଶକୁ ଗଲେ
ପୂର୍ବ ମୁଖେ ବସି ଷୋଡ଼ଶ ମନ୍ତ୍ର
କୃଷ୍ଣମନ୍ତ୍ର ଜପକଲେ ॥ ୨୩୮ ॥
ଦୁଇକଙ୍କେ ବେନି ଦୀପ ଆରୋପଣ
କଲେ ବେନି ଦୀପ ଧେନ
ସ୍କନ୍ଧମୂଳେ ଦୁଇ ଦୀପକୁ ବସାଇ
ଦୀପେକ ଜାଳି ମୂର୍ଦ୍ଧନ ॥ ୨୩୯ ॥
ପୃଷ୍ଟିଗବ୍ୟ ଘୃତ ଦୀପଗୋଟା ସାତ
ପ୍ରଭୁଙ୍କ ସମ୍ମୁଖେ ଜାଳି
ରାମ ରଜନୀରେ ଜାଗ୍ରତ ହୋଇଣ
ଏକାଦଶୀ ବ୍ରତପାଳି ॥ ୨୪୦ ॥
ଅନେକ ପ୍ରକାରେ ବିନୟୀ ହୋଇଣ
ପଦ୍ମପାଦ ଧ୍ୟାନକଲେ
ଭକତ ବତ୍ସଳ ହୋଇଣ ହରି
ବର ମାଗ ଆଜ୍ଞା ଦେଲେ ॥ ୨୪୧ ॥
ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ
ଅନ୍ୟ ବରେ ନାହିଁ କାର୍ଯ୍ୟ
ପ୍ରତି ଜନ୍ମେ ତୁମ୍ଭ ପାଦପଦ୍ମ ସେବି
ହୋଇଥିବି ଦେବରାଜ ॥ ୨୪୨ ॥
ଶ୍ରୀକୃଷ୍ଣ ବୋଇଲେ ଅନେକ ପ୍ରକାରେ
ଆମ୍ଭଙ୍କୁ କଲୁ ତୁ ସେବା
ତେଣୁ କରି ତୋତେ ସ୍ୱର୍ଗପୁରେ ଆମ୍ଭେ
ଇନ୍ଦ୍ରପଦେ ଶାଢ଼ୀ ଦେବା ॥ ୨୪୩ ॥

---

ରାମରଜନୀ — ରମଣୀୟ ରଜନୀ

ଚରଣେ ଖଟିବେ ସକଳ ଦେବତା
ଲଭିବୁ ଅନେକ ଧଣ
ଶଚୀଙ୍କ ସଙ୍ଗରେ ଅଭିଷେକ ହୋଇ
ସୁରପତି ପଦେ ବସ ।। ୨୪୪ ।।

ଶ୍ରୀକୃଷ୍ଣ ବଚନେ ପ୍ରହ୍ଲାଦ ବୋଇଲେ
ଇନ୍ଦ୍ରପଦ ମୋର ନୋହୁ
ତୁମ୍ଭ ପାଦ ପଦ୍ମେ ସଦା ଲଗିଥିବ
ଏହିଆଜ୍ଞା ମୋତେ ଦେଉ ।। ୨୪୫ ।।

ଶ୍ରୀକୃଷ୍ଣ ବୋଇଲେ ଏବର କମିଁଇ
ନାସ୍ତିକଲ ପ୍ରହଲ୍ଲାଦ
ହୋଇଅଛୁ ସ୍ଥିର ପୂର୍ବରୁ ଆମ୍ଭର
ତୋତେ ଦେବା ଇନ୍ଦ୍ରପଦ ।। ୨୪୬ ।।

ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ପ୍ରହଲ୍ଲାଦ
ବେଗେ ସ୍ୱର୍ଗପୁର ଗଲେ
ଅନ୍ତଃପୁରେ ଇନ୍ଦ୍ର ଅଛନ୍ତି ଜାଣିଣ
ସିଂହାସନେ ବସେ କଲେ ।। ୨୪୭ ।।

ଦେଖି ଦେବ ଲୋକେ ହାସ୍ୟ କଲେ ତାଙ୍କୁ
ଇନ୍ଦ୍ରଙ୍କୁ କହିଲେ ଯାଇଁ
ମନୁଷ୍ୟ ଗୋଟାଏ ଆସ୍ଥାନେ ବସିଛି
ଶୁଣିବା ହେଉ ଗୋସାଇଁ ।। ୨୪୮ ।।

ଏମନ୍ତ ପୁରୁଷ ନଥିବ ସ୍ୱର୍ଗରେ
ପଟାନ୍ତର କସ ଦେବା
କୋଟିଏ କନ୍ଦର୍ପ ପ୍ରାୟେ ତାର ରୂପ
ନବୀନ ସୁନ୍ଦର ଯୁବା ।। ୨୪୯ ।।

ମଘବା କହିଲେ ଏତ ବିପରୀତ
ତପବଳେ ଅବା ବଳ
ମର୍ତ୍ତ୍ୟର ମାନବ ସ୍ୱର୍ଗକୁ ଆସିଲା
ହାବୁକା ମାରି ଘଉଡ଼ ।। ୨୫୦ ।।

---

ମଘବା — ଇନ୍ଦ୍ର

ସୁରପତି ବାଣୀ ଦେବଲୋକେ ଶୁଣି
ଆସିଲେ ତହୁଁ ବାହୁଡ଼
ବନ୍ଦିତ ନନ୍ଦନ ପ୍ରହ୍ଲାଦ ବୀରକୁ
ମେ ସ୍ଥାନରୁ ଦେଲେ ତଡ଼ ।। ୨୫୧ ।।

ସେଠାରୁ ଆସିଣ ବୀର ପ୍ରହ୍ଲାଦ
ପ୍ରଭୁଙ୍କୁ ଚାହିଁ କହିଲେ
ହେ ପ୍ରଭୋ ଆମ୍ଭଙ୍କୁ ସ୍ୱର୍ଗ ଦେବଲୋକେ
ଆସ୍ଥାନୁ ଘଉଡ଼ ଦେଲେ ।। ୨୫୨ ।।

ଆପଣଙ୍କ ଆଜ୍ଞା ଶିରରେ ଧରଣ
ସ୍ୱର୍ଗ ଭୁବନକୁ ଗଲି
ସଉଁବର ଦେଲ ସଫଳ ନୋହିଲା
ବୃଥାରେ ଗଞ୍ଜି ହୋଇଲି ।। ୨୫୩ ।।

ପ୍ରହ୍ଲାଦ ବାଣୀ ଶୁଣି ଚକ୍ରପାଣି
ଉତ୍ତର କରନ୍ତି ଚତ୍ତେ
ଆଜ ସେ ଦେବଙ୍କ ଗର୍ବକୁ ଗଞ୍ଜିବ
ଆପଣା ସେବକ ହିତେ ।। ୨୫୪ ।।

ଶୁଣହେ ପ୍ରହ୍ଲାଦ ଅପମାନ ଦେଲେ
ଭାବନା କିଛି ନ କର
ମୁହିଁ ଯାଇ ତାଙ୍କ ଗର୍ବକୁ ଗଞ୍ଜିବ
ମୋର ନାମ ମାୟାଧର ।। ୨୫୫ ।।

ଏମନ୍ତ ଉତ୍ତର କହିଲେ ଶ୍ରୀକୃଷ୍ଣ
କଥାଏ ମାଗିବି ତୋତେ
ତୋହର ଯେମନ୍ତ ଦେବାକୁ ଶରଧା
ସତ୍ୟ କରିଥାଅ ମୋତେ ।। ୨୫୬ ।।

ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହଇ
କି ସତ୍ୟ କରିବି ମୁହିଁ
ଶ୍ରୀକୃଷ୍ଣ ବୋଇଲେ ଅନ୍ୟ କାର୍ଯ୍ୟ ନାହିଁ
ଆମ୍ଭପାଦ ଥାଅ ଛୁଇଁ ।। ୨୫୭ ।।

ଶୁଣିଣ ବଚନ ପ୍ରଭୁ ପଦ୍ମପାଦେ
ଶିର ଲଗାଇ ଛୁଇଁଲେ
ଯାହା ଆଜ୍ଞାହେବ ତାହା ମୁଦ୍ଧେଁ ହେବ
ପ୍ରହ୍ଲାଦ ଏହା କହିଲେ ।। ୨୫୮ ।।

ଶ୍ରୀକୃଷ୍ଣ ବୋଇଲେ ଆମ୍ଭ ଆଜ୍ଞା ପାଇ
ଇନ୍ଦ୍ର ହୋଇବାକୁ ଗଲ
ଋଷି ଦେବତାଏ ଅର୍ଚ୍ଚନା ନକଲେ
ଆମ୍ଭଙ୍କୁ ନହେବ ଭଲ ।। ୨୫୯ ।।

ଦେବତାମାନେ ଯେ ହିଂସ୍ରକ ଅଟନ୍ତି
ଗୁଣ ନ ଜାଣିଲେ ତୋର
ଆମ୍ଭେ ନ ମାନଲେ କେ ତୋତେ ମାନିବ
ଶୁଣହେ ପ୍ରହ୍ଲାଦ ବୀର ।। ୨୬୦ ।।

ଏବେ ଚଳ ଯିବା ସ୍ୱର୍ଗପୁରେ ଥିବା
ଦେଖନ୍ତୁ ଦେବତା ଗଣ
ବେନି ଲୋଚନରେ ସର୍ବେ ଦେଖୁଥିବେ
ତୋତେ ଦେବୁ ଇନ୍ଦ୍ର ପଣ ।। ୨୬୧ ।।

ଆମ୍ଭେ ଯେତେବେଳେ ଆସନେ ବସାଇ
ଇନ୍ଦ୍ରପଦ ଦେବୁଁ ତୋତେ
ତେତେବେଳେ ଆମ୍ଭେ ପ୍ରଣାମ କରିବୁ
ଭୟ ନ କରିବୁ ଚିତ୍ତେ ।। ୨୬୨ ।।

ପ୍ରଭୁଙ୍କର ବାଣୀ ପ୍ରହଲ୍ଲାଦ ଶୁଣି
ଚକିତ ହୋଇ ରହିଲେ
ଜିହ୍ୱା କାମୁଡ଼ିଣ ଡରଡର ହୋଇ
ଶିରରେ ହସ୍ତ ମାଇଲେ ।। ୨୬୩ ।।

ରାମନାମ ଧରି ଗୋବିନ୍ଦ ସୁମରି
ଶିରରେ ଯୋଡ଼ିଲେ କର
ପ୍ରହ୍ଲାଦ ବୋଇଲେ ଇନ୍ଦ୍ରପଦେ ମୋର
କାର୍ଯ୍ୟ ନାହିଁ ଚକ୍ରଧର ।। ୨୬୪ ।।

ଅଶେଷ ବ୍ରହ୍ମାଣ୍ଡେ ଯେ ପ୍ରଭୁ ଠାକୁର
ସକଳ ଜୀବ କାରଣ
ସେହି ମୋତେ ଯେବେ ପ୍ରଣାମ କରିବେ
ଅବଶ୍ୟ ହେବ ମରଣ ॥ ୨୬୫ ॥

ଧିକ ମୋ ଜୀବନ ଜୀଇଁଥିବା ଗୁର
ପିତା ମାତା ବନ୍ଧୁ ଗଣ
ତୁମ୍ଭ ଶ୍ରୀମୁଖରୁ ଏହି ଆଜ୍ଞା ହେଲା
ପୋଡ଼ୁ ମୋ ଭକତ ପଣ ॥ ୨୬୬ ॥

ପ୍ରହଲ୍ଲାଦ ବାଣୀ ଶୁଣି ଚକ୍ରପାଣି
କହିଲେ କିପାଇଁ ଡର
ତେତେବେଳେ ତୁମ୍ଭେ ସତ୍ୟ କରିଅଛ
ଏବେ କିମ୍ପା ନାସ୍ତି କର ॥ ୨୬୭ ॥

ଆମ୍ଭ ପାଦ ଛୁଇଁ ସତ୍ୟ କରିଅଛ
ଏବେ ତ ନାସ୍ତି ନୋହିବ
ତୁମ୍ଭେ ଆମ୍ଭଠାରେ ଦ୍ରୋହପଣ କଲେ
ଅଳ୍ପଦିନେ ନାଶ ଯିବ ॥ ୨୬୮ ॥

ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି
ମୁହିଁଟି ସମସ୍ତ ତାତ
ମୋହୋର ନଥିଲେ ଦ୍ରବ୍ୟ ଅଛି କାହିଁ
ଶୁଣ ତୁ ହିରଣ୍ୟ ସୁତ ॥ ୨୬୯ ॥

ମୁହିଁ ମୋତେ ଦେଇ ମୁହିଁ ମୋତେ ପାଇ
ମୁହିଁ ମୋର ସୁଖେ ରହି
ମୁହିଁ ମୋହମାୟା ସଂସାରେ ପଡ଼ିଣ
ମୁହିଁ ଗର୍ଜ୍ଜି ହେଉଥାଇ ॥ ୨୭୦ ॥

ମୁହିଁ ମୋତେ ଦଣ୍ଡି ମୁହିଁ ମୋତେ ମଣ୍ଡି
ମୁହିଁ ମୋର ସୁଖେ ଭଲ
ମୁହିଁ ମୋ ବାନ୍ଧବ ମୋ ମଇତ୍ର ମୁହିଁ
ମୁହିଁ ମୋତେ ହୋଇ ଶଲ୍ୟ ॥ ୨୭୧ ॥

ସମସ୍ତଙ୍କ ଧନ ସମସ୍ତ ଜୀବନ
ସମସ୍ତ ବ୍ୟାପାର ମୂର୍ଦ୍ଧଁ
ତେଣୁକରି ତୋତେ ଉଲଟି ହୋଇବା
ଆମ୍ଭର ଭାବନା ପାଇଁ ॥ ୨୭୨ ॥

ତୋହ ମସ୍ତକରେ ଅମୃତ ନାମରେ
ଶ୍ରୀହରି ମଧୁର ଥିବ
ଆମ୍ଭେ ନମସ୍କାର ତହିଁକ କରିବୁ
ତୋତେ କାହିଁ ଦୋଷ ହେବ ॥ ୨୭୩ ॥

ଏବେ ଯେ ସ୍ୱର୍ଗରେ ଇନ୍ଦ୍ର ହୋଇଅଛୁ
ସେହି ଗର୍ଜି ହୋଇ ମରୁ
ଆମ୍ଭେ ନମସ୍କାର ଆମ୍ଭଙ୍କୁ ହୋଇବୁ
ତହିଁରେ କପାଇଁ ଡରୁ ॥ ୨୭୪ ॥

ଶୁଣି ପ୍ରହଲ୍ଲାଦ ହୋଇଣ ବିଷାଦ
ମନେ ମନେ ଶାନ୍ତ ହେଲେ
ଶ୍ରୀମୁଖ ବଚନ କେମନ୍ତେ ଭାଙ୍ଗିବେ
ଅଗତ୍ୟା ସ୍ୱୀକାର କଲେ ॥ ୨୭୫ ॥

ଭକତର ବାଣୀ ଶୁଣି ଚକ୍ରପାଣି
ସେହିକ୍ଷଣି ସଜହେଲେ
ପ୍ରହଲ୍ଲାଦ ସଙ୍ଗେ ଘେନିଣ ଶ୍ରୀକୃଷ୍ଣ
ଇନ୍ଦ୍ରପୁରେ ବିଜେ କଲେ ॥ ୨୭୬ ॥

ଦେଖି ଦେବଋଷି ସମସ୍ତେହେଁ ଆସି
ଦର୍ଶନ କରନ୍ତି ତହିଁ
ଶିରେ ହସ୍ତ ଦେଇ ଠିଆ ହୋଇଛନ୍ତି
ପ୍ରଭୁଙ୍କ ମୁଖକୁ ଚାହିଁ ॥ ୨୭୭ ॥

ବରୁଣ କୁବେର ଦଣ୍ଡଧର ପାଳେ
ସମସ୍ତେ ମଉନ ବ୍ରତି
କେହି କାହାକୁହିଁ କଥା ନ କହନ୍ତି
ଡରେଣ କଙ୍କର ମତି ॥ ୨୭୮ ॥

ଦେବତାମାନଙ୍କୁ ଦେଖି କୃପାସିନ୍ଧୁ
ନୃସିଂହ ଶାନ୍ତ ହେଲେ
ଦୁଇ ବାହୁରେନ ପ୍ରହ୍ଲାଦଙ୍କୁ ଧରି
ସିଂହାସନେ ବସାଇଲେ ॥ ୨୭୯ ॥
ବକୁଳ ଫୁଲରେ ଗୁନ୍ଥି ମାଳାମାନ
ପ୍ରହ୍ଲାଦ ଶିରରେ ଦେଲେ
ପଟନୀ ପାଖରେ ନବରତ୍ନ ଖଞ୍ଜି
ମନୋହର ବେଶ କଲେ ॥ ୨୮୦ ॥
ମୁକୁତା ଜାଲରେ ମାଣିକ୍ୟ ଖଞ୍ଜିଲେ
ଝଲମଲ ଦିଶୁଅଛି
ପ୍ରହ୍ଲାଦଙ୍କ କଣ୍ଠେ ମୁକୁତାର ମାଳା
ଦିବ୍ୟ ଶୋଭା ପାଉଅଛି ॥ ୨୮୧ ॥
ଶରୀରେ କସ୍ତୁରୀ ଚନ୍ଦନ ଲଗାଇ
ନିର୍ମାଣିଲେ ଜଗନ୍ନିତା
ପ୍ରହ୍ଲାଦ ମସ୍ତକ ଉପରେ ଲେଖିଲେ
ଶ୍ରୀହରି ମନ୍ଦର ଚିତା ॥ ୨୮୨ ॥
ଆସନ ଉପରେ ସୁବେଶ କରିଣ
ବସାଇଲେ ଚକ୍ରଧର
ଅଳପ ଦୂରକୁ ପଛଘୁଞ୍ଚା ଦେଇ
ଭକ୍ତକୁ ଯୋଡ଼ିଲେ କର ॥ ୨୮୩ ॥
ନମଃ ଇନ୍ଦ୍ର ବୋଲି ଶ୍ରୀମୁଖେ ଉଚ୍ଚାରି
ଠିଆ ହେଲେ ଶ୍ରୀବତ୍ସାଙ୍କ
ସକଳ ଦେବତା ପାଦରେ ପଡ଼ିଲେ
ପ୍ରହଲ୍ଲାଦ ମୁଖ ଚାହିଁ ॥ ୨୮୪ ॥
ପୁଣିହିଁ ଉଠିଣ ଶିରେ କରଯୋଡ଼
ସ୍ତବ କଲେ ଯେ ସାହାରେ
ଜୟ ଜୟ ଶଙ୍ଖ ଶବଦ ଶୁଭିଲା
ଅମର ବୈକୁଣ୍ଠ ପୁରେ ॥ ୨୮୫ ॥

---

ହରିମନ୍ଦର ଚିତା — ବୈଷ୍ଣବମାନେ ଏମନ୍ତ ଚିତା ଧାରଣ କରନ୍ତି ।

ଶଙ୍ଖ ଶବ୍ଦ ଶୁଣି ଶଚୀଙ୍କ ସଙ୍ଗରେ
ଅନ୍ତଃପୁରୁ ଇନ୍ଦ୍ର ଗଲେ
କାତର ମନରେ ଥରଥର ହୋଇ
ପ୍ରଭୁଙ୍କୁ ଦର୍ଶନ କଲେ ॥ ୨୮୬ ॥

ଶିରେ କରଯୋଡ଼ ବନପ୍ରୀ ହୋଇଲେ
ପ୍ରଭୁଙ୍କ ମୁଖକୁ ଚାହିଁ
ଅଶେଷ ବ୍ରହ୍ମାଣ୍ଡ ଠାକୁର ହୋଇଣ
ଅମାନ୍ତ କଲ ଗୋସାଇଁ ॥ ୨୮୭ ॥

ଅଷ୍ଟାଦଶ ଯୁଗ ଇନ୍ଦ୍ରପଦେ ଥିବ
ଶ୍ରୀମୁଖରେ ଆଜ୍ଞା ଦେଲ
କେଉଁ ଦୋଷ କଲ ବଚୃର ନ କରି
ନୂଆ ଇନ୍ଦ୍ର କପାଁ କଲ ॥ ୨୮୮ ॥

ସହସ୍ର ବରଷ ରଜନୀ ଦିବସ
ପୂଣ୍ୟକୁ କରିଛୁ ଖେଦ
ଅନେକ ଜନ୍ମମୁଁ ତୁମ୍ଭ ପାଦ ସେବି
ଲଭିଅଛୁ ଇନ୍ଦ୍ରପଦ ॥ ୨୮୯ ॥

କୋଟି କୋଟି ଯଜ୍ଞ କୋଟି କୋଟି ତପ
ଧର୍ମ ସାଧନକୁ କଲି
କବି ପରି ଗୁଣି ଶତ ଯୁଗଯାଏ
ତବ ମନ୍ତ୍ର ଉଚ୍ଚାରିଲି ॥ ୨୯୦ ॥

ତାହା ଅନ୍ତେ ପୁଣି ମନେ ମନେ ଗୁଣି
ଅନୁଭବ କଲି ଦୋଷ
ପଞ୍ଚଦଶ ଜନ୍ମ ପୁଣି ମୁଁ ସାଧିଲି
ବ୍ରହ୍ମଜ୍ଞାନ ଉପଦେଶ ॥ ୨୯୧ ॥

ସହସ୍ର ବରଷ ଅନ୍ନକୁ ନ ଭକ୍ଷି
ପବନ ଆହାର କଲି
ଲୁହାଚଣା ଖାଇ ଅଷ୍ଟମ ବରଷ
ଆହାରେ କାୟା ବହିଲି ॥ ୨୯୨ ॥

ତେତେବେଳେ ମୋତେ ପ୍ରସନ୍ନ ହୋଇଲେ
　　　　ମହାଘୋର ତପ ଦେଖି
ସୁରପତି ପଣେ ବର ଯାଚଦେଲେ
　　　　ଅପର ଯୁଗକୁ ଦେଖି ॥ ୨୯୩ ॥

ଶ୍ରୀମୁଖ ଆଜ୍ଞାରେ ବେନଯୁଗ ଯାଏ
　　　　ନିର୍ବିଘ୍ନରେ ଇନ୍ଦ୍ର ହେଲି
ଏ ଅବା ତୁମ୍ଭଙ୍କୁ କେଉଁ ସେବା କଲେ
　　　　ମୁହିଁ କ ସେବା ନକଲି ॥ ୨୯୪ ॥

ପ୍ରଭୁ କହିଲେ ମୋ ନାମ ପୂର୍ଣ୍ଣାନନ୍ଦ
　　　　ଘଟେ ଘଟେ ଅଛି ପୂରି
ଶାନ୍ତ ହୋଇ ଯେବେ ମୋ ନାମ ଧରିବ
　　　　ତାହାକୁ ପ୍ରସନ୍ନ ହରି ॥ ୨୯୫ ॥

ନିର୍ମଳ ମନରେ ଇନ୍ଦ୍ରିୟ ନିରୋଧି
　　　　କରୁଥାଅ ସଦା ସେବା
କଳି ଦିନାନ୍ତରେ ଭକ୍ତିଭାବ ଦେଖି
　　　　ସେ ପଦ ତୁମ୍ଭଙ୍କୁ ଦେବା ॥ ୨୯୬ ॥

ଇନ୍ଦ୍ର ବୋଇଲେ ମୁଁ ଏତେ ତପକରି
　　　　ଅଗନ୍ତିକ କମାଁ ସିଦ୍ଧ
କ୍ଷତି ହୋଇ କମାଁ ନିଫଳ ହୋଇବ
　　　　ଯୁଦ୍ଧରେ ପଛେ ମରିବ ॥ ୨୯୭ ॥

ଏ ଯେବେ ସ୍ୱର୍ଗରେ ସୁରପତି ହେବ
　　　　ସଂଗ୍ରାମ କରୁ ମୋ ଭୁଲେ
ସମରେ ମୋତେ ଜିଣି ଯେବେ ପାରେ
　　　　ଇନ୍ଦ୍ରପଦ ଘେନୁ ହେଲେ ॥ ୨୯୮ ॥

ଏମନ୍ତ କହିଣ ଶରାସନ ନେଇ
　　　　ନାରାଚ ହସ୍ତେ ଧଇଲେ
ପ୍ରଭୁଙ୍କ ସମ୍ମୁଖରେ ପ୍ରହ୍ଲାଦ ଶରକୁ
　　　　ଶଚୀନାଥ କୋପକଲେ ॥ ୨୯୯ ॥

ଦେବତାଙ୍କୁ ଚାହିଁ ଶ୍ରୀକୃଷ୍ଣ କହିଲେ
ମନୁ ଛାଡ଼ ତୁମ୍ଭେ ଶଙ୍କା
ଏକମୁଖ ହୋଇ ଇନ୍ଦ୍ର ଦେବତାଙ୍କୁ
ଦଉଡ଼ ମାର ହାବୁକା ॥ ୩୦୦ ॥

ପ୍ରଭୁଙ୍କର ବାଣୀ ଦେବତାଏ ଶୁଣି
କୋପକଲେ ଆଜ୍ଞାପାଇ
ଅନ୍ତଃପୁରେ ଇନ୍ଦ୍ର ପ୍ରବେଶ ହୋଇଣ
ଶଚୀଙ୍କି କହିଲେ ଯାଇଁ ॥ ୩୦୧ ॥

ହେ ସୁରସୁନ୍ଦରୀ ସାବଧାନ ହୋଇ
ଆମ୍ଭର କଥାକୁ ଶୁଣ
ଯଥୋଚିତ ତୁମ୍ଭ ଆଗେ ମୁଁ କହିବି
ପ୍ରଭୁଙ୍କର ଯେଉଁ ଗୁଣ ॥ ୩୦୨ ॥

ନୂଆ ଇନ୍ଦ୍ର କରି ମୋତେ କାଢ଼ି ଦେଲେ
ତୁମ୍ଭଙ୍କୁ କରିବେ ନାଶ
ମୋହଠାରେ ଯେବେ କାର୍ଯ୍ୟଅଛି ତୋର
ପଳାଇ ଯିବା ଗୋ ଆସ ॥ ୩୦୩ ॥

ଶଚୀ ଦେବୀ ଶୁଣି ମନେ ମନେ ଗୁଣି
କହିଲେ ହୋଇ ହରଷ
ତୁମ୍ଭ ସମ କୋଟି କୋଟି ଇନ୍ଦ୍ର ଗଲେ
ଆମ୍ଭର ହୋଇବ କଷ ॥ ୩୦୪ ॥

ଏକାଚକ୍ରଧର ଥିଲେ ସ୍ୱର୍ଗପୁର
ଆନକୁ ମୋ ଭୟ ନାହିଁ
ଲକ୍ଷଲକ୍ଷ ଇନ୍ଦ୍ର ଏହିପରି ଗଲେ
ନବ ଯୁବତୀ ମୁ ଥାଇ ॥ ୩୦୫ ॥

ଏହିରୂପେ ବେଳେ ଅମର ମଣ୍ଡଳେ
ନାରାୟଣ ଅବତାରେ
ମୁଁ ଥିଲି ଅଠାଶୀ ଲକ୍ଷ ଇନ୍ଦ୍ର ଗଲେ
ପଞ୍ଚାଶ ଯୁଗ ଭିତରେ ॥ ୩୦୬ ॥

ତେବେହେଁ ମୋହର ନବ ଯଉବନ
ବୃଥାରେ ନ ହେଲା ଭଲେ
କାଳପ୍ରାଏ ମୋତେ ସେକଥା ଲାଗୁଛି
କେତେ ସୁରପତି ଗଲେ ।। ୩୦୭ ।।

ଶଚୀଙ୍କର ବାଣୀ ଇନ୍ଦ୍ରଦେବ ଶୁଣି
ନଗ୍ନ ହୋଇ ଆସିଲେ
ପ୍ରଭୁଙ୍କ ଭୟରୁ ସ୍ୱର୍ଗେ ନରହିଲେ
କୁସୁମ ବନେ ଲୁଚିଲେ ।। ୩୦୮ ।।

ଏଥୁ ଅନନ୍ତରେ ସୁଧର୍ମା ସଭାରେ
ବ୍ରହ୍ମାଦଙ୍କ ଇନ୍ଦ୍ରପଣ
ଘନକୃଷ୍ଣ ଦାସ ସେପାଦେ ଶରଣ
ସାଧୁଜନମାନେ ଶୁଣ ।। ୩୦୯ ।।

———

# ଦ୍ୱିତୀୟ ଛାନ୍ଦ

ଆପଣେ ଶ୍ରୀହରି ଭକ୍ତନାମ ଧରି
ଇନ୍ଦ୍ରପଦେ ଶୋଭୀ ଦେଲେ
ଦେବତା ଋଷିଙ୍କି ସମର୍ପି ଦେଇଣ
ଅନ୍ତର୍ଦ୍ଧାନ ହୋଇଗଲେ ।। ୧ ।।
ତଦନ୍ତରେ ବୀର ପ୍ରହ୍ଲାଦ କୁମର
ସ୍ୱର୍ଗ ସମ୍ପଦକୁ ରସି
ଶଚୀଙ୍କି ଘେନିଣ ଅଭିଷେକ ହେଲେ
ଅମର ଆସ୍ଥାନେ ବସି ।। ୨ ।।
ଯଥାବିଧି କର୍ମ ଧର୍ମ ଆଚରଣ
ମହତ୍ତର ଇନ୍ଦ୍ର ପଣେ
ପୂର୍ବର ବାସନା ବଳେ ଭୋଗକଲେ
ଶ୍ରୀକୃଷ୍ଣଙ୍କ ସେବାଗୁଣେ ।। ୩ ।।
ଏଥୁ ଅନନ୍ତରେ ସୁରପତି ପୁରେ
ପ୍ରଭୁ ଦିନେ ବିଜେ କଲେ
ପଶା ଖେଳୁଛନ୍ତି ଶ୍ରୀକୃଷ୍ଣ ଦେଖିଲେ
ପ୍ରହ୍ଲାଦ ଶଚୀଙ୍କ ଭୁଲେ ।। ୪ ।।
ଛାମୁରେ ଗନ୍ଧର୍ବ ଖଟିଛନ୍ତି ସର୍ବ
ନୃତ୍ୟ ରସେ ଗୀତ ଗାଇ
ମହର୍ଷି ନାରଦ ବୀଣାଯନ୍ତ୍ର ଧରି
ନାଚନ୍ତି ଆନନ୍ଦ ହୋଇ ।। ୫ ।।
ରମ୍ଭା ମେନକାଦି ରମଣୀ ନାଚନ୍ତି
ପାଣ୍ଡବ ନୃତ୍ୟରେ ଖଟି
ଝିଞ୍ଜିରି କଂସାଳ ବାଜୁଅଛି ତାଳ
ନାଚନ୍ତି ଅମର ନଟୀ ।। ୬ ।।

ଏମନ୍ତ ସମୟେ ଦେବତାଙ୍କ ରାଜ
ପ୍ରବେଶ ହୋଇଲେ ଯାଇଁ
ଦେଖିଣ ସମସ୍ତେ ଶିରେ କର ଯୋଡ଼ି
ଗୋବିନ୍ଦ ମୁଖକୁ ଚାହିଁ ॥ ୭ ॥
କୁମର ପ୍ରହ୍ଲାଦ ପାଇ ଇନ୍ଦ୍ର ପଦ
ପଶାଖେଳେ ଅଛି ମନ
ଶଚୀ ସହିତରେ ପଶା ଖେଳୁଛନ୍ତି
ପ୍ରଭୁଙ୍କୁ ନାହିଁ ଚେତନ ॥ ୮ ॥
ଦେଖି ଚକ୍ରପାଣି ମନେ ମନେ ଗୁଣି
ବିସ୍ମରନ୍ତି ମହାବାହୁ
ମୋହର ଭକତ ମୋତେ ନ ଚହ୍ନିଲେ
କାହାକୁ କହିବ ଆଉ ॥ ୯ ॥
ମନରେ ଶ୍ରୀକୃଷ୍ଣ ଏମନ୍ତ ଭାଳିଣ
ନାରଦଙ୍କୁ ଚାହିଁ ପାଶ
ବୋଲେ ତୁମ୍ଭ ଆଗେ କଥାଏ କହିବା
ଶୁଣହେ ବ୍ରହ୍ମାଙ୍କ ଶିଷ ॥ ୧୦ ॥
ଆମ୍ଭ ଆଜ୍ଞାନେଇ ପ୍ରହ୍ଲାଦଙ୍କ ଠାରେ
ଶୀଘ୍ର ଜଣାଇବ ଯାଇଁ
ସମ୍ପଦ ପଟଳ ଚକ୍ଷୁରେ ପଡ଼ିଲା
ଆମ୍ଭଙ୍କୁ ଚହ୍ନିଲା ନାହିଁ ॥ ୧୧ ॥
ଶ୍ରମ କରି ଆସୁଁ ଆସନ ନଦେଲା
ମନରେ ହେଲା ବିଷାଦ
ପ୍ରହରେ ପର୍ଯ୍ୟନ୍ତ ଠିଆ ହେଲୁ ଆମ୍ଭେ
ବ୍ୟଥା କଲା ପଦ୍ମ ପାଦ ॥ ୧୨ ॥
ତୁମ୍ଭେ ଆମ୍ଭଭକ୍ତ ତୁମ୍ଭେ ପ୍ରାଣହିତ
କାହାକୁ ବୋଲିବା କଥ
ଏମନ୍ତ ବୋଲିଣ ଅମର ବୈକୁଣ୍ଠେ
ବିଜେକଲେ ଲକ୍ଷ୍ମୀଈଶ ॥ ୧୩ ॥

---

ପଟଳ — ସମୂହ ବା ମାୟା

ମହର୍ଷି ନାରଦ ପ୍ରଭୁବାଣୀ ଶୁଣି
ଇନ୍ଦ୍ରକୁ କହିଲେ ଯାଇଁ
ଇନ୍ଦ୍ର ସମ୍ପତ୍ତିରେ ମୋହିତ ହୋଇଣ
ପ୍ରଭୁଙ୍କୁ ଚହ୍ନିଲେ ନାହିଁ ।। ୧୪ ।।

ପ୍ରହର ପର୍ଯ୍ୟନ୍ତ ପ୍ରଭୁ ଠିଆହେଲେ
ଚନ୍ଦ୍ରପ୍ରାଦ କଲା ବ୍ୟଥା
ଯିବାବେଳେ ମୋତେ ପାଶକୁ ଡକାଇ
କହିଲେ ସକଳ କଥା ।। ୧୫ ।।

ନାରଦଙ୍କ ବାଣୀ ସୁରପତି ଶୁଣି
ମନେ ମନେ ହେଲେ ଭୀତ
ଓଷ୍ଠ କଣ୍ଠ ଜିହ୍ୱା ଶୁଷ୍କ ଶିର ଭ୍ରମି
ମୁଖରେ ପଡ଼ିଲା କାଳି ।। ୧୬ ।।

ଶ୍ରବଣ ଦେଶକୁ ପ୍ରହ୍ଲାଦ ଛୁଇଁଣ
ବିସ୍ମୟ ହୋଇ ରହିଲା
ଶ୍ରୀକୃଷ୍ଣଙ୍କଠାରେ ଅପରାଧ କଲି
ଧାତା ମୋତେ ବାମହେଲା ।। ୧୭ ।।

ଧୀକ ମୋ ଜୀବନ ନବ ଯଉବନ
ପିତାମାତା ପଞ୍ଚପ୍ରାଣ
ପୋଡ଼ୁ ଇନ୍ଦ୍ରପଦ ପୋଡ଼ୁ ମୋ ସମ୍ପଦ
ପୋଡ଼ୁ ମୋ ଭକତ ପଣ ।। ୧୮ ।।

ଇନ୍ଦ୍ର ପଦକୁ ମୁଁ ଭାଜନ ନୋହିଲି
ଆଉ କହାଁ ସ୍ୱର୍ଗେ ଥିବ
ପ୍ରଭୁଙ୍କ ପାଦରେ ଅପରାଧ କଲି
ଦେଶାନ୍ତରୀ ହୋଇଯିବ ।। ୧୯ ।।

ଏମନ୍ତ କହିଣ ଇନ୍ଦ୍ର ପ୍ରହଲ୍ଲାଦ
ଛାଡ଼ିଲେ ସ୍ୱର୍ଗର ଆଶ
କଷା କଉପୁମା ବିଭୂତି ଭୂଷଣ
ଧଇଲେ ସନ୍ୟାସୀ ବେଶ ।। ୨୦ ।।

ବସ୍ତ୍ର ପୁରାଣକୁ କାଖରେ ଯାକଣ
ନିଦଣ୍ଡ ଧରଣ କରେ
ତୁଳସୀ ମାଳାକୁ ହୃଦରେ ଲମ୍ବାଇ
ବାନ୍ଧଲେ ଜଟା ଶିରରେ ।। ୨୧ ।।

ଯଦ୍ଧ ବେଶ ଧରି ହୃଦରେ ବସ୍ତ୍ରୃଣ
ସେଠାରୁ କଲେ ଗମନ
ଏମନ୍ତ ଦେବତା କେଉଁଠାରେ ଛନ୍ତ
ଦୁଃଖୀ ଲୋକଙ୍କର ଧନ ।। ୨୨ ।।

ଭକ୍ତଙ୍କ ଜୀବନ ଯଶୋଦା ନନ୍ଦନ
ସେ ଯେବେ କଲେଣି ରୋଷ
ତାହାଙ୍କ ପାଖରେ ସେବାକଲେ ସିନା
ଖଣ୍ଡିବେ ମୋହର ଦୋଷ ।। ୨୩ ।।

ଏମନ୍ତ ବୋଲଣ ଇନ୍ଦ୍ର ପ୍ରହଲ୍ଲାଦ
ଆପଣା ହୃଦେ ଭାଳଲେ
ଶ୍ରୀକୃଷ୍ଣ ନାମ ଅନ୍ତର୍ଗତେ ଧରି
ବୈକୁଣ୍ଠେ ପ୍ରବେଶ ହେଲେ ।। ୨୪ ।।

ବେନଭାଇ ଜୟ ବିଜୟ ବୋଲଣ
ବୈକୁଣ୍ଠରେ ଦ୍ୱାରପାଳ
ତାହାଙ୍କ ଆଗରେ ପହଞ୍ଚଲେ ଯାଇଁ
ହିରଣ୍ୟ ରାଜ ଦୁଲାଳ ।। ୨୫ ।।

ଦ୍ୱାରଙ୍କି ଗୁହାଁଣ କହଲେ ବଚନ
ତୁମ୍ଭେ ଯାଅ ଶୀଘ୍ର ହୋଇ
ଆସିଛ୍ଛ ଗୋଟାଏ ଉଦାସୀ ପୁରୁଷ
ପ୍ରଭୁଠାରେ କହ ଯାଇଁ ।। ୨୬ ।।

ପ୍ରହ୍ଲାଦଙ୍କ ବାଣୀ ଦ୍ୱାରପାଳ ଶୁଣି
କହଲେ ଶୁଣ ଗୋସାଇଁ
ତୁମ୍ଭର କନାମ ଆମ୍ଭେ ତ ନ ଜାଣି
କ ବୋଲି କହବୁ ଯାଇଁ ।। ୨୭ ।।

ଆମ୍ଭ କଥା ଶୁଣି ପ୍ରଭୁ ଚକ୍ରପାଣି
ନ ଜାଣି କରିବେ କୋପ
ତେତେବେଳେ ଆମ୍ଭେ ଅନାଥ ହୋଇବୁ
ତୁମ୍ଭଙ୍କୁ ଲଗିବ ପାପ ।। ୨୮ ।।

ଦାଶଙ୍କ ବଚନେ ଇନ୍ଦ୍ର ପ୍ରହଲ୍ଲାଦ
ଲେଖନ ପତ୍ର ଧରିଲେ
ଶ୍ରୀକୃଷ୍ଣଙ୍କ ଠାରେ ବିନୟ କରିଣ
ଗୋଟିଏ ସ୍ତବ ରଚିଲେ ।। ୨୯ ।।

ଜୟ ଜୟ ଜୟ କମଳା ରମଣ
ସକଳ ସୃଷ୍ଟି କାରଣ
ନାଭିରୁ ବିରଞ୍ଚି ଜନମ ହୋଇଣ
ଅନ୍ତ ନ ପାଇଲେ ଜାଣ ।। ୩୦ ।।

ଘନଶ୍ୟାମ ମୂର୍ତ୍ତି ଲକ୍ଷ୍ମୀ ଦେବୀ ପତି
ଆର୍ତ୍ତଙ୍କ ଭଞ୍ଜନ ନାଥ
ପାଦରୁ ଜନମ ଗଙ୍ଗା ହୋଇଛନ୍ତି
ରବିଚନ୍ଦ୍ର ନେତ୍ରୁ ଜାତ ।। ୩୧ ।।

କଣ୍ଠତୁଁ ହେଲେ ସରସ୍ୱତୀ ଜନ୍ମ
ଧୈର୍ଯ୍ୟରୁ ମରୁତ ଜାତ
ତେଜରୁ ଅନଳ ଶାନ୍ତିରୁ ବରୁଣ
ହୋଇ ଅଛନ୍ତି ସମ୍ଭୂତ ।। ୩୨ ।।

ଦୁଃଖୀ ଲୋକଧନ ଜଗତ ଜୀବନ
ଆରତ ଭଞ୍ଜନ ବାନା
ଜଗତ ଜନଙ୍କ ନିସ୍ତାରଣ ନାଥ
ଅନାଥର ବନ୍ଧୁସେହ୍ନା ।। ୩୩ ।।

ହରବ୍ରହ୍ମା ଯାର ଚରଣେ କଙ୍କର
ନପାଆନ୍ତି ଅନ୍ତ ଲେଶ
ମୁଁ ଘୋର ପାମର ହୀନ ମୂଢ଼ମତି
ମହିମା କହିବି କିସ ।। ୩୪ ।।

ଜୟ ଜୟ ଜୟ ପରମ ଈଶ୍ବର
ଦେବତାମାନଙ୍କ ରାଜା
ଭକତର ଭେଳା ଶ୍ୱେତ ପଦ୍ମ ଡୋଳା
ମହାବାହୁ ଚତୁର୍ଭୁଜା ॥ ୩୫ ॥

ଜୟ ଆର୍ତ୍ତତ୍ରାଣ ଦୁଃଖ ନିବାରଣ
ତୁମ୍ଭେ ଅଟ ମୋ ଶରଣ
ଆଜ୍ଞା ହୋଇଲେ ମୁଁ ଦର୍ଶନ କରିବି
ଅଭୟ ପଦ୍ମ ଚରଣ ॥ ୩୬ ॥

ଏମନ୍ତେ ସ୍ତୁତିକ ରଚନା କରିଣ
ଦିବ୍ୟ କାଳରେ ଲେଖିଲେ
ପ୍ରହ୍ଲାଦ ଗୋଟିଏ ନମସ୍କାର କରି
ଦ୍ୱାରୀହାତେ ଲେଖା ଦେଲେ ॥ ୩୭ ॥

ଅନେକ ପ୍ରକାରେ ବିନୟୀ ହୋଇଣ
କହିଲେ ଭକତ ଭାବେ
ପ୍ରଭୁଙ୍କ ପାଶକୁ ସ୍ତବ ଲେଖିଦେଇ
ରହିଲେ ଆପଣା ଠାବେ ॥ ୩୮ ॥

ରତ୍ନ ପଲଙ୍କରେ ବିଜେ କରିଛନ୍ତି
ସତ୍ୟଭାମା ଚନ୍ଦ୍ରଧାରୀ
ଏମନ୍ତ ସମୟେ ପତ୍ର ନେଇଗଲା
ବିଜୟ ନାମରେ ଦ୍ୱାରୀ ॥ ୩୯ ॥

ପ୍ରଭୁଙ୍କୁ ଗୁହାରି କରିକୁ ଯୋଡ଼ିଣ
ଭୂମିଷ୍ଠ ପ୍ରଣାମ କରି
ଆପଣଠାକୁ ଉଦାସୀ ପୁରୁଷ
ପତ୍ର ଦେଇଛନ୍ତି ହରି ॥ ୪୦ ॥

ଶୁଣିଣ ଶ୍ରୀହରି କରେ ପତ୍ର ଧରି
ଶୀଘ୍ର ଶୀଘ୍ର ପଢ଼ିଗଲେ
ସ୍ତବକୁ ପଢ଼ିଣ ପ୍ରହ୍ଲାଦ ଆସିଛି
ମନେ ମନେ ଜ୍ଞାନ ହେଲେ ॥ ୪୧ ॥

ସତ୍ୟଭାମା ମୁଖ ଚାହିଁ ପଦ୍ମମୁଖ
ଆଜ୍ଞା ଦେଲେ ନାରାୟଣ
ସୁବର୍ଣ୍ଣ ଝରିରେ ନୀର ଘେନ ତୁଲ
ଧୋଇବା ଭକ୍ତ ଚରଣ ॥ ୪୨ ॥

ଶୁଣି ଠାକୁରାଣୀ ଗଙ୍ଗାଜଳ ଆଣି
କନକ ପାତ୍ରରେ ଭରି
ପ୍ରହ୍ଲାଦ ପାଦକୁ ଧୋଇବା ନିମନ୍ତେ
ବିଜେକଲେ କୃଷ୍ଣ ନାରୀ ॥ ୪୩ ॥

ଆଗେ ମହାପ୍ରଭୁ ପଛେ ସତ୍ୟଭାମା
ପ୍ରବେଶିଲେ ସିଂହଦ୍ୱାରେ
ଦେଖି ପ୍ରହ୍ଲାଦ ପାଦପଦ୍ମ ଧରି
ପ୍ରଣାମ କଲେ ଭୂମିରେ ॥ ୪୪ ॥

ଶ୍ରୀକୃଷ୍ଣ ବୋଇଲେ ଉଠଉଠ ଭକ୍ତ
କରୁଥାଅ ଶୋକ କେତେ
ଇନ୍ଦ୍ର ସମ୍ପତ୍ତିରୁ ବଳି ବର ଦେବା
ଯାହାଇଚ୍ଛା ମାଗ ମୋତେ ॥ ୪୫ ॥

ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ
କି ବର ମାଗିବି ମୁହିଁ
ଭକ୍ତକୁ ସମ୍ପଦ ପ୍ରଭୋ ଆଜ୍ଞା ନୋହୁ
ବର ଦିଅ ମୋତେ ଏହି ॥ ୪୬ ॥

ଇନ୍ଦ୍ର ସମ୍ପତ୍ତିରେ ମୋହିତ ହୋଇଣ
ତୁମ୍ଭଙ୍କୁ ଚିହ୍ନିଲ ନାହିଁ
ଦୁର୍ଲ୍ଲଭ ଭକ୍ତିକି ପ୍ରାର୍ଥନା କରୁଛି
ଶୁଣ ହେ କମଳା ସାଇଁ ॥ ୪୭ ॥

ଯେତେ ଭକ୍ତିଚିତ୍ତ ଶ୍ରୀ ଚରଣେ ସ୍ଥିତ
ସମସ୍ତେ ହୋଇବେ ଦୁଃଖୀ
ତୁମନାମ ସେବା ସମ୍ପଦ ହୋଇବ
ଯୋଷି ହେଉଥିବେ ସୁଖୀ ॥ ୪୮ ॥

ବିଷୟୁ ତେଜଣ ତୁମ୍ଭଙ୍କୁ ଭଜିଲେ
ଜନମ ସଫଳ ହେବ
ତେବେ ତ ଭକତେ ନିସ୍ତାର ପାଇବେ
ତୁମ୍ଭଙ୍କୁ ନିନ୍ଦା ନୋହିବ ॥ ୪୯ ॥

ପ୍ରହ୍ଲାଦଙ୍କ ବାଣୀ ଶୁଣି ଚକ୍ରପାଣି
ସନ୍ତୋଷେ କହିଲେ ଗୀର
ଅନ୍ୟ କିଛି ମୋତେ ପ୍ରକାଶ ନକର
ମାଗିଲ କପାଁ ଏ ବର ॥ ୫୦ ॥

ଏମନ୍ତ ବିଚାର କଲେ ଚକ୍ରଧର
ଭକ୍ତକୁ ନୋହିଲ ସୁଖ
ମୋତେ ଆଶ୍ରାକରି ଏ ମୋର ଭକତ
କେମନ୍ତେ ଲଭିବ ଦୁଃଖ ॥ ୫୧ ॥

ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ
ଶୁଣିବା ହେଉ ଗୋସାଇଁ
ପୁଣ୍ୟ ପରିଚୟେ ସୁପଥ ଲଭିବା
ସୁଖ ଅଛି ଅନ୍ୟେ କାହିଁ ॥ ୫୨ ॥

ସମସ୍ତ ଭକତ ହୋଇବେ ମୁକତ
ଆଜ୍ଞା ହେଉ ହୃଷୀକେଶ
ମୋହୋର ମାଗୁଣି ତୁମ୍ଭଙ୍କୁ ଏତିକ
ଅଧିକ କହିବ କିସ ॥ ୫୩ ॥

ପ୍ରହ୍ଲାଦଙ୍କ ବାଣୀ ଶୁଣି ଚକ୍ରପାଣି
ଆନନ୍ଦେ କହିଲେ କଥା
ଉଦ୍ଧବ କହିଲେ ଶୁଣ ଗୋପନାରୀ
ଭକତଙ୍କ ମୁକ୍ତି ଗାଥା ॥ ୫୪ ॥

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
କହିଲ ଯେଉଁ ବଚନ
ଆମ୍ଭେମାନେ ଶୁଣି ବିଚାର ମଣିଲୁ
ଏମନ୍ତ ପ୍ରଭୁଙ୍କ ଗୁଣ ॥ ୫୫ ॥

ପ୍ରହ୍ଲାଦ ବାଳକୁ ଯେତେବେଳେ ଥିଲା
ହିରଣ୍ୟ ଦୈତ୍ୟ ଆକର୍ଷି
କାହିଁପାଇଁ କୃଷ୍ଣ ପ୍ରକାଶ ହୋଇଲେ
ସ୍ତମ୍ଭର ମଧରେ ଆସି ।। ୫୬ ।।

ଭକ୍ତଙ୍କୁ ବିପତ୍ତି ପଡ଼ିବା ମାତ୍ରକେ
କାହିଁଥିଲେ ଚକ୍ରବାହା
ଯେତେବେଳେ ତାଙ୍କୁ କେ ଯାଇ କହିଲା
କେମନ୍ତେ ଜାଣିଲେ ତାହା ।। ୫୭ ।।

ସେଥିପାଇଁ ଆମ୍ଭମାନଙ୍କ ମନରେ
ବିଶ୍ୱାସ ତ ହେଉ ନାହିଁ
ଏହି କଥା ମାନ ସନ୍ଦେହ ଲାଗୁଛି
ବିଶେଷି କହ ଗୋସାଇଁ ।। ୫୮ ।।

ଉଦ୍ଧବ ବୋଇଲେ ନାମ ଭାବଗ୍ରାହୀ
ଭକ୍ତଙ୍କ ମନରେ ଥିଲେ
ଭକ୍ତ ମନ ସ୍ତମ୍ଭେ ପ୍ରବେଶ ହୁଅନ୍ତେ
ତହିଁ ଯାଇ ବିଜେକଲେ ।। ୫୯ ।।

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ଆମ୍ଭେ କି ଉପମା ଦେବା
ଏମନ୍ତ ପ୍ରଭୁଙ୍କୁ ମୂର୍ଖେ ନ ଜାଣନ୍ତି
ଅନ୍ୟଙ୍କୁ କରନ୍ତି ସେବା ।। ୬୦ ।।

ଭକ୍ତଙ୍କର ଦୁଃଖ ଦେଖି ପଦ୍ମମୁଖ
ବଡ଼ ଅନୁଗ୍ରହ କରି
କଶ୍ୟପ ସେବାରେ ହିରଣ୍ୟ ପୁତ୍ରକୁ
ଇନ୍ଦ୍ର ପଦ ଦେଲେ ହରି ।। ୬୧ ।।

ଉଦ୍ଧବ ବୋଇଲେ ତାହାଙ୍କ ମହିମା
ନଜାଣ କି ସବୁ ଗୋପୀ
ମନମଧ୍ୟେ ତାଙ୍କୁ ଭାବନା କଲେଟି
ଦୁଃଖରୁ ତରନ୍ତି ପାପୀ ।। ୬୨ ।।

ପ୍ରଭୁଙ୍କ ସେବକ ଅଟେ ବଡ଼ଲୋକ
ତା ସମ ନାହିଁ ମହୀରେ
ହର ବ୍ରହ୍ମା ଇନ୍ଦ୍ର ପଦକୁ ଲଭନ୍ତି
କ୍ଷଣକେ ତାଙ୍କ କୃପାରେ ।। ୭୩ ।।

ଭକ୍ତଙ୍କର ବନ୍ଧୁ କୃପାମୟ ସିନ୍ଧୁ
ହୃଦରେ ନଥାଏ ମାୟା
ଆପଣା ପଦକୁ ଭକ୍ତକୁ ଦିଅନ୍ତି
ପ୍ରଭୁଙ୍କ ଏମନ୍ତ ଦୟା ।। ୭୪ ।।

ଗୋପୀଏ ବୋଇଲେ କେମନ୍ତେ ଜାଣିବା
ଆମ୍ଭମାନେ ସ୍ଥିର ନାହିଁ
ଆପଣା ପଦକୁ କେଉଁ ଭକତକୁ
ଦେଇଛନ୍ତି ଭାବଗ୍ରାହୀ ।। ୭୫ ।।

ଏକଥା ଶୁଣିଣ ବଚନ ମଣିଣ
ସନ୍ଦେହ ଲାଗିଲା ଚିତ୍ତେ
ତୁମ୍ଭଠାରୁ ଯେବେ ସେକଥା ଶୁଣିବୁଁ
ତେବେ ସିନା ଯିବୁଁ ପ୍ରତେ ।। ୭୬ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ଏ ମହା ଗୁପତ ପଦ
ନିଶ୍ଚଳ କରଣ ମନରେ ରଖିଲେ
ନାଶଇ ଜନ୍ମର ଖେଦ ।। ୭୭ ।।

ପାପକୁ ସେ ସାଟ ବୈକୁଣ୍ଠକୁ ବାଟ
ବିଷ୍ଣୁର ଦ୍ରବ୍ୟ ଭାରତ
କହୁଅଛି ତାହା ତୁମ୍ଭ ଅଗ୍ରତରେ
ଶୁଣି ଲଭିବ ମୁକତ ।। ୭୮ ।।

ସଙ୍କର୍ଷଣ ନାମେ ଏକ ଦ୍ୱିଜବର
ମର୍ତ୍ତ୍ୟ ମଣ୍ଡଳରେ ଜାତ
ବିଷ୍ଣୁ ସେବାକରି ସେପଦ ଲଭିଲେ
ଶୁଣହୋ ତାଙ୍କ ଚରିତ ।। ୭୯ ।।

ତାହାଙ୍କ ମହିମା ଯେତେକ **ବର୍ଣ୍ଣି**ବା
କହିଲେ ନସରେ ଜାଣ
ଜନ୍ମିବା ମାତ୍ରକେ ପିତା ମାତା ମଲେ
ଏମନ୍ତ ପାପୀ ବ୍ରାହ୍ମଣ ।। ୭୦ ।।

ସେ ଜନ୍ମ କାଳରୁ ଭିକ୍ଷା କରି ବଞ୍ଚେ
ସମସ୍ତେ କରନ୍ତି ସ୍ନେହ
ପ୍ରତିଦିନ ଦ୍ୱିଜ ଦ୍ୱିତୀ ମୂର୍ତ୍ତି ଧରେ
ବର୍ଦ୍ଧିତ ହୋଇଲା ଦେହ ।। ୭୧ ।।

ଏହିପରି କିଛି ଦିନ ଗତ ହେଲା
କୁମାର ଦ୍ୱିଜ ବଢ଼ିଲା
ବଡ଼ ଦୁଷ୍ଟ ଅଟେ ତାହାର ସ୍ୱଭାବ
କିଛି ବିଦ୍ୟା ନ ପଢ଼ିଲା ।। ୭୨ ।।

ସମସ୍ତଙ୍କ ଗୃହେ ଭକ୍ଷଇ ଅନ୍ନକୁ
ପାପକୁ ନଥାଏ ଖିତ
ମିଛ ମାୟା ହେନ ପ୍ରଗୃର କରଇ
କହିବା କେତେ ଅମିତ ।। **୭୩** ।।

ପଶୁ ପ୍ରାୟେ ହୋଇ ବୁଲେ ଏଣେ ତେଣେ
ସମୟ କରେ କ୍ଷେପଣ
ଅଭ୍ୟାଗତ ହୋଇ ନିଜ ପତ୍ନୀ ନାହିଁ
ପର ସ୍ତ୍ରୀ କରେ ଗମନ ।। ୭୪ ।।

ପୁରାଣକୁ ନିନ୍ଦେ ଦେବତା ନବନ୍ଦେ
ନାସ୍ତିକ ଅଟେ ବ୍ରାହ୍ମଣ
ମହାପାପୀ ହୋଇ ଚରମ କାଳକୁ
ବେଶ୍ୟାଘରେ ଗଲା ପ୍ରାଣ ।। ୭୫ ।।

ସେହି ବସ୍ତୁନାମ୍ନୀ ପରମା ସୁନ୍ଦରୀ
ବସ୍ତୁରେ ତାର ଭକତ
ପ୍ରଭୁଙ୍କର ପାଦେ ମନଜ୍ଞାନ ଦେଇ
ଜପଧ୍ୟାନ କରେ ନିତ ।। ୭୬ ।।

ସେ ବେଶ୍ୟା ଏମନ୍ତ ମନେ ବିଚାରିଲା
କବୁଦ୍ଧି କରିବ ଆଉ
ମୋର ଘରେ ବିପ୍ର ପ୍ରାଣ ହରାଇଲା
ମୋ ଯୋଗୁଁ ମୁକତି ପାଉ ॥ ୭୭ ॥

ମଦନା ବେଶ୍ୟା ଯେ ଏମନ୍ତ ଭାବିଣ
ତିଳକ ଘେନିଲା କରେ
ଶ୍ରୀହରି ମନ୍ଦର ନାମରେ ତିଳକ
କାଟିଲା ବ୍ରାହ୍ମଣ ଶିରେ ॥ ୭୮ ॥

ସ୍ୱଭାବରେ ଦ୍ୱିଜ କୁଳେ ଜନ୍ମ ହୋଇ
ବେଶ୍ୟା ଗୃହେ ଗଲା ନାଶ
ମହାପାପୀ ବିପ୍ର ଯମଦୂତେ ଜାଣି
କରେ ଘେନିଛନ୍ତି ଫାଶ ॥ ୭୯ ॥

କେହି ବୋଲୁଛନ୍ତି ବ୍ରାହ୍ମଣକୁ ଧରି
ବେକରେ ଦିଅ ଦଉଡ଼ି
କେହି କହୁଛନ୍ତି ବୃକ୍ଷମୂଳେ ବାନ୍ଧି
ପିଟିବା ଲୁହାର ବାଡ଼ି ॥ ୮୦ ॥

କେହି ବୋଲୁଛନ୍ତି ବିପ୍ରବେଶ ଧରି
ଅଗ୍ନିପଥେ ଘୋଷରାଅ
କେହି ଭାଷୁଛନ୍ତି ତପ୍ତ ବୈତରଣୀ
ନଦୀରେ ନେଇ ବୁଡ଼ାଅ ॥ ୮୧ ॥

ଏମନ୍ତ ବୋଲିଣ ଯେ ଯାହା ମତରେ
ପ୍ରତିଜ୍ଞା କରନ୍ତି ଦୂତେ
ଶ୍ରୀହରି ମନ୍ଦର ତିଳକ ଦେଖିଣ
ଭୟହେଲା ତାଙ୍କ ଚିତ୍ତେ ॥ ୮୨ ॥

ଯେତେବେଳେ ବେଶ୍ୟା ଦ୍ୱିଜବର ଶିରେ
ତିଳକ କାଟିଲା ଆଣି
ବିଷ୍ଣୁ ଦୂତମାନେ ବ୍ରାହ୍ମଣକୁ ଆସି
ବେଢ଼ିଲେକ ସେହିକ୍ଷଣି ॥ ୮୩ ॥

ଯମର ଦୂତଙ୍କୁ ଦେଖିଣ କହିଲେ
ଶ୍ରୀକୃଷ୍ଣଙ୍କ ଦୂତେ ଯାଇ
ଆମ୍ଭର ସେବକ ନେବାକୁ ଆସିଛ
ତୁମ୍ଭେମାନେ କାହିଁପାଇଁ ।। ୮୪ ।।

ବୈଷ୍ଣବ ଲକ୍ଷଣ ପ୍ରତ୍ୟକ୍ଷେ ଦେଖୁଛ
ଆମ୍ଭ ପ୍ରଭୁଙ୍କର ଦାସ
ଏହାକୁ କେମନ୍ତେ ନେବାପାଇଁ ତୁମ୍ଭେ
କରେ ଘେନିଅଛ ପାଶ ।। ୮୫ ।।

ଭୟ ତାର ନାହିଁ ସେହି ଜନ୍ତୁରାଜା
ନାହିଁକି ପ୍ରତିଜ୍ଞା ଶୁଣି
ଆମ୍ଭ ଭକ୍ତଠାକୁ ତୁମ୍ଭକୁ ପେଷିଛି
ନିଧନ ହୋଇବ ପୁଣି ।। ୮୬ ।।

ତୁମ୍ଭମାନଙ୍କର ଏମନ୍ତ ସାହସ
ନେବାକୁ ହୋଇଛ ସଜ
ବେତ ମାଡ଼ ଖାଇ ସମସ୍ତେ ମରିବ
ନଗଲେ ଏଠାରୁ ଆଜ ।। ୮୭ ।।

ଦୃଢ଼ତର ବାଣୀ ତାଙ୍କଠାରୁ ଶୁଣି
ବୋଲନ୍ତି ଯମର ଦାସ
ପ୍ରଭୁ ଆଜ୍ଞାପାଇ ନେବାକୁ ଆସିଛୁଁ
ଆମ୍ଭ ଅପରାଧ କିସ ।। ୮୮ ।।

ବିଷ୍ଣୁ ଦୂତମାନେ ତୁମ୍ଭେ କି ନଜାଣ
ଆମ୍ଭେ ବା କହିବୁ କିସ
ଏହି ବ୍ରାହ୍ମଣ ଅଟଇ ମହାପାପୀ
ବେଶ୍ୟାଘରେ ଗଲାନାଶ ।। ୮୯ ।।

ବିଷ୍ଣୁ ଦୂତ ବୋଲେ ଯେତେ ପାପ କଲା
ସର୍ବ ହୋଇଅଛି କ୍ଷୟ
ଶ୍ରୀହରି ମନ୍ଦିର ଲଲାଟରେ ଦେଖି
କିପାଇଁ ନକଲ ଭୟ ।। ୯୦ ।।

ଯମଦୂତ ବୋଲେ ଶୁଣିମା ଗୋସାଇଁ
ଆମ୍ଭେ ତାକୁ ଉପୁକର
ସେ ରଡ଼ା ନଥିଲେ କହିଁ। ପଡ଼ଥାନ୍ତା
ନଅନ୍ତୁଣି ବାଳଧର ।। ୯୧ ।।

ବିପ୍ରକୁ ପାଶରେ ବନ୍ଧନ କରଣ
ଯାଆନ୍ତୁଣି ଶୀଘ୍ର ହୋଇ
ଅନେକ ପ୍ରକାରେ ଦଣ୍ଡ ଦେଇଥାନ୍ତୁ
ରାଜାଙ୍କ ସମ୍ମୁଖରେ ନେଇ ।। ୯୨ ।।

ଏମନ୍ତ ବଚନ ବିଷ୍ଣୁ ଦୂତ ଶୁଣି
କହିଲେ ଯମସ୍ତେ ଯାଅ
ଆମ୍ଭର ଭକ୍ତକୁ ଆମ୍ଭେ ନେଉଁଅଛୁଁ
ତୁମ୍ଭ ରାଜା ଆଗେକହ ।। ୯୩ ।।

ହରଷ ହୋଇଣ ଯମ କଙ୍କରଙ୍କୁ
ବିଷ୍ଣୁ ଦୂତେ ଆଜ୍ଞା ଦେଲେ
ପୁଷ୍ପକ ରଥରେ ବିପ୍ରକୁ ବସାଇ
ବୈକୁଣ୍ଠ ପୁରକୁ ନେଲେ ।। ୯୪ ।।

ପ୍ରଭୁଙ୍କ ସେବକ ଯେନ ବିଷ୍ଣୁ ଦୂତ
ମିଳିଲେ ବୈକୁଣ୍ଠ ପୁରେ
ହରି ଶବଦରେ ସେ ପୁର କମ୍ପୁଛି
ଶୁଣିଲା ବିପ୍ର କର୍ଣ୍ଣରେ ।। ୯୫ ।।

ନିରାଶ ହୋଇଣ ଯମଦୂତେ ଯାଇଁ
ଜଣାନ୍ତି ରାଜାଙ୍କ ପାଶ
ବୋଲନ୍ତି ହେ ପ୍ରଭୋ ଅଦ୍ୟ ରଜନୀରେ
ପାପୀ ବିପ୍ର ଗଲା ନାଶ ।। ୯୬ ।।

ବାରତା ପାଇଣ ଆମ୍ଭେମାନେ ଯାଇ
ବେଢ଼ିଣ ବସିଲୁ ଯେବେ
ବିଷ୍ଣୁ ଦୂତେ ଆସି ବଳେ ଘେନଗଲେ
କି ଆଜ୍ଞା ହେଉଛି ଏବେ ।। ୯୭ ।।

ଆପଣା ଦୂତକୁ କହିଲେ ରାଜନ
ଯେଉଁ ବିପ୍ର ଆଜ ମଲା
ଶିରଠାରୁ ତାର ଚରଣ ପର୍ଯ୍ୟନ୍ତ
ଶରୀରେ କଚହ୍ନ ଥିଲା ॥ ୯୮ ॥

ଦୂତେ କହୁଛନ୍ତି ଶୁଣନ୍ତେ ରାଜନ
ଆଉ ନ ଦେଖିଲୁ କିଛି
ଶ୍ରୀହରି ମନ୍ଦିର ନାମେ ଏକ ଚିତା
ଲଲାଟ ପଟରେ ଅଛି ॥ ୯୯ ॥

ଯମ କହିଲେ ସେ ଚିତା ନଥିଲେ
ଅବଶ୍ୟ ଯୁଦ୍ଧ କରନ୍ତୁ
ଶ୍ରୀକୃଷ୍ଣଙ୍କ ଭକ୍ତ ଅଟନ୍ତି ସେମାନେ
ନୋହିଲେ କି ନ ଆଣନ୍ତୁ ॥ ୧୦୦ ॥

ଶ୍ରୀହରି ମନ୍ଦିର ତୁଳସୀର ମାଳା
ଯାହା ଶରୀରେ ପ୍ରମାଣ
ତାଙ୍କଠାରେ ତୁମ୍ଭ ଅଧିକାର ନାହିଁ
ଆମ୍ଭଠାରୁ ତାହା ଶୁଣ ॥ ୧୦୧ ॥

ଆପଣା ଦୂତକୁ ପ୍ରବୋଧିଣ ଯମ
ଅନ୍ତଃପୁରେ ବିଜେ କଲେ
ବିପ୍ରକୁ ଘେନିଣ ବିଷ୍ଣୁ ଦୂତେ ଏଣେ
ପ୍ରଭୁଙ୍କ ଆଗେ ମିଳିଲେ ॥ ୧୦୨ ॥

ସମ୍ମୁଖରେ ଯାଇ ପ୍ରଣାମ କରିଣ
ବୋଲନ୍ତି ଶୁଣ ଅଚ୍ୟୁତ
ଆମ୍ଭର ଭକ୍ତକୁ ନଷ୍ଟେ ନେବାପାଇଁ
ଯମ ପେଷିଥିଲା ଦୂତ ॥ ୧୦୩ ॥

ବଡ଼ ଦୁଷ୍ଟମତ ଅଟେ ଜନ୍ତୁପତ
ଏଡ଼େ ଭରସା ତାହାର
ପାପପୁଣ୍ୟ କିଛି ବିଚାର ନକରି
ଭକ୍ତକୁ ନେଉଛି ଧରି ॥ ୧୦୪ ॥

---

ଜନ୍ତୁପତ — ଯମ

ଚରଣରେ ବେଢ଼ି ପିଟି ଲୁହାବାଢ଼ି
କେତେ ଯେ ଦୁଃଖ ଦଅନ୍ତି
ଆମ୍ଭେଯାଇଁ ବଳେ ଛଡ଼ାଇ ଆଣିଲୁଁ
ନୋହିଲେ ନଷ୍ଟେ କଅନ୍ତି ॥ ୧୦୫ ॥

ଦୂତଙ୍କର ବାଣୀ ଶୁଣି ଚକ୍ରପାଣି
ଆଜ୍ଞା ଦେଲେ ଦାମୋଦର
କାହିଁଅଛି ବିପ୍ର ତାକୁ ଘେନିଆସ
ଦେଖିବାକୁ ଶ୍ରଦ୍ଧା ମୋର ॥ ୧୦୬ ॥

ପ୍ରଭୁଙ୍କର ବାଣୀ ଦୂତମାନେ ଶୁଣି
ବ୍ରାହ୍ମଣ ଠାରେ ମିଳିଲେ
କହିଲେ ତୋହର ପାପ ନାଶଗଲା
ଲକ୍ଷ୍ମୀପତି ଦୟାକଲେ ॥ ୧୦୭ ॥

ପୂର୍ବର ଯେ କଷ୍ଟ ହେଲା ତୋର ନଷ୍ଟ
ଫିଟିଲା କଷଣ ଭୋଗ
ଏବେ ତୋତେ ନଷ୍ଟେ ଆଜ୍ଞା ହୋଇଅଛି
ଦର୍ଶନ କରିବୁ ବେଗ ॥ ୧୦୮ ॥

ଆସ ଆସ ବୋଲି ବିପ୍ର କର ଧରି
ଗ୍ରୁମୁକୁ ଗଲେ ସେ ନେଇ
ଦେଖିଣ ଗୋବିନ୍ଦ ମନରେ ସାନନ୍ଦ
ହସିଲେ ବିପ୍ରକୁ ଚାହିଁ ॥ ୧୦୯ ॥

ଶ୍ରୀକୃଷ୍ଣ କହିଲେ ଲଲାଟ ଲେଖନ
ଅନ୍ୟଥା ସେହୁ ନୋହିଲା
ପୂର୍ବଜନ୍ମେ ତୁମ୍ଭେ ଆମ୍ଭର ଭକତ
ଏମନ୍ତ ଶାପୁଁ ହୋଇଲା ॥ ୧୧୦ ॥

ମର୍ତ୍ତ୍ୟରେ ଥାଇଣ କଷ୍ଟ ଭୋଗକରି
ମରଣ ହୋଇଲା ଯେଣୁ
ଲେଉଟି ପୂର୍ବର ବାସନା ଘେନିଣ
ସ୍ୱର୍ଗକୁ ଆସିଲ ତେଣୁ ॥ ୧୧୧ ॥

ଏମନ୍ତ ଭଣିଣ ଯଶୋଦା ନନ୍ଦନ
ବପ୍ର କର ଧରନେଲେ
ଆହ୍ଲାଦ କରଣ ଜାନୁରେ ବସାଇ
ଭକ୍ତ ମୁଖେ ଚୁମ୍ବଦେଲେ ।। ୧୧୨ ।।

ପ୍ରଭୁ ବୋଇଲେ ହେ ଶୁଣ ବପ୍ରମଣି
ଆଶାକର ଆମ୍ଭ ସେବା
ସେବାରୁ ମୁକତ ଲଭ ହେବ ଭଲେ
ଫଳଶ୍ରୁତ କରାଇବା ।। ୧୧୩ ।।

ପ୍ରଭୁଙ୍କ ବଚନେ ଦ୍ୱିଜବର ବୋଲେ
ଶୁଣ ତୁମ୍ଭେ ମହାବାହୁ
ମୁଁ ଛାର ପାମର କସେବା କରିବ
ଶ୍ରୀମୁଖରୁ ଆଜ୍ଞା ହେଉ ।। ୧୧୪ ।।

ଶ୍ରୀକୃଷ୍ଣ କହିଲେ ଶୁଣ ବପ୍ରମଣି
ବଶେଷି କହିବ ମୁହିଁ
ଭୋଜନର ଶେଷେ ମୁଖବାସ ଦେବୁ
ପୂର୍ବେ ସେବଅଛୁ ତୁହି ।। ୧୧୫ ।।

ଆମ୍ଭର ଭକତ ଆମ୍ଭ ପ୍ରାଣହିତ
ନୂତନ ସେବକ ନୋହୁ
ଗତ ଜନ୍ମେ ଆମ୍ଭ ପାଶେ ଖଟିଥିଲୁ
ଗଙ୍ଗାଧର ନାମ ବହୁ ।। ୧୧୬ ।।

ପ୍ରଭୁଙ୍କର ବାଣୀ ବପ୍ରମଣି ଶୁଣି
ମନରେ ଆନନ୍ଦ ହୋଇ
ନମସ୍କରିଲା ବୋଲ ଠାକୁରଙ୍କ ପଦେ
ସେବାକଲା ଶୀଘ୍ର ଯାଇ ।। ୧୧୭ ।।

ବପ୍ର ଗଙ୍ଗାଧର ସେବା କରିବାର
ଦେଖିଣ କରୁଣା ସିନ୍ଧୁ
ବେନ ହସ୍ତେ ଧରି ଭେଟ ଶାଳାଠାକୁ
ବଜେ କଲେ ଦୀନବନ୍ଧୁ ।। ୧୧୮ ।।

ମୁକୁଟରେ ମଣି ଶିରେ ଶୋଭକର
ମଧୁକର ଜିନେ କେଶ
ସୁନ୍ଦର ମୂରତି କୋଟି କାମ ଜ୍ୟୋତି
ଭୁବନ ମୋହନ ବେଶ ।। ୧୧୯ ।।

ହୃଦରେ ଲମ୍ବଇ ଅରବିନ୍ଦ ମାଳ
ଲଲାଟେ କସ୍ତୁରୀ ରେଖା
ଶଙ୍ଖଚକ୍ର ଆଦି ଏମାନଙ୍କୁ ଧରି
ବ୍ରାହ୍ମଣଙ୍କୁ ଦେଲେ ଦେଖା ।। ୧୨୦ ।।

ତାମ୍ବୁଲ ବଟୁଆ ଧରିଅଛି ବିପ୍ର
ସାନନ୍ଦରେ ଭୋଳ ହୋଇ
ମୁଖବାସ ବୋଲି ଭୃଙ୍ଗ ହସ୍ତ ଦେଲି
ପ୍ରଭୁଙ୍କ ମୁଖରୁ ନେଇ ।। ୧୨୧ ।।

ବିପ୍ରଭକ୍ତେ ଭୋଳ ଦେଖି ଆଦିମୂଳ
ଆଜ୍ଞାଦେଲେ ଭଗବାନ
ହୋ ବିପ୍ର ତୋତେ ମୁଁ ପ୍ରସନ୍ନ ହୋଇଲି
ବରମାଗି ଏବେକ୍ଷଣ ।। ୧୨୨ ।।

ବ୍ରାହ୍ମଣ କହୁଛି ଶୁଣିମା ହେଉନ୍ତୁ
ଅନ୍ତର୍ଯ୍ୟାମୀ ମହାବାହୁ
ଯାହା ମୁଁ ମାଗିବି ତାହା ଆଜ୍ଞା ହେବ
ନାହିଁ ନ କରିବ ଆଉ ।। ୧୨୩ ।।

ଏମନ୍ତ ବର ଯେ ଆଜ୍ଞା ହେଉ ମୋତେ
ତୁମ୍ଭର ପ୍ରାପ୍ତେ ଦିଶିବ
ହରି ବ୍ରହ୍ମା ଇନ୍ଦ୍ର ସ୍ଥାନରେ ମୁଁ ଭ୍ରମି
ଅମର ପୁରେ ବସିବି ।। ୧୨୪ ।।

ଶ୍ରୀକୃଷ୍ଣ ବୋଇଲେ ଶୁଣ ବିପ୍ରମଣି
ତୁମ୍ଭେ ଯେତେ କଲ ସେବା
ତୁମ୍ଭ ସେବା ଦେଖି ପ୍ରସନ୍ନ ହୋଇଲୁଁ
ଶଙ୍ଖ ଆଦି ଚକ୍ର ଦେବା ।। ୧୨୫ ।।

---

ଅରବିନ୍ଦ — ପଦ୍ମ

ଅତି ଆହ୍ଲାଦରେ କହନ୍ତି କୃଷ୍ଣ
ଯେଣୁ ତୁମ୍ଭେ ଭକ୍ତ ମୋର
ନିଜ ପଦ ତୋତେ ଯାଚନକରି ଦେଲୁଁ
ଏବେ ବଡ଼ ଭାଗ୍ୟ ତୋର ।। ୧୨୬ ।।

ବପୁ ବୋଲୁଅଛି ମୋହର ରୂପ ଧରି
ତିନି ଭୁବନେ ବୁଲିବ
କେହି ଯେବେ ମୋତେ ଚିହ୍ନି ନ ପାରିବେ
ତେବେ ସେ ପ୍ରତ୍ୟୟ ନିବ ।। ୧୨୭ ।।

ଶ୍ରୀକୃଷ୍ଣ କହିଲେ ଅଶେଷ ବ୍ରହ୍ମାଣ୍ଡେ
ବୁଲୁଥିବ ବପୁ ଯାଇ
ଆମ୍ଭ ସମାନରେ ପୂଜା ତୁ ପାଇବୁ
ଚିନ୍ତା କରୁ କାହିଁପାଇଁ ।। ୧୨୮ ।।

ଏମନ୍ତ ଭଣିଣ କମଳା ରମଣ
ଅନୁଗ୍ରହ ତାଙ୍କୁ କଲେ
ଶଙ୍ଖ, ଚକ୍ର, ଗଦା ପଦ୍ମକୁ ସମର୍ପି
ଚତୁର୍ଭୁଜ କରି ଦେଲେ ।। ୧୨୯ ।।

ଗରୁଡ଼କୁ ପୁଣି ବୋଲନ୍ତି ଶ୍ରୀକୃଷ୍ଣ
ଶୁଣ ହୋ ବିନତା ଶିଷ
ଆମ୍ଭର ଭକ୍ତକୁ ପୃଷ୍ଠରେ ବସାଇ
ଭ୍ରମି ଆସ ଦଶଦିଶ ।। ୧୩୦ ।।

ଏହି ବପୁବର ତ୍ରିଲୋକ ମଧ୍ୟରେ
ଯହିଁକି କରିବ ମନ
ନାହିଁ ନ କରି ତୁ ବେଗେ ଚଳିଯିବୁ
ଶୁଣ ହେ ଖଗ-ରାଜନ ।। ୧୩୧ ।।

ପ୍ରଭୁଙ୍କ ବଚନେ ଖଗେଶ୍ୱର ବୋଲେ
ଏତେ ଅନୁଗ୍ରହ ଯାକୁ
ଆଜ୍ଞା ହେଲେ ମୁହିଁ ଶତଯୁଗ ଯାଏ
ଘେନି ବୁଲୁଥିବି ତାକୁ ।। ୧୩୨ ।।

---

ଖଗରାଜନ — ଗରୁଡ଼

ଶ୍ରୀକୃଷ୍ଣ କହିଲେ ଅଧିକ ନକର
ଚଉଦ ଭୁବନେ ପଶି
ମୁହୂର୍ତ୍ତ ମାତ୍ରକେ ଭ୍ରମିଣ ଆମ୍ଭଙ୍କୁ
ଦର୍ଶନ କରିବୁ ଆସି ।। ୧୩୩ ।।

ଶୁଣିଣ ବ୍ରାହ୍ମଣ ହରଷ ହୋଇଣ
ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ
ନମସ୍କରିଲା ବୋଲି ଗରୁଡ଼ ପୃଷ୍ଠରେ
ସତ୍ୱର ବସିଲେ ଯାଇଁ ।। ୧୩୪ ।।

ତଦନ୍ତରେ ଦ୍ୱିଜ ହୋଇ ହବ୍ୟ ସଜ
ଗମିଲେ ଗରୁଡ ପୃଷ୍ଠେ
ଏକ ନିମିଷେକ ଖଗେଶ୍ୱର ଯାଇଁ
ବ୍ରହ୍ମାଙ୍କ ପୁରରେ ଭେଟେ ।। ୧୩୫ ।।

ଦେଖିକରି ଧାତା ଜଗତର ପିତା
ମନେମନେ ଭୟ କଲେ
ବୋଇଲେ ମୋ ପଦ ହେବନା ନିମନ୍ତେ
ବିଷ୍ଣୁ ଆସି ହେଜେ କଲେ ।। ୧୩୬ ।।

ବେଭାରରେ ମୁହିଁ ବିଷୟରେ ଥାଇ
ଗୁମୁକୁ ଆଉ ନ ଗଲି
ଅଜ୍ଞାନରେ ମୁହିଁ ଶ୍ରୀକୃଷ୍ଣଙ୍କଠାରେ
ମନ୍ଦକର୍ମ ଆଚରିଲି ।। ୧୩୭ ।।

ଏମନ୍ତ ବିଚାରି ଜପ ଧ୍ୟାନ କରି
ଧାତା ସ୍ତୁତି ପାଠ ପଢ଼ି
କୋଟି ଦଣ୍ଡବତ ହେଲେ ସେ ତାହାଙ୍କୁ
ଶିରେ ବେନିକର ଯୋଡ଼ି ।। ୧୩୮ ।।

ସେହିଠାରୁ ପୁଣି ଗଲେ ଖଗମଣି
ମିଳିଲେ ଈଶ୍ୱର ସ୍ଥାନ
କୈଳାସ କନ୍ଦରେ ଥାଇଣ ଚାହିଁଲେ
ପଞ୍ଚମୁଖ ତ୍ରିଲୋଚନ ।। ୧୩୯ ।।

ଦେଖଣ ବୋଉଁଲେ ଗରୁଡ଼ ପୃଷ୍ଠରେ
ବଜେ.କଲେ ବାସୁଦେବ
ନିଷ୍ଟୟ ଏଠାରେ କିଛି କାର୍ଯ୍ୟ ନାହିଁ
ମୋ ଈଶ୍ବର ପଦ ନେବ ।। ୧୪୦ ।।
ଆସନରୁ ଉଠି ପ୍ରଣାମ କରଣ
ଦୂରରୁ ଯୋଡ଼ିଲେ ହସ୍ତ
ବୋଇଲେ ସକଳ ଦୋଷ କ୍ଷମା କର
ଆରତ ଭଞ୍ଜନ ନାଥ ।। ୧୪୧ ।।
ବେଗଲେ ମୋହର ସମସ୍ତ ନୋହିଲା
ଦର୍ଶନ ନକଲି ଯାଇ
ତୁମ୍ଭ ସେବାରେ ମୁଁ ମନ ଦେଇଅଛି
କୋପ ନ କର ଗୋସାଇଁ ।। ୧୪୨ ।।
ଏମନ୍ତ ଦେଖଣ ଗରୁଡ଼ ବ୍ରାହ୍ମଣ
ଆସିଲେ ତହୁଁ ଉପରେ
ବ୍ରାହ୍ମଣ ବୋଇଲେ ଠାକୁରଙ୍କ ବର
ଅନ୍ୟଥା ନୋହିଲା ମୋତେ ।। ୧୪୩ ।।
ପ୍ରସନ୍ନ ହୋଇଣ ଆପଣାର ପଦ
ଯାଚିଦେଲେ ବଜ୍ରସେହ୍ଲା
ଯହିଁ ବସି ପୂର୍ବେ ତପକର ଥିଲି
ଧନ୍ୟ ମୋ ପୂର୍ବ ବାସନା ।। ୧୪୪ ।।
ଚଳ ହେ ଗରୁଡ଼ ବିଳମ୍ବ ନକର
ବୈକୁଣ୍ଠ ପୁରକୁ ଯିବା
ପ୍ରଭୁଙ୍କର ବର ପ୍ରତ୍ୟକ୍ଷେ ଜାଣିଲି
ଆଉ କହିଁ ଏଥେଁ ଥିବା ।। ୧୪୫ ।।
ବିପ୍ରଙ୍କର ବାଣୀ ଶୁଣି ଖଗମଣି
ସଧୀରେ ଗମନ କଲା
ବ୍ରାହ୍ମଣଙ୍କୁ ଘେନ ଯାଇଣ ଗରୁଡ
ବସ୍ତୁ ଭୁବନେ ମିଳିଲା ।। ୧୪୬ ।।

---

ବଜ୍ରସେହ୍ଲା — ଭଗବାନ

ସିଂହଦ୍ୱାରେ ଯାଇଁ ରହିଲା ଗରୁଡ଼
ବିପ୍ରଙ୍କୁ ଓହ୍ଲାଇ ତଳେ
ଶଙ୍ଖ ଚକ୍ର ଚିହ୍ନ ବିରାଜ ଦିଶୁଛି
ସମସ୍ତେ ଦେଖିଲେ ଡୋଳେ ॥ ୧୪୭ ॥

ଗଦାପଦ୍ମ ବେନି ଘେନି ଚତୁର୍ଭୁଜ
ବ୍ରାହ୍ମଣ ହୋଇଛି ଉଭା
ନିଜେ ନାରାୟଣ ବିଜୟ କଲେକି
ବୈକୁଣ୍ଠ ପାଉଛି ଶୋଭା ॥ ୧୪୮ ॥

ଆପଣେ ଶ୍ରୀହରି ବିପ୍ରେ ଦୟାକରି
ଆଜ୍ଞା ଦେଇଛନ୍ତି ଯାହା
ଲୋକମାନେ ଆସି ପ୍ରଭୁ ପ୍ରାୟେ ମଣି
କେହି ନ ଜାଣନ୍ତି ତାହା ॥ ୧୪୯ ॥

ଲକ୍ଷ୍ମୀ ଆଗେ ଯାଇଁ ଦାସୀଏ କହନ୍ତି
ଅର୍ଘ୍ୟ ଘେନି ଆସ ମାଏ
ତୁମ୍ଭ କାନ୍ତ ଆସି ଦ୍ୱାରେ ରହିଛନ୍ତି
ସତ୍ୱର କର ବିଜୟେ ॥ ୧୫୦ ॥

ଦାସୀଙ୍କର ବାଣୀ ଶୁଣି ଠାକୁରାଣୀ
ଚଞ୍ଚଳେ ଆସିଲେ ଧାଇଁ
ପ୍ରଭୁ ବୋଲି ଆସି ନମସ୍କାର କଲେ
ବ୍ରାହ୍ମଣ ମୁଖକୁ ଚାହିଁ ॥ ୧୫୧ ॥

ପ୍ରଣାମ କରନ୍ତେ ସିନ୍ଧୁର କୁମାରୀ
ବହୁତ ଆନନ୍ଦ ହେଲେ
ଛାମୁରେ ଆସିଣ କରପଦ୍ମ ଯୋଡ଼ି
ବିନତା ନନ୍ଦନ ବୋଲେ ॥ ୧୫୨ ॥

ମୋ ବଚନ ତୁମ୍ଭେ ଶୁଣ ଠାକୁରାଣୀ
ଏତ ନୁହନ୍ତି ଶ୍ରୀହରି
ଭକ୍ତ ସେବା ଦେଖି ଆପଣା ମୂର୍ତ୍ତିକି
ଦେଇ ଅଛନ୍ତି ମୁରାରି ॥ ୧୫୩ ॥

ନଜପଦ ଦେଇ ଗ୍ରାମ ବୁଲଯାଇ
ଅଛନ୍ତି ଦେବାଧି ରାଜ
ଜାଣି ନ କହିଲେ ଅପରାଧ ହେବ
ତେଣୁ ମୋତେ ବନ୍ଧ ଲାଜ ।। ୧୫୪ ।।

କମଳା କହିଲେ ତାର ମୁଖ ଚାହିଁ
ଶୁଣହେ ବିନତା ବଣ
ଶଙ୍ଖ ଚକ୍ର ଚିହ୍ନ ବିରାଜ ଦିଶୁଛି
କେମନ୍ତେ କରିବା ମିଛ ।। ୧୫୫ ।।

ଏହି ଯେବେ ସତ୍ୟ କୁହନ୍ତି ମୋକାନ୍ତ
କେମନ୍ତେ ବିଶ୍ୱାସ ଯିବା
ଗ୍ରାମ ବୁଲି ଯେବେ ଯାଇଛନ୍ତି ପ୍ରଭୁ
ଆସିବା ପର୍ଯ୍ୟନ୍ତ ଥିବା ।। ୧୫୬ ।।

ଲକ୍ଷ୍ମୀ ଦେବୀଙ୍କର ଅନ୍ତର୍ଗତ କଥା
ଜାଣିଲେ ଶାରଙ୍ଗ ପାଣି
ବୋଇଲେ ଆମ୍ଭଙ୍କୁ ନ ଦେଖି ବିଷାଦ
କରନ୍ତି ସିନ୍ଧୁ ଦୁଲଣୀ ।। ୧୫୭ ।।

ଏମନ୍ତ ବିଗ୍ରହ କଲେ ମହାପ୍ରଭୁ
ମିଳିଲେ ଲକ୍ଷ୍ମୀଙ୍କ ଆଗେ
ଦେଖିଣ କମଳା ମହା ଲଜ୍ଜା ପାଇ
ଭିତରକୁ ଗଲେ ବେଗେ ।। ୧୫୮ ।।

ପ୍ରଭୁଙ୍କୁ ଚାହିଁଣ ବୋଲନ୍ତି ବ୍ରାହ୍ମଣ
ତୁମ୍ଭେ ଶୁଣ ବ୍ରହ୍ମରାଶି
ଦୀନ ବିପ୍ର ଆଜ୍ଞା ପ୍ରମାଣେ ବହିଲି
ଆପଣଙ୍କ ତେଜରାଶି ।। ୧୫୯ ।।

ଏତେକ ଶ୍ରୀହରି ମୋତେ ଦୟାକର
ଦୁର୍ବଳ ହୋଇଲି ଦେହ
ଗିରି ସମ ଗରୁ ମୋତେ ଲାଗୁଅଛି
କି ବୁଦ୍ଧି କରିବି କହ ।। ୧୬୦ ।।

---

ବିନତା ବଣ — ଗରୁଡ଼

ଏବେ ତୁମ୍ଭ ତେଜ ନଅ ଦେବରାଜ
ସମ୍ଭାଳ କରୁଣା ସାଇଁ
ଶଙ୍ଖ ଚକ୍ର ଚନ୍ଦ୍ର ଗଦା ପଦ୍ମ ଧର
ମୁ ଗ୍ରର ବନ୍ଧିବ କାହିଁ ॥ ୧୬୧ ॥

ବାଲୁକାରେ କାହିଁ ସିନ୍ଧୁ ହୁଏ ବାନ୍ଧ
ଶୁଣ ହେ ସାରଙ୍ଗଧର
ମୋର ସେବା ଏବେ ମୋତେ ଆଜ୍ଞା ହେଉ
ଏତକ ମାଗୁଛି ବର ॥ ୧୬୨ ॥

ଶ୍ରୀକୃଷ୍ଣ ବୋଇଲେ ଆମ୍ଭେ ବର ଦେଲୁ
ଅନ୍ୟଥା ନହେଲା ଦ୍ୱିଜ
ଯେ ଯାହାର ଦ୍ରବ୍ୟ ସେହି ତା ବହିବ
ତୋତେ କାହୁଁ ହେବ ସଜ ॥ ୧୬୩ ॥

ଏବେ ତୋର ସେବା କାହିଁକି ନ ଦେବା
ଭାବନ୍ତୁ ଯେ ଜନ୍ମ ଭବ
ମନ ସ୍ଥିର କରି ମୋତେ ହୃଦେ ଧରି
ଦୁର୍ଲ୍ଲଭ ପଦକୁ ଲଭ ॥ ୧୬୪ ॥

ଏମନ୍ତ କହିଣ ଯଶୋଦା ନନ୍ଦନ
ଜ୍ଞାନ ପାଠ ବୁଝାଇଲେ
ଶଙ୍ଖ ଚକ୍ର ଗଦା ପଦ୍ମ ଘେନିକରି
ଅନ୍ତଃପୁରେ ବିଜେକଲେ ॥ ୧୬୫ ॥

ଶ୍ରୀବତ୍ସର ଚିହ୍ନ ହୃଦରେ ଶୋଭନ
କଣ୍ଠରେ କୌସ୍ତୁଭ ମଣି
ମହାମୂଲ୍ୟ ଗଜଦନ୍ତ ପଲଙ୍କରେ
ବିଜେ କଲେ ଚକ୍ରପାଣି ॥ ୧୬୬ ॥

ଶ୍ରୀକୃଷ୍ଣଙ୍କୁ ଦେଖି ଶରଚ୍ଚନ୍ଦ୍ର ମୁଖ
ଲଜ୍ଜାରେ ଶିର ପୋତିଲେ
ଠାକୁରଙ୍କଠାରେ କ୍ରୋଧଭର ହୋଇ
କିଛି କଥା ନ କହିଲେ ॥ ୧୬୭ ॥

ଦକ୍ଷ ହସ୍ତ ନେଇ ଲଲାଟେ ଲଗାଇ
ମହାକୋପ ଭର ହେଲେ
ହେଠମାଥ ହୋଇ ବିରସ ବଦନେ
ବସିଲେ ସେ ଭୂମି ତଳେ ॥ ୧୬୮ ॥

କମଳାଙ୍କ ଶୁଷ୍କ ଦେଖି ପଦ୍ମମୁଖ
ଆଜ୍ଞା ଦେଲେ ଚକ୍ରବାହା
ତୁମ୍ଭଠାରେ ଆମ୍ଭେ କେଉଁ ଦୋଷ କଲୁଁ
ଅକପଟେ କହ ତାହା ॥ ୧୬୯ ॥

ଦୁର୍ବୁଦ୍ଧି ଧରିଣ ମନେ ତାପ କଲ
କାହିଁ ପାଇଁ ଏଡ଼େ ରୋଷ
କେ ଅବା ତୁମ୍ଭଙ୍କୁ କି ସେବା ନ କଲା
ଅପୂର୍ବ ହୋଇଲା କସ ॥ ୧୭୦ ॥

କମଳା ଭଣିଲେ ଶୁଣ ଚକ୍ରପାଣି
ଅଧିକ କହିବା କାହୁଁ
ତୁମ୍ଭ ମାୟା ମୋତେ ଗୋଚର ନୋହିଲା
କି ବୁଦ୍ଧି କରିବି ଆଉ ॥ ୧୭୧ ॥

ସାମନ୍ତ ହୋଇଣ ଭକ୍ତଭାବେ ବାଇ
କଞ୍ଚିତ କଥାରେ ଭୋଳ
ମର୍ତ୍ତ୍ୟପୁର ପାପୀ ବ୍ରାହ୍ମଣ ଗୋଟାକୁ
ଶଙ୍ଖ ଚକ୍ର ଚିହ୍ନ ଦେଲ ॥ ୧୭୨ ॥

ସେଥିପାଇଁ ହରି ମନେ ତାପ କରି
ଲଜ୍ଜାରେ ପୋତିଲେ ଶିର
ଯାକୁ ଇଚ୍ଛାହୁଏ ତାକୁ ଦୟାକର
କେମନ୍ତେ କଥା ତୁମ୍ଭର ॥ ୧୭୩ ॥

ଦାସୀଙ୍କର ବାଣୀ ଅନ୍ତଃପୁରୁ ଶୁଣି
ଗୃହରୁ ବାହାର ହୋଇ
ତୁମ୍ଭପ୍ରାୟେ ମଣି ନମସ୍କାର କଲା
ବ୍ରାହ୍ମଣ ମୁଖକୁ ଚାହିଁ ॥ ୧୭୪ ॥

ଶ୍ରୀକୃଷ୍ଣ କହିଲେ ଶୁଣ ପ୍ରାଣେଶ୍ୱରୀ
ସେ ବିପ୍ର ଆମ୍ଭର ଦେହ
ଭକତଙ୍କୁ ତୁମ୍ଭେ ନମସ୍କାର ଦେଲ
ଲଜ୍ଜା ହେଲ କିପାଁ କହ ॥ ୧୭୫ ॥

ଭକତଠାରୁ ମୁହିଁ ଭିନ୍ନ ନୋହେ ସତ୍ୟ
ଏଥିରେ ଭ୍ରାନ୍ତ ନକର
ଲେଖାରେ ଆମ୍ଭର ନିଜ ଭ୍ରାତୃଷ୍ମନ୍ତ
× × × × ॥ ୧୭୬ ॥

ପ୍ରଭୁ ବୋଇଲେ ଗୋ ଶୁଣ ଖଞ୍ଜନାକ୍ଷି
ଆମ୍ଭ ଭ୍ରାତା ଦେବରାଜା
ସାବିତ୍ରୀ ଯେ ଆଉ ଗାୟତ୍ରୀ ନାମରେ
ବ୍ରହ୍ମାଙ୍କର ବେନି ଭାର୍ଯ୍ୟା ॥ ୧୭୭ ।

ପ୍ରତିଦିନ ଯବେ ଗଙ୍ଗାରେ ପଶିଣ
ସ୍ନାନ କରନ୍ତି ସେ ଯାଇଁ
ସାବିତ୍ରୀ ବୋଲିଣ ହେଉଁ ଯୁବତୀଟି
ଗର୍ଭବତୀ ହୋଇଛଇଁ ॥ ୧୭୮ ॥

ବେଭାରରେ ମାସ ଦିବସ ହୋଇଛି
ପ୍ରସବ ସମୟ ଯେଣୁ
ଗଙ୍ଗାକୂଳେ ଥାଇ ଗର୍ଭବ୍ୟଥା କଲା
ଆସି ନପାରିଲେ ତେଣୁ ॥ ୧୭୯ ॥

ସ୍ୱଭାବରେ ନାରୀ ପରମା ସୁନ୍ଦରୀ
ଗତ୍ରୁ ହେଲା କଟୀଭର
ମହାକଷ୍ଟ ପାଇ ସେହିଠାରେ ଦେବୀ
ପ୍ରସବ କଲା କୁମର ॥ ୧୮୦ ॥

ଯେଯାହା ଅର୍ଜଇ ସେ ତାହା ଭୁଞ୍ଜଇ
ପୂର୍ବ ଜନ୍ମାର୍ଜିତ କଥା
ଗର୍ଭରୁ ପଡ଼ିଣ ଶିଶୁ କୁମରଟି
ମନେ ମନେ କଲା ଚିନ୍ତା ॥ ୧୮୧ ॥

କୁମର ବୋଲନ୍ତି ବ୍ରହ୍ମାଣ୍ଡ ଯାକତ
ଘୋଟିଛନ୍ତି ବିଷ୍ଣୁଙ୍କ ମାୟା
କାହିଁପାଇଁ ଏଥେଁ ଜନମ ହୋଇଲି
କେ ମୋତେ କରିବ ଦୟା ॥ ୧୮୨ ॥

ଲାଳରକ୍ତେ ଶିଶୁ ମିଶ୍ରିତ ହୋଇଣ
ଆକୁଳରେ କାନ୍ଦୁଅଛି
ଗୋବିନ୍ଦ ଗୋବିନ୍ଦ ସୁମରି କୁମର
ଭୂମିରେ ପଡ଼ି ଗଡ଼ୁଛି ॥ ୧୮୩ ॥

ଦେଖି ପୁତ୍ର ମୁଖ ଦୂରେ ଗଲା ଦୁଃଖ
କୋଳେ ଧରିବାକୁ ବାଳୀ
ଉଠଉଠ ବୋଲି ତାହାକୁ ଟେକନ୍ତେ
ଭୂମିରୁ ନ ପାରେ ତୋଳି ॥ ୧୮୪ ॥

ନାନା ପ୍ରକାରରେ ବହୁ ଯତନରେ
ଅନେକ ଉପାୟ କଲା
ମହାଭାର ହୋଇ ବାଳକ କୁମର
ଦେଖୁଁ ଦେଖୁଁ ବଢ଼ିଗଲା ॥ ୧୮୫ ॥

କର ଚରଣକୁ ଧଇଲେ ନଚଳେ
ଦ୍ୱିଗୁଣ ହୋଇଲା ରୂପ
ତୋଳ ତୋଳ ଦେଖି ବିମୁଖ ହୋଇଣ
ମନରେ ଅଛନ୍ତି କୋପ ॥ ୧୮୬ ॥

ମାତା କହିଲେ ତୁ ପୁତ୍ର ହୋଇ ଯେବେ
ଆୟୁତ ନୋହିଲୁ ମୋରେ
ଯାହା ନାମ ଧରି ଏମନ୍ତ ହେଉଛୁ
ସେହି ପ୍ରତିପାଳୁ ତୋରେ ॥ ୧୮୭ ॥

ନିଶି ଦିବସରେ ଗୋବିନ୍ଦ ସୁମରେ
ଡାକେ କୃଷ୍ଣ ରକ୍ଷାକର
ବାଳକ ପୁତ୍ରର ଦୃଢ଼ ସେବା ଦେଖି
ପ୍ରସନ୍ନ ହେଲୁଁ ସତ୍ୱର ॥ ୧୮୮ ॥

ଦେଖିଣ ବାଳୁତ ଶିରେ ବେନି ହସ୍ତ
ଯୋଡ଼ିଣ ଉଠିଲ୍ଲ ବେଗ
ଆମ୍ଭେ ବୋଇଲୁ ଯେ ବର ଦେବା ତୋତେ
ଯାହାଇଚ୍ଛା ତାହା ମାଗ ।। ୧୮୯ ।।

ଶୁଣନ୍ତୁ କୁମର ଅଟ୍ଟ ଯୋଗେଶ୍ୱର
ସବୁଦିନେ ଆମ୍ଭ ଦାସ
ସେବା ଦେଖି ଆମ୍ଭେ ପ୍ରସନ୍ନ ହୋଇଲୁ
ବୈକୁଣ୍ଠକୁ ଯିବା ଆସ ।। ୧୯୦ ।।

କୁମର ଭଣିଲେ ଶୁଣ ଚକ୍ରପାଣି
ତୁମ୍ଭେ ଯେବେ ମୋତେ ନେବ
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ
ଦଣ୍ଡେମାତ୍ର ମୋତେ ଦେବ ।। ୧୯୧ ।।

ଭଣିଲୁଁ ଯେ ଏବେ ନବଯୁବା ହୁଅ
ବାଳକ ସ୍ୱଭାବ ଯାଉ
ଗଙ୍ଗାଙ୍କ କୂଳରେ ଜନମ ହୋଇଲ୍ଲ
ଗଙ୍ଗାଧର ନାମ ହେଉ ।। ୧୯୨ ।।

ଏମନ୍ତ କହିଣ ସେହିଠାରୁ ଆମ୍ଭେ
ଗମନ କଲୁଁ ଉଚ୍ଛାଟେ
ବାଳକ ପୁତ୍ରକୁ ଘେନି ଆସୁଁ ଆସୁଁ
ସାବର୍ଣ୍ଣୀ ଦେଖିଲେ ବାଟେ ।। ୧୯୩ ।।

ଦୂରରୁ ଦେଖିଣ ବ୍ରହ୍ମାଙ୍କ ରମଣୀ
ଶିରେ ଯୋଡ଼ି ବେନିକର
ବୋଇଲେ ଆପଣ ଅନାଥର ନାଥ
ମୋତେ ଅନୁଗ୍ରହ କର ।। ୧୯୪ ।।

ବହୁ କଷ୍ଟ ପାଇ ଗର୍ଭରେ ଧଇଲି
ଦଶମାସ ପୂର୍ଣ୍ଣ ହେଲ୍ଲ
କମଠର ଡ଼ିମ୍ବ ପ୍ରସବ ପ୍ରାୟେକ
ବିଫଳ ସବୁ ହୋଇଲ୍ଲ ।। ୧୯୫ ।।

ଏବେହେ ଶ୍ରୀହରି ଚନ୍ଦ୍ରେ ଦୟାକରି
ଅନୁଗ୍ରହ ମୋତେ କର
ତୁମ୍ଭର ସଞ୍ଚଳ ହେଲା ଏ କୁମର
ଥାଉ ସମୀପରେ ମୋର ।। ୧୯୬ ।।

ପ୍ରଭୁ ବୋଇଲେ ଗୋ ନଅ ବଧୂମୁଖୀ
ବ୍ରହ୍ମାଙ୍କ ଜ୍ୟେଷ୍ଠ ସୁହାଗୀ
ଅନେକ ଆକୁଳ ହୋଇଣ ମାଧବୀ
ପୁତ୍ରକୁ ଘେନଲେ ମାଗି ।। ୧୯୭ ।।

ଏମନ୍ତେ ତଦନ୍ତେ କେତେ ଦିନ ପରେ
ବଢ଼ିଲା ସେ ଦ୍ୱିଜ ବସ୍ତ୍ର
ବଳବନ୍ତ ପଣେ କେହିତ ତାହାକୁ
ମନ୍ତ୍ରେରେ ନୋହିଲେ କକ୍ଷ ।। ୧୯୮ ।।

କେତେ କାଳେ ମହେନ୍ଦ୍ର ଜ୍ଞାନେ ମଜ୍ଜି ହୋଇ
ଗଙ୍ଗାଧର ନାମେ ଋଷି
ରଜନୀ ଦିବସେ ଗଙ୍ଗାକୂଳେ ଯାଇଁ
ତପ କରୁଥାନ୍ତି ବସି ।। ୧୯୯ ।।

ଏମନ୍ତ ସମୟେ ଇନ୍ଦ୍ରର ଦୁହିତା
ସୁଗନ୍ଧା ନାମେ ସୁନ୍ଦରୀ
ପୁଷ୍ପବନ୍ତୀ ହେତୁ ସପ୍ତମ ଦିନରେ
ଗଲା ଗଙ୍ଗା ସ୍ନାନ କରି ।। ୨୦୦ ।।

ସ୍ୱର୍ଗରାଜ ଜେମା ଅତ୍ୟନ୍ତ ସୁଷମା
ପୁଣି ସେ ନବ ଯୁବତୀ
ସ୍ନାନ ସାରି ଓଦା ବସନେ ସୁନ୍ଦରୀ
ନମିଲା ଋଷିଙ୍କ କତି ।। ୨୦୧ ।।

ତାର ମନୋହର ସମସ୍ତ ଶରୀର
ବାସେ ଜଡ଼ି ଗଲା ଜଣା
ତେଣୁ ତପୋଧନ ମଦନେ ଉଚ୍ଛନ୍ନ
ତପ ତେଜ ହେଲେ ବଣା ।। ୨୦୨ ।।

ବଳାତ୍କାର କରି ସୁଗନ୍ଧାକୁ ଧରି
ପାପଇଚ୍ଛା ପୂର୍ଣ୍ଣ କଲେ
ତେଣୁ ସେ ସୁନ୍ଦରୀ ଅତି କ୍ରୋଧକରି
ଋଷିଙ୍କୁ ଶାପ ଦିଅଲେ ।। ୨୦୩ ।।

ବୋଇଲେ ପାପିଷ୍ଠ ମୋର ଧର୍ମ ନଷ୍ଟ
କଲୁ ଯେଣୁ ଅକାରଣ
ମର୍ତ୍ତ୍ୟ ମଣ୍ଡଳରେ ଜନ୍ମ ହୋଇ ତୋର
ବେଶ୍ୟାଘରେ ଯାଉ ପ୍ରାଣ ।। ୨୦୪ ।।

ଶ୍ରୀହରି ବୋଇଲେ ଶୁଣ ପ୍ରାଣେଶ୍ୱରି
ଏ ମହା ବିଷମ କଥା
ସୁଗନ୍ଧା ମୁନିଙ୍କି ଶାପ ଦେବା ଦେଖି
ଆମ୍ଭଙ୍କୁ ଲାଗିଲା ବ୍ୟଥା ।। ୨୦୫ ।।

ଭକ୍ତଙ୍କର ଶକ୍ତି ହେବାରୁ ଦୁଃଖିତ
ତାହାଜାଣି ବିଜେ କଲୁଁ
ମହାକୋପ ବହି ସେଠାରେ ପ୍ରବେଶି
ସୁଗନ୍ଧାକୁ ଶାପ ଦେଲୁ ।। ୨୦୬ ।।

ଶୁଣ ଗୋ ସୁନ୍ଦରୀ ଇନ୍ଦ୍ରର କୁମାରୀ
ଅର୍ଜିଲୁ ଅନେକ ପାପ
ଆମ୍ଭର ଭକ୍ତକୁ ନ ଜାଣି ଦଣ୍ଡିଲୁ
ତୋତେ ପଡୁ ମୋର ଶାପ ।। ୨୦୭ ।।

ତୁହି ଯେବେ ଯାଇ ମର୍ତ୍ତ୍ୟେ ଜନ୍ମ ହୋଇ
ଜାତିରେ ବେଶ୍ୟା ହୋଇବୁ
ସୁଗନ୍ଧା ନାମ ତୋ ଗୋପ୍ୟ ହୋଇଥିବ
ମଦନା ନାମ ବହିବୁ ।। ୨୦୮ ।।

ଏହି ମୁନି ପୁଣି ସଙ୍କର୍ଷଣ ନାମେ
ଅଭ୍ୟାଗତ ହୋଇଥିବ
ଦେହଅନ୍ତେ ପୁଣି ସ୍ଥାନ ଭଲ ଜାଣି
ତୋ ଗୃହେ ପ୍ରାଣ ହାରିବ ।। ୨୦୯ ।।

ତଦନ୍ତରେ ଆସି ବୈକୁଣ୍ଠରେ ପଶି
ଆମ୍ଭଙ୍କୁ ଦର୍ଶନ କଲେ
ଶାପରୁ ମୁକତ କରାଇ ଭକ୍ତଙ୍କୁ
ନିସ୍ତାର କରିବୁ ହେଲେ ॥ ୨୧୦ ॥

ଇନ୍ଦ୍ର କନ୍ୟା ମୁନି ଏହି ଶାପ ଘେନି
ମର୍ତ୍ତ୍ୟପୁରେ ଦେହଧରି
ସେହି ଦ୍ୱିଜବର ଭ୍ରାତୃପୁତ୍ର ହେଲି
ଶୁଣ ଗୋ ସିନ୍ଧୁ କୁମାରି ॥ ୨୧୧ ॥

ତଦନ୍ତେ ସେ ନାରୀ ମର୍ତ୍ତ୍ୟେ ଦେହଧରି
ଥୋକାଏ ଦିନ ରହିଲା
ମର୍ତ୍ତ୍ୟରୁ ଆସିଣ ଇନ୍ଦ୍ରର ଦୁହିତା
ପର ଜନ୍ମରେ ହୋଇଲା ॥ ୨୧୨ ॥

ପ୍ରଭୁଙ୍କର ବାଣୀ ଲକ୍ଷ୍ମୀଦେବୀ ଶୁଣି
ଛାଡ଼ିଲେ ହୃଦରେ ବ୍ୟଥା
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ଭକ୍ତ ନିଜପଦ କଥା ॥ ୨୧୩ ॥

ଯେଉଁ ଶ୍ରୀହରିଙ୍କି ଦର୍ଶନ କରନ୍ତେ
ହୁଅଇ ବୈକୁଣ୍ଠ ଭେଟ
ବଣା ହୋଇ ଭକ୍ତ ଅମଡ଼ା ମାଡ଼ିଲେ
ଆପଣେ କଢ଼ାନ୍ତି ବାଟ ॥ ୨୧୪ ॥

ଦୁଷ୍ଟଜନ ଗଞ୍ଜି ଭକ୍ତଜନ ରଞ୍ଜି
ଦୁଷ୍କୃତ ମାନ ହରନ୍ତି
ପତିତପାବନ କୃପାସିନ୍ଧୁ ବୋଲି
ଏ ନାମ ପାଇ ଅଛନ୍ତି ॥ ୨୧୫ ॥

ଆମ୍ଭର ଜନମ ଅଦ୍ୟ ହେଲା ଧନ୍ୟ
ଜଗତରେ ଅଟୁଁ ପାପୀ
ତୁମ୍ଭଠାରୁ ଏବେ କୃଷ୍ଣ କଥା ଶୁଣି
ନିସ୍ତାର ପାଇବୁଁ ଗୋପୀ ॥ ୨୧୬ ॥

ପତିତପାବନ କୃପାସିନ୍ଧୁ ବୋଲି
ଜଗତ ଭୁବନରେ ଭଣି
କାହୁଁ ଏହି ନାମ କେମନ୍ତେ ପାଇଲେ
କେହି ତ ଏହା ନ ଜାଣି ।। ୨୧୭ ।।

ଉଦ୍ଧବ କହିଲେ ଶୁଣ ଗୋପନାରୀ
ଏ ମହା ଗୁପତ ବାଣୀ
ପ୍ରଭୁ ଯହୁଁ ମୋତେ ଶ୍ରୀମୁଖେ କହିଲେ
ତେଣୁସିନା ମୁହିଁ ଜାଣି ।। ୨୧୮ ।।

ତ୍ରେତାଯୁଗ ଆସି ଭୋଗ କରଗଲା
ନବେ ସହସ୍ର ବରଷ
ପ୍ରଜାପତିଙ୍କର ଜନମ ହୋଇଲେ
ଷାଠିଏ ହଜାର ଶିଷ୍ୟ ।। ୨୧୯ ।।

ସମସ୍ତ କୁମାରେ ଗର୍ବେ ମତ୍ତ ହୋଇ
ଖେଳୁଥିଲେ ସିନ୍ଧୁ ତଟେ
ଏମନ୍ତ ସମୟେ ଅଷ୍ଟାବକ୍ର ଋଷି
ଯାଉଛନ୍ତି ସେହିବାଟେ ।। ୨୨୦ ।।

କର କଟିଭାଗ ପାଦ ସହିତରେ
ସଳଖ ନୁହଇ ଯେଣୁ
ବଦନ ନାସିକା କର୍ଣ୍ଣ ବକ୍ର ଅଟେ
ଅଷ୍ଟାବକ୍ର ନାମ ତେଣୁ ।। ୨୨୧ ।।

ମସ୍ତକ ଟାଙ୍ଗରା ପ୍ରସନ୍ନ ବଦନ
ପୃଥିବୀରେ ହୋଇଛନ୍ତି
ଚଳନ୍ତି ପଥରେ ଝୁଲି ଝୁଲି ପାଦ
ପକାଇ ଅଳପ ଛଡ଼ା ।। ୨୨୨ ।।

ଏମନ୍ତ ରୂପକୁ ଦେଖି ବାଳଗଣ
ଆସନ୍ତି ଆନନ୍ଦ ହୋଇ
ସମସ୍ତ କୁମାର କରତାଳ ଦେଇ
ହସନ୍ତି ତାହାକୁ ଚାହିଁ ।। ୨୨୩ ।।

ଏହି ବିପରୀତ ପ୍ରକାର ମନୁଷ୍ୟ
ବୋଲଣ ସମସ୍ତ ବସ୍ତ୍ରେ
କରତାଳ ମାରି ଆନନ୍ଦ ହୋଇଣ
ଗୋଡ଼ାଇଲେ ଋଷି ପଛେ ।। ୧୨୪ ।।
କୌଣସି ବାଳକ ଗର୍ବେ ହୋଇ ମତ୍ତ
ଝିଅନ୍ତି ବାଲି ପକାଇ
ଋଷିଙ୍କର ପ୍ରାପ୍ତ ହୋଇ ଅଷ୍ଟବକ୍ର
ଅଗ୍ରରେ ଚଳନ୍ତି ଯାଇଁ ।। ୧୨୫ ।।
କେହି ବୋଲନ୍ତି ଏ ମନୁଷ୍ୟ ଗୋଟିକୁ
ଆମ୍ଭ .ଭୁବନକୁ ନେବା
ପୁରଲୋକ ଦେଖି ଆନନ୍ଦ ହୋଇବେ
ପଛେ ପୁଣି ଛାଡ଼ିଦେବା ।। ୧୨୬ ।।
ଏମନ୍ତ ଭାଷିଣ ଋଷିଙ୍କ ପାଦକୁ
ଆକର୍ଷି ଧଇଲେ ଯେଣୁ
ଦେଖିଣ ସେ ଋଷି କ୍ରୋଧଭର ହୋଇ
ଶାପଦେଲେ ତାଙ୍କୁ ତେଣୁ ।। ୧୨୭ ।।
ବୋଇଲେ ଶୁଣରେ ବ୍ରହ୍ମାଙ୍କ କୁମରେ
ଅର୍ଜିଲ ଅନେକ ପାପ
ଦୋଷଯୋଗେ ଦଣ୍ଡ ପ୍ରାପତ ହୋଇବ
ତୁମ୍ଭଙ୍କୁ ପଡ଼ୁ ମୋ ଶାପ ।। ୧୨୮ ।।
ଶତେ ଜନ୍ମେ ଯାଏ କୁମ୍ଭୀପାକେ ତୁମ୍ଭେ
ପଡ଼ିତ ହୋଇଣ ଥିବ
ତଦନ୍ତରେ ପୁଣି ଶ୍ରୀହରି ଦର୍ଶନେ
ବୈକୁଣ୍ଠ ପୁରକୁ ଯିବ ।। ୧୨୯ ।।
ଆହୁରି ତୁମ୍ଭଙ୍କୁ ବଚନ କହୁଛି
ଛାଡ଼ିବ ଯେମନ୍ତ ପାପ
ଷାଠିଏ ଦିନରେ ପାପକ୍ଷୟ ଯିବ
ନାମ ବ୍ରହ୍ମ ଯେବେ ଜପ ।। ୧୩୦ ।।

---

କୁମ୍ଭୀପାକ — ନର୍କ ବିଶେଷ ।

ଏମନ୍ତ କହଣ ସେଠାରୁ ଶୀଘ୍ରରେ
ମଠକୁ ଆସିଲେ ଋଷି
ପ୍ରଜାପତି ପୁତ୍ରେ ନିଜ ଦେହ ଛାଡ଼ି
କୁମ୍ଭୀପାକ କୁଣ୍ଡେ ପଶି ।। ୨୩୧ ।।

ଶତେକ ଯୋଜନ କୁମ୍ଭୀପାକ ସ୍ଥାନ
ଗଭୀର ପଞ୍ଚାଶ ତାଳ
ପିମ୍ପୁଡ଼ି ଯିବାକୁ ପଥ ନ ପାବନ୍ତି
ଉଚ୍ଚରେ ଅଟେ ବିଶାଳ ।। ୨୩୨ ।।

ତାହାର ଭିତରେ ପ୍ରଜାପତି ପୁତ୍ରେ
ରହିଲେ ବହୁତ ଦୁଃଖେ
ପାଦପଦ୍ମ ବେନି ଅନବରତରେ
ଧ୍ୟାନ କରୁଥିଲେ ମୁଖେ ।। ୨୩୩ ।।

ଭୋଜନ ଶୟନ ଆଦି ଯେତେ କର୍ମ
ସବୁ ତ୍ୟାଗ କଲେ ମୁନି
ପାଦପଦ୍ମ ଧ୍ୟାନେ ପ୍ରଜାପତି ସୁତେ
ନିରନ୍ତର ହେଲେ ମୌନି ।। ୨୩୪ ।।

ତାହାଙ୍କର ସେବା ଦେଖି ଚକ୍ରପାଣି
ବିଚାରନ୍ତି ମନେ ମନେ
ଆମ୍ଭ ପାଦପଦ୍ମ ଧ୍ୟାନକରି ନିଷ୍ଠେ
ଧନ୍ୟ ହୋଇଲେ ଏମାନେ ।। ୨୩୫ ।।

ପ୍ରଭୁ ବୋଇଲେ ହେ ବାଳକ ତୁମରେ
କାହିଁପାଇଁ କଲ ସେବା
ତୁମ୍ଭ ସେବା ଦେଖି ପ୍ରସନ୍ନ ହୋଇଲୁ
ବରମାଗ ଏବେ ଦେବା ।। ୨୩୬ ।।

ପ୍ରଭୁଙ୍କର ବାଣୀ ପାପୀମାନେ ଶୁଣି
ବୋଇଲେ ଶୁଣ ଗୋସାଇଁ
ଅତି ଗଭୀର ଏ କୁମ୍ଭୀପାକ ଅଟେ
ଉଠିବାକୁ ପଥ ନାହିଁ ।। ୨୩୭ ।।

ଏବେ ହେ ଶ୍ରୀହରି ହୃଦେ ଦୟାକରି
ନଷ୍ଟେ ଯେବେ ଦେବ ବର
ପାଦପଦ୍ମ ବେନି ପାବନ୍ତ କରଣି
ଏଥୁଁ ଆମ୍ଭଙ୍କୁ ଉଦ୍ଧର ॥ ୨୩୮ ॥

ତାହାଙ୍କର ବାଣୀ ଶୁଣି ଚକ୍ରପାଣି
ଭବଗ୍ରାହୀ ନାରାୟଣ
ଆସ ଆସ ବୋଲି ଭକତଙ୍କ ଠାକୁ
ବଢ଼ାଇ ଦେଲେ ଚରଣ ॥ ୨୩୯ ॥

ଅଭୟ ସେପାଦ ଅମୃତରୁ ସ୍ୱାଦ
ବିକାଶନ୍ତ ଚନ୍ଦ୍ରଧର
କୁମ୍ଭୀପାକ ପୁର ଭସ୍ମ ହୋଇ ଯାଇ
ହୋଇଲା ବୈକୁଣ୍ଠ ପୁର ॥ ୨୪୦ ॥

ନିମିଷ ମାତ୍ରକେ ଯେଉଁ ପାଦ ପଦ୍ମ
ବିକଶିଲା ନବ ସୃଷ୍ଟି
ସେହି ପାଦ ଧରି ପାପୀଜନମାନେ
ଦୁସ୍ତରୁ ଆସିଲେ ଉଠି ॥ ୨୪୧ ॥

ଅଭୟ ଚରଣ ଧରିବା ମାତ୍ରକେ
ଗୁଡ଼ିଲା ହୃଦରୁ ବ୍ୟଥା
ଷାଠିଏ ଦିନରେ ପାପୁଁ ମୁକ୍ତ ହେଲେ
ପୁଣ୍ୟର ଏମନ୍ତ କଥା ॥ ୨୪୨ ॥

ପ୍ରଭୁଙ୍କୁ ଗୃହିଁଣ ପ୍ରଜାପତି ସୁତେ
ବୋଲନ୍ତି ଶୁଣ ଶ୍ରୀଧର
ଆପଣଙ୍କଠାରେ ଗୋଟିଏ ପ୍ରାର୍ଥନା
ଅଛି ଆମ୍ଭମାନଙ୍କର ॥ ୨୪୩ ॥

ନିଷ୍ଠୟେ ଯେବେହେଁ ପ୍ରସନ୍ନ ହୋଇଲ
ତୁମ୍ଭର କୀର୍ତ୍ତି ରହିବ
ପତିତପାବନ ନାମ ଗୋଟି ତୁମ୍ଭେ
ଆମ୍ଭଠାରୁ ତ ବହିବ ॥ ୨୪୪ ॥

ଭକ୍ତଙ୍କର ବାଣୀ ଶୁଣି ଚକ୍ରପାଣି
ଅତି ସନ୍ତୁଷ୍ଟ ହୋଇଲେ
ହେଉ ହେଉ ବୋଲ ପ୍ରସନ୍ନ ହୋଇଣ
ବୈକୁଣ୍ଠ ପୁରେ ମିଳଲେ ।। ୨୪୫ ।।

ଉଦ୍ଧବ କହିଲେ ଶୁଣ ଗୋପନାରୀ
ତୁମ୍ଭେ ଆଜ୍ଞା ଦେଲ ଯାହା
ଅନେକ ପ୍ରକାରେ ପ୍ରଭୁଙ୍କ ମହିମା
ତୁମ୍ଭରେ କହିଲି ତାହା ।। ୨୪୬ ।।

ପତିତମାନଙ୍କୁ ପାଦପଦ୍ମ ଦେନ
ପାବନ୍ତ ହୋଇଲେ ଯେଣୁ
ପତିତପାବନ ନାମ ଗୋଟି ପ୍ରଭୁ
ସେଠାରୁ ପାଇଲେ ତେଣୁ ।। ୨୪୭ ।।

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ଜ୍ଞାନ ମାର୍ଗ ତୁମ୍ଭେ ଦେଲ
ଆମ୍ଭେମାନେ ଶୁଣି ମୁକତ ହୋଇଲୁ
ଗୁଚିଗଲା ପାପ ମଳ ।। ୨୪୮ ।।

ଅତ୍ୟନ୍ତ ଗୁପତ ବେଦୁଁ ବଡ଼ ତତ୍ତ୍ୱ
ଏବେ ଜାଣିଲୁ ଗୋସାଇଁ
କୃପାସିନ୍ଧୁ ବୋଲି ପ୍ରଭୁଙ୍କୁ କହନ୍ତି
ଏ ନାମ ପାଇଲେ କାହିଁ ।। ୨୪୯ ।।

ଉଦ୍ଧବ ବୋଇଲେ ସେ କଥା ଶୁଣାଇଁ
ଦୁଃଖ ଜନ୍ମର ନାଶିବା
କୃପାସିନ୍ଧୁ ନାମ ଯହୁଁ ଅବତାର
ତାହା ତୁମ୍ଭଙ୍କୁ କହିବା ।। ୨୫୦ ।।

ଶ୍ରୀବତ୍ସ ପୁରାଣ କର୍ଣ୍ଣ ପଥେ ଶୁଣ
ପୂର୍ବ କଥାର ଉପମା
ନଳ କୁବେରଙ୍କ ସୁତ ଦୁଇଗୋଟି
ଶୋବନ୍ତ ବବନ୍ତ ନାମା ।। ୨୫୧ ।।

ବାଳକ ସ୍ୱଭାବ ଅଳ୍ପ ଦିନ ଗଲା
ବିଷ୍ଣୁ ପୁରାଣ ଶୁଣିଲେ
ଧର୍ମ କଥା ଗୂଢ଼ ଅନ୍ୟେ ପାର ନାହିଁ
ଏମନ୍ତ ବୋଲି ମଣିଲେ ।। ୨୫୨ ।।

ଜ୍ୟେଷ୍ଠ ପୁତ୍ର ତାର ଗୋବର୍ଦ୍ଧନ ନାମରେ
ଈଶ୍ୱରଙ୍କୁ ସେବା କରେ
ନିଶିଦିବସରେ ଆସନରେ ବସି
ଶିବ ନାମ ଏକା ଧରେ ।। ୨୫୩ ।।

କନିଷ୍ଠ କୁମର ବିବର୍ଦ୍ଧନ ତା ନାମ
ବିଷ୍ଣୁ ପଦେ ଚିତ୍ତ ଦେଇ
ସଂସାରର ଭୋଗ ସବୁ ତ୍ୟାଗକଲା
ବାଳକ କୁମର ହୋଇ ।। ୨୫୪ ।।

ଏକଦିନକରେ ସଙ୍ଗେ ବେନି ଭାଇ
ସମୁଦ୍ର ତୀରକୁ ଗଲେ
ନିତ୍ୟକର୍ମ ସାରି ଯେ ଯାହା ପ୍ରଭୁଙ୍କୁ
ଅନ୍ତର୍ଗତେ ଲୟ କଲେ ।। ୨୫୫ ।।

ଗୋବର୍ଦ୍ଧନ କୁମର ଶିବ ନାମ ଧରେ
ବିବର୍ଦ୍ଧନ ଶ୍ରୀହରି ଧରେ
ଶିବ ନାରାୟଣ ନାମ ଉଚ୍ଚାରିଲା
ଘୋରତର ଶବ୍ଦ କରେ ।। ୨୫୬ ।।

ହରଷ ହୋଇଣ ନାମ ଜପୁଥାନ୍ତି
କ୍ଷଣେହେଁ ନାହିଁ ବିଶ୍ରାମ
ଜ୍ୟେଷ୍ଠ ଭ୍ରାତା ଦେଖି ମନେ କୋପ କଲା
ଆଣ୍ଡେ ଧରିଲାରୁ ନାମ ।। ୨୫୭ ।।

ବୋଇଲା ବିବର୍ଦ୍ଧନ ଶୁଣରେ ପାପିଷ୍ଠ
ଏମନ୍ତ ଗରବ ବହୁ
ମୋର ପ୍ରଭୁ ଥାଉ ତୋର ପ୍ରଭୁ ନାମ
ବଡ଼ କରି କହାଁ କହୁ ।। ୨୫୮ ।।

ସେ ଯେଉଁ ଈଶ୍ବର ଯୋଗି ଯୋଗେଶ୍ବର
ଭକତଙ୍କୁ ବନ୍ଦ୍ୟ ସେହୁ
ତ୍ରିଶୂଳ ଡ଼ମ୍ବରୁ ବଭୂତ ଭୂଷଣ
ନଜାଣୁ କ ରୁଦ୍ରବାନା ॥ ୨୫୯ ॥

ବବସ୍ର କହଲା ଶୁଣ ଜ୍ୟେଷ୍ଠ ଭ୍ରାତ
ସବୁକଥା ଆମେ ଜାଣୁ
ନାରାୟଣ ବନା ଯେତେକ ଦେବତା
ସାମାନ୍ୟ ପରାୟେ ମଣୁ ॥ ୨୬୦ ॥

ତୋହର ସାମନ୍ତ ଯେବେ ବଳବନ୍ତ
ପରୀକ୍ଷା କରିବା ତାହା
ଗୋବସ୍ର ବୋଇଲ ସେ କଥା ପ୍ରମାଣ
ତୁ ଏବେ ବୋଲବୁ ଯାହା ॥ ୨୬୧ ॥

ବବସ୍ରର ବାଣୀ ଶୁଣି ପୁଷ୍କମଣି
ଅଧିକ ବଦ୍ଧିର ନାହିଁ
ସେ ଯାହାର ପ୍ରଭୁ ନାମ ଧରି ଡାକ
ସିନ୍ଧୂ ଭିତରକୁ ଗୃହିଁ ॥ ୨୬୨ ॥

ଯାହାର ସାମନ୍ତ ହେବ ବଳବନ୍ତ
ଭକ୍ତକୁ ହୋବେ ପିଠି
ମୀନ ଦୁଇଗୋଟି ଚହ୍ନିତ ରଖିବା
ଡ଼ାକଲେ ଆସିବେ ଉଠି ॥ ୨୬୩ ॥

ପରୀକ୍ଷାର ବାଣୀ ବୁଝି ଏହିକ୍ଷଣି
କେସାନ କେ ବଡ଼ ହୋଇ
ତୁମ୍ଭ ପ୍ରଭୁ ନାମ ରାଘବ ହୋଇବ
ଆମ୍ଭ ପ୍ରଭୁନାମ ରୋହୀ ॥ ୨୬୪ ॥

ଏମନ୍ତ ଭଣିଣ କୁବେର ବାଳକେ
ଆସନ ଉପେକ୍ଷି ହୋଇ
ରୋହୀ ନାମ ଏକ ଆରେକ ରାଘବ
ଡାକନ୍ତି ସିନ୍ଧୁକୁ ଗୃହିଁ ॥ ୨୬୫ ॥

ଗୋବର୍ଦ୍ଧ କୁମର ଡାକେ ନିରନ୍ତର
ସଦାଶିବ ନାମ ଘେନି
ଘଡ଼ି ଦୁଇଅନ୍ତେ ଓଷ୍ଠ କଣ୍ଠ ଶୁଖି
ଫାଟିବାରୁ ହେଲ ଭୂନ ॥ ୨୬୬ ॥

ବିବସ୍ୱ ଶୁଣିଣ ମନେମନେ ଗୁଣି
ସାହାକର ଜଗବନ୍ଧୁ
ହରି ନାମ ଧରି ଘନଘନ ଡାକେ
ଜାଣିଲେ କରୁଣା ସିନ୍ଧୁ ॥ ୨୬୭ ॥

ବେଗରରେ ହରି ଜଗତ ବିହାରୀ
ଭକତ ଭାବକୁ ବାଇ
ମୀନ ରୂପ ଧରି ସମୁଦ୍ର ଭିତରୁ
କୂଳକୁ ପଡ଼ିଲେ ଡେଇଁ ॥ ୨୬୮ ॥

ଭକତର ମନ ଜାଣି ନାରାୟଣ
ଜଳରୁ ଉଠି ଆସିଲେ
ଦେଖିଣ ବିବସ୍ୱ ମନେ ହୋଇ ତୋଷ
ପ୍ରଭୁଙ୍କୁ ତୋଳି ଧଇଲେ ॥ ୨୬୯ ॥

ଶ୍ରୀଅଙ୍ଗର ଧୂଳି ସ୍ୱଅଙ୍ଗରେ ବୋଳି
ଥୋକାଏ ଶିରରେ ଧରି
ଜ୍ୟେଷ୍ଠ ଭ୍ରାତା ମୁଖ ଚୁମ୍ବିଣ ହସିଲେ
ପରିହାସ ପ୍ରାୟେ କରି ॥ ୨୭୦ ॥

କହିଲେ ହେ ଭ୍ରାତ ଆମ୍ଭ ପ୍ରଭୁ ନିନ୍ଦି
ସେବିଲ ଶିବ ଚରଣ
ତୁମ୍ଭଙ୍କୁ ପ୍ରସନ୍ନ ହେଲେ ସଦାଶିବ
ବରମାଗି ଏବେ ଘେନ ॥ ୨୭୧ ॥

ଶୁଣିଣ ଗୋବର୍ଦ୍ଧ ମନେ ଗର୍ବବହି
ବିବସ୍ୱେ ବହିଲ କୋପ
କନିଷ୍ଠ ହୋଇଁ ତୁ ଜ୍ୟେଷ୍ଠକୁ ନିନ୍ଦିଲୁ
ତୋତେ ପଡୁ ମୋର ଶାପ ॥ ୨୭୨ ॥

ଏ ମୀନକୁ ଦେଖି ମନେ ଗର୍ବ ରଖି
ମୋତେ କଲୁ ଅପମାନ
ମର୍ତ୍ତ୍ୟମଣ୍ଡଳରେ କୈବର୍ତ୍ତ ଗୃହରେ
ଅବଶ୍ୟ ହେବୁ ଜନମ ।। ୨୭୩ ।।

ଆହୁରି ଗୋଟିଏ ବଚନ କହିବା
ଶୁଣରେ ପାମର ମଢ଼
ମରଣ ସମୟେ ବେନି ଚକ୍ଷୁ ତୋର
ଅଭ୍ରୁତେ ହୋଇବ ଅନ୍ଧ ।। ୨୭୪ ।।

ଜ୍ୟେଷ୍ଠ ଭ୍ରାତା ମୁଖୁଁ ଏମନ୍ତ ଶୁଣିଣ
ବବସ୍ର ହୋଇଲା ଦୁଃଖୀ
ସୁମନ୍ତକ ଋଷି ତପ କରୁଥିଲେ
ତାହାଙ୍କୁ କଲା ସେ ସାକ୍ଷୀ ।। ୨୭୫ ।।

କହୁଅଛୁ ତୁମ୍ଭେ ଯୋଗେଶ ପୁରୁଷ
ଭାବରେ ବଶ ନୋହିବ
ଦୁଇ ଲୋକଙ୍କର ମଧ୍ୟସ୍ଥ ହୋଇଣ
ଯଥାର୍ଥ କଥା କହିବ ।। ୨୭୬ ।।

ମୁନି କହୁଚନ୍ତି ଶୁଣହେ ବବସ୍ର
କଥା ହେ କହିବା ତୋତେ
ଶିବଙ୍କର ନାମ ଯେଉଁ ଲୋକ ଜପେ
ତାହାଙ୍କର ଜ୍ଞାନ କେତେ ।। ୨୭୭ ।।

ସ୍ୱଭାବରେ ହର ଶ୍ମଶାନରେ ଘର
ତମ'ଗୁଣ ତାଙ୍କ ବୃତ୍ତି
ପିତାଗୁଣେ ପୁତ୍ର ସମ୍ଭବ ହୋଇଲେ
ନଶ୍ଚିନ୍ତ ଯେ ପ୍ରକୃତି ।। ୨୭୮ ।।

ଏବେ ହେ ଶ୍ରୀବସ୍ର ହେତୁ ତୋର ଅଛି
ଆମ୍ଭଙ୍କୁ ଭେଟିଲୁ ଯେଣୁ
ଗୋବସ୍ର ଶାପରୁ ମୁକ୍ତ କରି ତୋତେ
ବର ଯାଚି ଦେବା ତେଣୁ ।। ୨୭୯ ।।

ଯେଉଁ ମୀନକୁ ତୁ କରେ ଧରିଅଛୁ
ଛାଡ଼ିଦିଅ ସିନ୍ଧୁ ଜଳେ
ଅନ୍ୟ ଜନମରେ ସୁବର୍ଣ୍ଣର ମୀନ
ପ୍ରାପତ ହୋଇବ ବଳେ ॥ ୨୮୦ ॥

ସମପୁର ଅନ୍ତେ ଅଲ୍ପଦିନ ଯାନ୍ତେ
ଦେଖିବୁ ଶ୍ରୀ ବନମାଳୀ
ଆମ୍ଭ ବର ତୋତେ ଅସ୍ତୁ ହେଉ ବୋଲି
ଶଙ୍ଖେ ଜଳ ଦେଲେ ତୋଳି ॥ ୨୮୧ ॥

ଋଷିଙ୍କର ବାଣୀ ବବସ୍ତ୍ର ତା ଶୁଣି
ମନରେ ସନ୍ତୁଷ୍ଟ ହେଲ
ଜେଷ୍ଠ ଭ୍ରାତା ଶାପ ପ୍ରାପତ ହେବାରୁ
ମର୍ତ୍ତ୍ୟପୁରେ ଜନମିଲ ॥ ୨୮୨ ॥

କୈବର୍ତ୍ତ ଗୃହରେ ଜନ୍ମ ହୋଇ ସୁତ
ପୂର୍ବ ହେତୁ କଲ ଲୟ
ନିଜ ଜୀବିକାରେ ସଦ୍‌ବୃତ୍ତି କରନ୍ତେ
ବର୍ଦ୍ଧିତ ହୋଇଲ କାୟ ॥ ୨୮୩ ॥

କ୍ରମର ଦୁହିତା ମାତା ପିତା ଭ୍ରାତା
ଏମାନେ ହୋଇଲେ ନାଶ
ରମଣୀକ ସେନ ଏକାନ୍ତେ ରହିଲ
ନଳ କୁବେରଙ୍କ ଶିଷ ॥ ୨୮୪ ॥

ଅନାଥ ରୂପରେ ବୁଲେ ଏଣେ ତେଣେ
ବର୍ଦ୍ଧିତ ହୋଇଲ କଷ୍ଟ
ଯଥାର୍ଥ କାଳକୁ ଶାପ ଅନୁକ୍ରମେ
ବେନ ଚକ୍ଷୁ ହେଲ ନଷ୍ଟ ॥ ୨୮୫ ॥

ବେଉରରେ ଅନ୍ଧ ଅଟେ ବଡ଼ ବୃଦ୍ଧ
ବେପାର କରି ନ ପାରେ
ଗୃହର ଭିତରେ ଦୁଃଖେ ସୁଖେ ଥାଇ
ରାମନାମ ଏକା ଧରେ ॥ ୨୮୬ ॥

ଦିନେକର ପୁଣି ମନେ ମନେ ଗୁଣି
ଗୃହରୁ ବାହାର ହେଲା
ଶରଧାରେ ସେହି ଗ୍ରାମାନ୍ତସ୍ଥ ଧର
ନଦୀକୁ ଗାଧୋଇ ଗଲା ।। ୨୮୭ ।।

ସ୍ନାନସାର ଫେର ଆସିବା ସମୟେ
ଦିନମଣି ଉଦେହେଲେ
ପୁରାତନ କୂପ ପଥମଧ୍ୟେ ଅଛି
ରମଣୀ ଦେଖିଲା ଡୋଳେ ।। ୨୮୮ ।।

କୂପ ନିକଟରେ ନେତ୍ର ସ୍ଥିର କରି
ଜଳକୁ ଚାହିଁ ରହିଲା
କୂପର ଭିତରେ ମୀନ ଅଛି ଜାଣି
ପତିଙ୍କ ଅଗ୍ରେ କହିଲା ।। ୨୮୯ ।।

ତାହା ଶୁଣି ସ୍ୱାମୀ ବୋଲଇ ତରୁଣୀ
କଣ୍ଟା ଗୋଟିଏ ତୁ ଆଣ
ଏହି କୂପେ ଆଣି ବଉଶୀ ପୋତିବା
ଅବଶ୍ୟ ପଡ଼ିବ ମୀନ ।। ୨୯୦ ।।

ଅଦ୍ୟ ଦିବସରେ ଉପବାସ ଅଛୁଁ
କାଲିକ ଯେ ଅନ୍ନନାହିଁ
ନିଜ ବୃତ୍ତି କଲେ ଅବଶ୍ୟ ଦିଅନ୍ତି
ଭକତ ବନ୍ଧୁ ଗୋସାଇଁ ।। ୨୯୧ ।।

ନିଷ୍ଠଳରେ ବସି କୃଷ୍ଣ ନାମ ଘୋଷି
ଯୋଗଧ୍ୟାନ କଲା ସେଣୁ
ଆତଙ୍କ ଭଞ୍ଜନ ଯଶୋଦା ନନ୍ଦନ
ପ୍ରସନ୍ନ ହୋଇଲେ ତେଣୁ ।। ୨୯୨ ।।

ଭକ୍ତଙ୍କର ଦୁଃଖ ଦେଖି ପଦ୍ମ ମୁଖ
କୂପେ ଆସି ବିଜେକଲେ
କୂପମଧ୍ୟେ ଥାଇ ଦେଖି ତାଙ୍କ ଦୁଃଖ
ମନରେ ବିସ୍ମୟ ହେଲେ ।। ୨୯୩ ।।

ଏମନ୍ତ କହିଣ ସେଠାରୁ ଯାଇଣ
ପ୍ରବେଶ ହେଲେ ଗୃହରେ
ପରଦିନ ଆସି ଥୋପକୁ ଗଣ୍ଠିଣ
ପାଇଲେ କୂପ ମଧ୍ୟରେ ।। ୨୯୪ ।।

ଭକ୍ତଙ୍କର ଦୁଃଖ ଦେଖି ପଦ୍ମମୁଖ
କୂପେ ଆସି ବଜେ କଲେ
ସୁବର୍ଣ୍ଣର ମୀନ ଗୋଟିଏ ହୋଇଣ
ବଡ଼ଶୀ ଥୋପ ଗିଳିଲେ ।। ୨୯୫ ।।

ଝିଙ୍କିଲେ ଶ୍ରୀହରି ବଡ଼ଶୀକୁ ଧରି
କହିଲେ ଏମନ୍ତ ଜାଣୁ
ଅନ୍ଧ ନୟନକୁ ନ ଦିଶଇ ବୋଲି
ଓଟାରି ହୋଇଲେ ତେଣୁ ।। ୨୯୬ ।।

କୂପର ଭିତରୁ ସମ୍ମୁଖ ହୋଇଣ
ଆଜ୍ଞା ଦେଲେ ଚକ୍ରଧାରୀ
ଶୁଣ ତୁ ହେ ଅନ୍ଧ ନିଧି ହେଲା ପ୍ରାପ୍ତ
ନୟନ ଯେନ ତୁ ଗୁହାଁ ।। ୨୯୭ ।।

ପ୍ରଭୁଙ୍କର ବାଣୀ ଦୁଃଖୀ ଅନ୍ଧ ଶୁଣି
ନୟନ ନରେଖେ ଗୃହେଁ
ଦେଖିଲା ବଡ଼ଶୀ ଥୋପରେ ଲଗିଛୁ
ସୁବର୍ଣ୍ଣ ରେଖା ଗୋଟିଏ ।। ୨୯୮ ।।

ଅମୂଲ୍ୟ ରତନ ପୃଥିବୀରେ ନାହିଁ
ବକାଶି ପାଉଛୁ ଶୋଭା
କୂପର ଭିତରୁ ବାହାର ହୋଇଣ
ଚତୁର୍ଭୁଜେ ହେଲେ ଉଭା ।। ୨୯୯ ।।

ପ୍ରସନ୍ନ ହୋଇଣ ଧୀବରକୁ ଗୃହିଁ
ବୋଇଲେ ଶାରଙ୍ଗଧର
ବର ନ ମାଗିଣ କାହିଁ ତୁନି ହେଲୁ
ଶୁଣହେ ଭକତବର ।। ୩୦୦ ।।

କଇବର୍ତ୍ତ କହେ ଶୁଣ ଭବଗ୍ରାହ୍ମୀ
ଅନୁଗ୍ରହ କଲ ଯେବେ
କୋଟି ରାଜଲକ୍ଷ୍ମୀ ପ୍ରାପତ ହୋଇଛୁ
କି ବର ମାଗିବି ତେବେ ।। ୩୦୧ ।।
ଏବେ ଶ୍ରୀଚରଣେ ଚିତ୍ତ ରହୁ ମୋର
ଅନ୍ୟ ନମାଗଇ ଆଉ
କୂପର ଭିତରୁ ସମ୍ଭୂତ ହୋଇଲେ
କୃପାସିନ୍ଧୁ ନାମ ହେଉ ।। ୩୦୨ ।।
ଶ୍ରୀହରି ଶୁଣିଣ ହୃଦେ ଦୟାକରି
ବୋଇଲେ ଏକଥା ସତ୍ୟ
ଯାହାର ଯେସେବା ମୁଁ ହୃଦେ ଜାଣଇଁ
ଯେହ୍ନୁ ଯେପରି ଭକତ ।। ୩୦୩ ।।
ଯେହେତୁ ମୁଁ ଆସି କୂପଜଳେ ପଶି
ପ୍ରକାଶ ହୋଇଲି ଜାଣ
ନିଜ ରୂପ ଧରି ତୋତେ ବର ଦେବି
ଏ କଥା ମୋର ପ୍ରମାଣ ।। ୩୦୪ ।।
ଏବେ ତୁହ୍ମ ଯାଇ ସନ୍ତୁଷ୍ଟ ହୋଇଣ
ମନରୁ ତାପ ଉପେକ୍ଷ
କୋଟି ରାଜଲକ୍ଷ୍ମୀ ପ୍ରାପତ ହୋଇଛୁ
ଗୃହକୁ ଯାଇଣ ଦେଖ ।। ୩୦୫ ।।
ଅମର ମଣ୍ଡଳେ ଭୁଞ୍ଜି ଦ୍ରବ୍ୟ ଭୋଗ
କିଛି ସମୟ ଅନ୍ତରେ
ଦେହଛାଡ଼ ପୂର୍ବ ବାସନା ଘେନଣ
ବସିବୁ ବୈକୁଣ୍ଠ ପୁରେ ।। ୩୦୬ ।।
ଏ ଭାବରେ ତହୁଁ ଭକ୍ତ କହୁଁ କହୁଁ
ଅନ୍ତର୍ଦ୍ଧାନ ହେଲେ ହରି
ଉଦ୍ଧବ ବୋଇଲେ କୃପାସିନ୍ଧୁ ନାମ
ଶୁଣ ଗୋପାଳଙ୍କ ନାରୀ ।। ୩୦୭ ।।
ଭକତମାନଙ୍କ ମାନ ଉଦ୍ଧାରଣ
ବିକଚ କମଳ ତୋଳା
ଦୀନକୃଷ୍ଣ ଦାସ ସେପାଦେ ଶରଣ
ଭାବକୁ ବାନ୍ଧିଛି ଭେଳା ।। ୩୦୮ ।।

---

# ତୃତୀୟ ଛାନ୍ଦ

ହଂସା ଅହଙ୍କାର ପରାପର ଭେଦ
ଶତ୍ରୁ ମିତ୍ର ନାହିଁ ଯାକୁ
ଅଶେଷ ବ୍ରହ୍ମାଣ୍ଡ ଯେ ପ୍ରଭୁ ଧରନ୍ତି
ଭକତ କହନ୍ତି ତାକୁ ।। ୧ ।।

ଗୋପୀଏ ବୋଇଲେ ତା କାହୁଁ ଜାଣିମା
ମନରେ ବିଶ୍ୱାସ ନାହିଁ
ତୁମ୍ଭେ ଯେବେ ଜାଣ ତାହାଙ୍କ ମହିମା
ବିସ୍ତାର କହ ଗୋସାଇଁ ।। ୨ ।।

ଉଦ୍ଧବ ବୋଇଲେ ସେକଥା କହିଲେ
ମନେ ପ୍ରତେ ଯିବ ଟିକ
ଗୋପୀଏ କହିଲେ ଅନ୍ୟ ମନ ହେଲେ
ହୋଇବୁଁ ମହା ପାତକ ।। ୩ ।।

ଉଦ୍ଧବ ବୋଇଲେ ଗୋପନାରୀ ମାନେ
ଦୃଢ଼ ଚିତ୍ତ କରି ଶୁଣ
ଯଥା ଉଚିତରେ ବିସ୍ତାର କହିବା
ପ୍ରଭୁଙ୍କ ମହିମା ଗୁଣ ।। ୪ ।।

ସତୁରୀ ସହସ୍ର ଯୋଜନ ଅଟଇ
ପୃଥିବୀ ଦେହୀର ଘର୍ଦ୍ଧ
ତାହାଙ୍କ ଗନ୍ଧକୁ ଖରବ କରଣ
ବହିଅଛି ସର୍ପରାଜ ।। ୫ ।।

ବାସୁକିର ତଳେ ନିର୍ମାଣ ପୁରେକ
କୂର୍ମ ତାହା ଅଛି ବହି
କୂର୍ମର ପୃଷ୍ଠରେ ବାସୁକି ରହିଛି
ଲୂତା ରଜ୍ଜୁ ପ୍ରାୟ ହୋଇ ।। ୬ ।।

କୂର୍ମର ତଳେ ଯେ ପୁରେକ ଭିଆଣ
ଅନେକ ବିସ୍ତାର ଦମ୍ଭ
ଆଠଶ ଅଠାଶୀ ସହସ୍ର ଯୋଜନ
ଅଟଇ ସେ ପୁର ଲମ୍ବ ॥ ୭ ॥

ଶ୍ରୀ ନାରାୟଣଙ୍କୁ ମନେ ଚିନ୍ତାକରି
ମଣ୍ଡୁକ ଅଛି ତା ବନ୍ଧ
ମଣ୍ଡୁକ ପୃଷ୍ଠରେ କୂର୍ମ ରହିଅଛି
ତିଳ ରେଖା ପ୍ରାୟେ ହୋଇ ॥ ୮ ॥

ମଣ୍ଡୁକର ତଳେ ପୁରେକ ନିର୍ମିତ
ଜମ୍ବୁନଦ ସମ ବର୍ଣ୍ଣ
ପଞ୍ଚଦଶ ଲକ୍ଷ ସପତ ଅଯୁତ
ପାଞ୍ଚ ସହସ୍ର ଯୋଜନ ॥ ୯ ॥

ଶତ୍ରୁମିତ୍ର ପରାପର ଭେଦନାହିଁ
ସେପୁର ଲୋକଙ୍କ ଚିତ୍ତେ
ଦ୍ୱାଦଶ ଆଦିତ୍ୟ ଷୋଳକଳା ଚନ୍ଦ୍ର
ଉଦୟାସ୍ତ ହୋନ୍ତି ନିତ୍ୟେ ॥ ୧୦ ॥

ଅତି ମନୋହର ସେ ପୁର ସୁନ୍ଦର
ବଚନ ନୁହଇ କହି
ଅନନ୍ତ ଭୁଜଙ୍ଗ ଉପରେ ବସିଣ
ବିଷ୍ଣୁ ତାଙ୍କୁ ଛନ୍ତି ବହି ॥ ୧୧ ॥

ତାହାତଳ ଦେଶେ ସେ ପୁର ନିର୍ମାଣ
ଧବଳ ସମୁଦ୍ର ମଧ୍ୟେ
କ୍ଷୀରମାନଙ୍କର ଲହରି ଉଠୁଛି
ଚଉଦ ଯୋଜନ ଯାଏ ॥ ୧୨ ॥

ପଞ୍ଚାଅଶୀ କୋଟି ସହସ୍ର ଯୋଜନ
ସେ ପୁରର ଦୀର୍ଘ ପ୍ରତି
ଚନ୍ଦ୍ର ରଶ୍ମି ପ୍ରାୟ ଶୋଭା ପାଉଅଛି
ଧବଳ ଫେନର ଜ୍ୟୋତି ॥ ୧୩ ॥

କୋଟିଏ ଯୋଜନ ବିସ୍ତାର ତହିଁରେ
ପଦ୍ମବନ ଦିଶେ ଶୋଭା
ଦଶମ ସହସ୍ର ପାଖୁଡ଼ା ଫୁଟଇ
ପଦ୍ମ ଗୋଟିକର ପ୍ରଭା ।। ୧୪ ।।

ଷାଠିଏ ସହସ୍ର ଲମ୍ବ ସେ ଅଟଇ
ଏକା ପଦ୍ମ ନାଡ ଗୋଟି
ସ୍ୱର୍ଗପୁରୀ ଭେଦ ଆକ୍ରମି ରହନ୍ତି
ପାତାଳ ବୈକୁଣ୍ଠ ଭେଟି ।। ୧୫ ।।

ଅବସନ୍ତରେ ଯେ ବସନ୍ତ ବହଇ
ଶିଶିରେ ନୁହଇ ଛପ୍ତେ
ସୁଗନ୍ଧ ଶୀତଳ ବାସ ଆମୋଦଇ
ଚଉଦ ଭୁବନ ଯାଏ ।। ୧୬ ।।

ସେହି ପଦ୍ମବନ ଭିତରୁ ପ୍ରବେଶ
ଲକ୍ଷ୍ମୀ ଦେବୀ ହେଲେ ଜାତ
କମଳନୀ ନାମ ତେଣୁ ସେ ପାଇଲେ
ତିନି ଜଗତେ ବିଖ୍ୟାତ ।। ୧୭ ।।

ସେହି ପଦ୍ମବନ ଭିତରେ ଅଛନ୍ତି
ଅଷ୍ଟକୁଳା ନାମେ ଅହି
ମନ ପବନକୁ ଦୃଢ଼ତର କରି
ପ୍ରଭୁଙ୍କୁ ପୃଷ୍ଠରେ ବହି ।। ୧୮ ।।

ଜନ୍ମ ମୃତ୍ୟୁ ନାହିଁ ପାଦପଦ୍ମ ସେବି
ଅଟନ୍ତି ପରମ ଯୋଗୀ
କ୍ଷୁଧା ତୃଷା ନିଦ୍ରା ତିନି ବିବର୍ଜିତ
ମହାପୁଣ୍ୟମୟ ଭୋଗୀ ।। ୧୯ ।।

ବତିଶ ସହସ୍ର ଯୋଜନ ଅଟଇ
ସେ ମହା ସର୍ପର ପିଠି
ମୁଖ ବିସ୍ତାରିଲେ କ୍ଷଣକ ଭିତରେ
ବ୍ରହ୍ମାଣ୍ଡ ପାରଇ ଘୋଟି ।। ୨୦ ।।

ସେ ମହା ଧବଳ ସମୁଦ୍ରକୁ ଲାଗି
ପଦ୍ମବନ ଅଛି ରହି
ପଦ୍ମମାନଙ୍କର ଉପରେ ଅଛନ୍ତି
ଅଷ୍ଟକୁଳା ନାମେ ଅହି ।। ୨୧ ।।

ନୀଳ ଶୁକ୍ଳ ପାଣ୍ଡୁ ହରିତାଳ ଦ୍ୟୁତି
ପ୍ରାୟେ ଅଟେ ତାଙ୍କ ବର୍ଣ୍ଣ
ପୀତବର୍ଣ୍ଣ କୃଷ୍ଣ ପଟଳ ହିଙ୍ଗୁଳ
ଅଷ୍ଟକୁଳା ଶୋଭମାନ ।। ୨୨ ।।

ସେମାନଙ୍କ ତଳେ ପୁରେକ ନିର୍ମାଣ
ବଚନେ ନୁହଇ କହି
ପାଦପଦ୍ମ ବେନି ପଙ୍କଜ ହେବାରୁ
ଭକତେ ଅଛନ୍ତି ବହି ।। ୨୩ ।।

ତୁମ୍ଭେଅବା ବୋଲ କଳାପଙ୍କ ବୋଲି
ଅଟଇ କେମନ୍ତ ଦ୍ରବ୍ୟ
ସେକଥା ତୁମ୍ଭଙ୍କୁ ବୁଝାଇ କହିବା
ଶୁଣ ଗୋପାଙ୍ଗନା ସର୍ବ ।। ୨୪ ।।

ଭକ୍ତ ବନ୍ଧୁଙ୍କର ପଙ୍କଜ ରୂପକୁ
ଭକତେ ଅଛନ୍ତି ଧରି
ତା ଠାରୁ ଆହୁରି ଏକପୁର ନାହିଁ
ଶୁଣ ଗୋପାଳଙ୍କ ନାରୀ ।। ୨୫ ।।

ଆପଣାର ଯଶ ଭକତଙ୍କୁ ଦେଲେ
ଭେଦାଭେଦ ନାହିଁ କିଛି
ଜୀବ ଆତ୍ମା ଦୁଇ ଭିନ୍ନା ଭିନ୍ନ ନାହିଁ
ନିର୍ଭେଦ ହୋଇଣ ଅଛି ।। ୨୬ ।।

ଏମନ୍ତ ବଚନ ଗୋପୀମାନେ ଶୁଣି
ସାନନ୍ଦରେ ମଗ୍ନ ହେଲେ
ନମସ୍କାରିଲୁ ବୋଲି ବେନିକର ଯୋଡ଼ି
ଉଦ୍ଧବ ପାଦେ ଲୋଟିଲେ ।। ୨୭ ।।

ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ
ନାଶିଲ ଜନ୍ମର ଖେଦ
ତୁମ୍ଭେ ଏହି କଥା କେମନ୍ତେ ଜାଣିଲ
ସପତ ପାତାଳ ଭେଦ ॥ ୨୮ ॥

ଉଦ୍ଧବ ବୋଇଲେ ଏକଦ୍ଦିନେ ଆମ୍ଭେ
ପ୍ରଭୁଙ୍କ ସଙ୍ଗରେ ଥିଲୁଁ
ସ୍ନାନ ନିତ୍ୟକର୍ମ ଭୋଜନ ସାରଣ
ନଗର ଭ୍ରମଣେ ଗଲୁଁ ॥ ୨୯ ॥

ମଣିମା ବୋଲଣ ସମସ୍ତେ ଡ଼ାକନ୍ତି
ସିଂହଦ୍ୱାରେ ଉଭାହୋଇ
ପ୍ରଭୁ ପଦଣ୍ଡରେ ବଳେ କଲାବେଳେ
ସମର୍ପିଲେ ଭୁଜ ଦୁଇ ॥ ୩୦ ॥

ଚନ୍ଦ୍ରେ ଉପୁକର ଶ୍ରୀଭୁଜ ଯୁଗଳ
ସ୍ୱହସ୍ତେ ଚୋଳ ଧଇଲ
ମୋଠାରୁ ଭକତ କେହିନାହିଁ ବୋଲି
ମନରେ ଗର୍ବ ବହିଲ ॥ ୩୧ ।

ଆପଣା ମନରେ ଏମନ୍ତ ପାଞ୍ଚିଲି
କେହି ମୋତେ ନୁହେ ସର
ଦୟା ନଥିଲେ କି ଭୁଜ ସମର୍ପନ୍ତେ
.ବ୍ରହ୍ମାଣ୍ଡ ଠାକୁର ହର ॥ ୩୨ ॥

ଧନ୍ୟ ମୋ ଜୀବନ ଏତେ ବଡ଼ ପୁଣ୍ୟ
ପ୍ରଭୁଙ୍କ କର ବହିଲି
ଭକ୍ତଙ୍କର ଶ୍ରେଷ୍ଠ ନୋହିଲେ କେମନ୍ତ
ଶ୍ରୀଭୁଜ ଭାର ସହିଲି ॥ ୩୩ ॥

ମୋର ମନ କଥା ହୃଦୟ ମଧ୍ୟରେ
ଜାଣିଲେ ଶାରଙ୍ଗଧର
ଅନ୍ତର୍ଯ୍ୟାମୀ ନାଥ ମନକଥା ଶୁଣି
ଝିଙ୍କୁ କାଢ଼ିନେଲେ କର ॥ ୩୪ ॥

ଶ୍ରୀକୃଷ୍ଣ ବୋଇଲେ ଶୁଣହେ ଉଦ୍ଧବ
ମନରେ ଗରବ କଲୁ
ଅଳ୍ପ କଥାକୁ ତୁ ମନେ ଗର୍ବ ରଖୁ
ହୃଦରେ କିଛି ନ ଭାଳୁ ॥ ୩୫ ॥

ଶ୍ରୀଭୁଜ ମହିମା ଯେମନ୍ତ ଅଟଇ
ତୁମ୍ଭେତ ତାହା ନ ଜାଣ
ଗୁରୁକୁ ଗୁରୁର, ଲଘୁକୁ ଲଘୁଭ
ଭୁଜର ଏମନ୍ତ ଗୁଣ ॥ ୩୬ ॥

ତୁମ୍ଭେ ଯେ କହିଲ ମୁଁ ବଡ଼ ନୋହିଲେ
ଭୁଜବହି ନ ପାରନ୍ତି
ତୁମ୍ଭଠାରୁ ମୋର କେତେକ ଭକତ
ମହୀମଣ୍ଡଳେ ଅଛନ୍ତି ॥ ୩୭ ॥

ତାହାଙ୍କ ମହିମା ନ ଯାଣଇ ବ୍ରହ୍ମା
ବଚନେ ନହଇ କହି
ଅଶେଷ ବ୍ରହ୍ମାଣ୍ଡ ମୋତେ ଆଶ୍ରେକଣ
ସମସ୍ତେ ଅଛନ୍ତି ରହି ॥ ୩୮ ॥

ଭକ୍ତଙ୍କର ବନ୍ଧୁ ଦୟାମୟ ସିନ୍ଧୁ
ଅନୁଗ୍ରହ କଲେ ଯେଣୁ
ହେଉଦନ ଶ୍ରୀକୃଷ୍ଣ ମୋତେ ଡାକକର
ବିସ୍ତାର କହିଲେ ତେଣୁ ॥ ୩୯ ॥

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ପ୍ରଭୁଙ୍କ ଭକତ ଗୁଣ
ତୁମ୍ଭେ ଯେଉଁ କଥା ମୋତେ ପଚ୍ଚରିଲ
ବିସ୍ତାର କହିଲି ଜାଣ ॥ ୪୦ ॥

ଗୋପୀଏ ବୋଇଲେ ଶ୍ରୀକୃଷ୍ଣ ଚରିତ
ଯେତେକ କହିଲ ତୁମ୍ଭେ
କୋଟିଏ ଜନ୍ମର ପାପ କ୍ଷୟଗଲା
ନିସ୍ତାର ପାଇଲୁଁ ଆମ୍ଭେ ॥ ୪୧ ॥

ଯେତେ କଥା ତୁମ୍ଭେ ବସ୍ତୁର କହିଲ
ସବୁ ପୁରାଣ ଉକତ
ଅତି ଅଗୋଚର ମହିମା ବୁଝି
ଶୁଣି ହୋଇଲୁ ମୂକତ ॥ ୪୨ ॥
ତୁମ୍ଭ ବାକ୍ୟ ଶୁଣି ଆମ୍ଭେ ମନେ ଗୁଣି
ମିଟିଲା ମନୁ ସନ୍ଦେହ
କେତେ ଦିନ ଏବେ ଶ୍ରୀକୃଷ୍ଣ ଆସିବେ
ସେ କଥା ଆମ୍ଭଙ୍କୁ କହ ॥ ୪୩ ॥

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ଆମ୍ଭଙ୍କୁ କହିଲ ଯାହା
ବିଶ୍ୱ ମାୟାଧର ମହିମା ଅପାର
କେମନ୍ତେ ଜାଣିବା ତାହା ॥ ୪୪ ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି
ସବୁଠାରେ ଛନ୍ତି ପୂରି
ମନମଧ୍ୟେ ତାଙ୍କୁ ସର୍ବଦା ଭାବିଲେ
ପ୍ରସନ୍ନ ହୁଅନ୍ତି ହରି ॥ ୪୫ ॥

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ବିଗୃର କହଁା ନକର
କଅଁଳା ପୁଅକୁ କ୍ଷୀରକୁ ଦେଇଣ
ଚୁମ୍ବିଲେ ଯଥା କୁମର ॥ ୪୬ ॥
ସେହିମତି ସିନା ଆମ୍ଭର ମନକୁ
ନିବାଣ କରନ୍ତି ସେହୁ
ନିଦାନ ମୂଳକୁ ବଧି ଦିଅ ତୁମ୍ଭେ
ଏତେ ଦୁଷ୍ଟପଣ ନୋହୁ ॥ ୪୭ ॥
ଏ ତୁମ୍ଭର ବାଣୀ ସୁଧାରସ ମଣି
କେତେହେଁ ଶୁଣିବା ଛଟା
ବେଦ ଶାସ୍ତ୍ର ପ୍ରାୟେ ଗୁନ୍ତାଏ କହିଲ
ଆମ୍ଭଙ୍କୁ ଲାଗିଲା ଚଟା ॥ ୪୮ ॥

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ନଜାଣି କହିଲ ମନ୍ଦ
ବ୍ରହ୍ମା ନଥିଲେ ଯେ ସଂସାର ନଥାନ୍ତା
ଦେବଙ୍କୁ କିପାଁଇ ନିନ୍ଦ ॥ ୪୯ ॥

ବ୍ରହ୍ମା ବିଷ୍ଣୁ ରୁଦ୍ର ଏ ତିନ ଦେବତା
ଅନାଦି ସୃଷ୍ଟିରୁ ଥିରି
ତାହାଙ୍କୁ କେମନ୍ତେ ନିନ୍ଦା କରୁଅଛ
ତୁମ୍ଭେ ବୋଲିବାକୁ ଡରି ॥ ୫୦ ॥

ବିଧାତା ରଚନା ସମସ୍ତ ଚରିତ
ତାବିନୁ ସଂସାର କାହିଁ
ତୁମ୍ଭ ମୁଖନୁ ଯେ ଏମନ୍ତ ଶୁଣିଲୁଁ
କେ ଅବା ନିନ୍ଦିବ କାହିଁ ॥ ୫୧ ॥

ଦେବତାଙ୍କ ଭ୍ରାତା ଈଶ୍ୱର ଅଟନ୍ତି
ସେହି କି ହୋଇଲେ ସାନ
ମାତୃ ଦୋହ କରି ମହାଦୋଷ ଲଭି
ସାଧିଲେ ସେ ବ୍ରହ୍ମଜ୍ଞାନ ॥ ୫୨ ॥

ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ
ଅନ୍ୟେ ଆମ୍ଭ କାର୍ଯ୍ୟ ନାହିଁ
ଈଶ୍ୱର କେମନ୍ତେ ମାତୃ ଦ୍ରୋହ ହେଲେ
ସେ କଥା କହ ଗୋସାଇଁ ॥ ୫୩ ॥

ଦେବଙ୍କ ଉପରେ ମହାଦେବ ନାମ
ଜଗତେ ହୁଏ ବିଖ୍ୟାତ
ଏଡେ ପ୍ରଭୁ ହୋଇ ମନ୍ଦକର୍ମ କଲେ
କହେ ମୋ ପ୍ରାଣର ନାଥ ॥ ୫୪ ॥

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ବ୍ରହ୍ମ ପୁରାଣର କଥା
କାହାରି ଠାରେ ମୁଁ ବ୍ୟାଖ୍ୟା କରିନାହିଁ
ଏ ମହା ଗୁପତ ବାର୍ତ୍ତା ॥ ୫୫ ॥

ତୁମ୍ଭେ ଯେବେ କଥା ସୁକ୍ଷଣେ ଶୁଣିବ
କହିବା ତହିଁର ବାଣୀ
ପୁରାଣ ପ୍ରମାଣେ ତୁମ୍ଭଙ୍କ କହିବୁଁ
ଆମ୍ଭେ ଯେତେ ଦୂର ଜାଣି ॥ ୫୬ ॥

ଛିତି ଉତପତ୍ତି ପ୍ରଳୟ ହୋଇ ଯେ
ବିକାଶିଲ ଶୂନ୍ୟମୟ
ସଚରାଚର ଜୀବଜନ୍ତୁ ଯେତେକ
ସମସ୍ତେ ହୋଇଲେ କ୍ଷୟ ॥ ୫୭ ॥

ଏକମାତ୍ର ପ୍ରଭୁ ଅନାଦି ରହିଲେ
ଅନ୍ନପୂର୍ଣ୍ଣା ସଙ୍ଗତରେ
ବିବିଧ ପ୍ରକାରେ ବିହାର କଲେ ସେ
ପୀଡ଼ାପାଇ ପଞ୍ଚଶରେ ॥ ୫୮ ॥

ତାଙ୍କ ଅଙ୍ଗୁ ରେତ ହୁଅନ୍ତେ ସ୍ଖଳିତ
କରେ ତାକୁ ତୋଳିଧରି
ନଖଅଗ୍ରେ ତିନ ଗାର କାଟିଦେଲେ
ଗାୟତ୍ରୀ ମନ୍ତ୍ର ଉଚ୍ଚାରି ॥ ୫୯ ॥

ବ୍ରହ୍ମାର ଗାୟତ୍ରୀ ବିଷ୍ଣୁର ଗାୟତ୍ରୀ
ଶିବ ଗାୟତ୍ରୀକୁ ଘେନି
ମନ୍ତ୍ର ଆରୋପଣ ଲୟ କରି ତହିଁ
ଜାତକଲେ ପୁତ୍ର ତିନି ॥ ୬୦ ॥

ବ୍ରହ୍ମାଙ୍କୁ ବୋଇଲେ ତୁ ଯାଇ ହୋଇବୁ
ଜଗତ ଜନଙ୍କ ପିତା
ବିଷ୍ଣୁଙ୍କୁ ବୋଇଲେ ତୁମ୍ଭଙ୍କୁ ଲାଗଇ
ବ୍ରହ୍ମାଣ୍ଡ ପାଳିବା ଚିନ୍ତା ॥ ୬୧ ॥

ଈଶ୍ୱର ବୋଲିଣ ଯେଉଁ ପୁତ୍ର ଗୋଟି
ବେଦରେ ଅଟଇ ସାନ
ମାତାଙ୍କ ସନ୍ନିଧେ ଲୁକାଯେ଼ଁ ମାଗିଲେ
ପଞ୍ଚମୁଖ ତ୍ରିଲୋଚନ ॥ ୬୨ ॥

ଏହିମତେ କେତେ ଯୁଗ ବହିଗଲା
କିଛି ନକଲେ ବିଗ୍ରହ
ଜଗତର ମୁଖେ ନିନ୍ଦା ବାଣୀ ଶୁଣି
ଯେକଥା ଛାଡ଼ିଲେ ହର ।। ୬୩ ।।

ମାତା ମୁଖ ଚାହିଁ ବିଷ୍ଣୁ କୋପବହ୍ନି
କହିଲେ ଅନାଦି ରାମା
ଏଡ଼େ ପ୍ରଭୁଙ୍କର ନାରୀ ହୋଇ ତୁମ୍ଭେ
ହୋଇଲ ବିଟପୀ ବାମା ।। ୬୪ ।।

ବାଳକ ସ୍ୱଭାବ ଅଟେ ଶିବଙ୍କର
ତୁମ୍ଭେଅଟ ମହାତ୍ମାମା
ମାତା ହୋଇ ପୁତ୍ରେ ନିଷେଧ ନକଲ
ଧିକ ତୁମ୍ଭଙ୍କୁ ଜନନୀ ।। ୬୫ ।।

ବିଷ୍ଣୁଙ୍କ ବଚନେ ଆଦିମାତା ବୋଲେ
ଶୁଣ ହେ ବାଳକ ଶିଷ
ପ୍ରାଣୀ ମାନଙ୍କର ପ୍ରକୃତି ଚଞ୍ଚଳ
ତହିଁକି କରିବା କିସ ।। ୬୬ ।।

ତୁ ଆମ୍ଭ ନନ୍ଦନ ସୁବୁଦ୍ଧି ସୁଜ୍ଞାନ
ଦୟାନିଧି ଦିବ୍ୟଚକ୍ଷୁ
ମୋହର ପ୍ରକୃତି ମୋତେ ବଳାଇଲା
ମୋତେ ତୁ କିପାଇଁ ବାଛୁ ।। ୬୭ ।।

ମୋତେ ତୁ ବୃଥାରେ ନିନ୍ଦା କଲୁ ଯେବେ
ତୋତେ ପଡ଼ୁ ମୋର ଶାପ
ଶତେ ଜନ୍ମଯାଏ ପ୍ରସବ ପଥରେ
ଜନ୍ମିଲଭ ଶୋକ ତାପ ।। ୬୮ ।।

ଏତେ ବୋଲି ମାତା ପଛକୁ ନ ଚାହିଁ
ତତକ୍ଷଣେ ଶାପ ଦେଲେ
କହୁଁ କହୁଁ ଦେବୀ ଉଗ୍ରୋଧ ଗୁଡ଼ିଣ
ଅନ୍ତର୍ଦ୍ଧାନ ହୋଇଗଲେ ।। ୬୯ ।।

ଆଦ୍ୟ ମାତାଙ୍କର ଅନ୍ତର୍ଦ୍ଧାନ ଦେଖି
ତାପକଲେ ହୃଷୀକେଶ
ବ୍ରହ୍ମାଙ୍କୁ ବୋଇଲେ ଆଉ କହିଁ ଥିବା
ବୈକୁଣ୍ଠକୁ ଯିବା ଆସ ।। ୭୦ ।।

ଏତେ ବୋଲି ପ୍ରଭୁ ଜ୍ୟେଷ୍ଠ ଭ୍ରାତା ସେନ
ବଜେ କଲେ ପଦ୍ମଆଖି
ଈଶ୍ୱରଙ୍କ ମୁଖ ଦୁହେଁ ନ ଚାହିଁଲେ
ଅଲଙ୍ଘିତ କର୍ମ ଦେଖି ।। ୭୧ ।।

ଦେବାଧି ଦେବଙ୍କ ଠାକୁର ହୋଇଣ
ଏଡେ ହୀନ କର୍ମ କଲ
ଧିକ ହେଉ ତୁମ୍ଭ ଈଶ୍ୱରର ପଣ
ପୋଡ଼ିଯାଉ ବୀର୍ଯ୍ୟ ବଳ ।। ୭୨ ।।

ଆମ୍ଭେ ବେନି ଭାଇ ତୋ ମୁଖ ନ ଚାହିଁ
ଯାଉଅଛୁ ସ୍ୱର୍ଗପୁର
ତୁ ଏବେ କାହାର ମୁଖ ନ ଚାହିଁବୁ
ଅଗ୍ନି ଜାଳ ପଞ୍ଚେ ମର ।। ୭୩ ।।

ବ୍ରହ୍ମାଙ୍କର ବାଣୀ ସଦାଶିବ ଶୁଣି
ଫେଡ଼ି ନ କହିଲେ କଥା
ଅନ୍ତର୍ଗତେ ପୁଣି ଦେବ ଶିରୋମଣି
ପାଇଲେ ବହୁତ ବ୍ୟଥା ।। ୭୪ ।।

ଈଶ୍ୱର ବୋଇଲେ ଅନେକ ଧିକ୍‌କାର
କଲେ ମୋତେ ଅଷ୍ଟଚକ୍ଷୁ
ତାହାଙ୍କୁ ବୋଇଲେ ଆଉ କସ ହେବ
ଆମ୍ଭେ ଯାହା ଅର୍ଜିଅଛୁ ।। ୭୫ ।।

ଏତେ ବୋଲି ପୁଣି ଅମର ପୁରକୁ
ବଜେକଲେ କାଶୀବାସୀ
ଦେଖିଲେ ସ୍ୱର୍ଗରେ ସୁଧର୍ମା ସଭାରେ
ଦେବଗଣେ ଛନ୍ତି ବସି ।। ୭୬ ।।

ଈଶ୍ୱରଙ୍କୁ ଗୃହିଁ ହେଠମାଥ ହୋଇ
ରହିଲେ ଦେବତା ବୃନ୍ଦ
ବୋଇଲେ ଏ ପାପୀ ମୁଖ ନ ଗୃହିଁବା
ମାତାଙ୍କୁ କରଛୁ ମନ୍ଦ ।। ୭୭ ।।

ହରି ହରି ବୋଲି ଗୋବିନ୍ଦ ମୁରାରି
ଧର୍ମଙ୍କୁ କରନ୍ତି ସାକ୍ଷୀ
ଏକକୁ ଆରେକ ମୌନବ୍ରତ ହୋଇ
ସମସ୍ତେ ବୁଜିଲେ ଆକ୍ଷି ।। ୭୮ ।।

ଦେବତାଙ୍କ ଗତି ଦେଖି ପଶୁପତି
ରହିଲେ ମଉନ ଭାବେ
ବୋଇଲେ ଏମାନେ ମରଣୁ ବଳିଲା
କି ବୁଦ୍ଧି କରିବା ଏବେ ।। ୭୯ ।।

ଧର୍ମ ପୁରାଣକୁ ବିଚାର କରନ୍ତେ
ସଂସାର ବନ୍ଧାରେ ମଳି
ଈଶ୍ୱର ବୋଇଲେ କାହିଁଅଛୁ ପାର
ଅଛହିଁ ଅମାନ୍ତି କଲି ।। ୮୦ ।।

ଏହି ତିନି ପୁର ମଧ୍ୟରେ ଆମ୍ଭଙ୍କୁ
ରକ୍ଷିବାକୁ କେହିନାହିଁ
ଏକମାତ୍ର ପ୍ରଭୁ ଅନାଦି ଅଛନ୍ତି
ତାହାଙ୍କୁ କହିବ ଯାଇଁ ।। ୮୧ ।।

ସେ ପାପୀମାନଙ୍କ ମାନ ଉଦ୍ଧାରଣ
ବିକଟ ପଙ୍କଜ ତୋଳା
ଦୁରିତ ନାଶନ ତାହାଙ୍କ ମହିମା
ଭବ ଜଳଧିକ ଭେଳା ।। ୮୨ ।।

ଅଶେଷ ବ୍ରହ୍ମାଣ୍ଡ ଜୀବ ଅଧିପତି
ଅଣାକର ଜ୍ଞାନମୟ
ସେ ଅବା ବୋଲିବେ ପ୍ରାୟଶ୍ଚିତ କଲେ
ପାତକ ହୋଇବ କ୍ଷୟ ।। ୮୩ ।।

ଏତେବୋଲି କାଶୀବାସୀ ବୃଷେ ବସି
ପ୍ରଭୁଙ୍କ ସ୍ଥାମୂକୁ ଗଲେ
ଖଣ୍ଡେ ଦୂରେ ଥାଇ ବେନି କର ଯୋଡ଼ି
ଦଣ୍ଡ ପ୍ରଣାମ ବହିଲେ ।। ୮୪ ।।

ମହାଦେବଙ୍କର ଭକତି ଦେଖିଣ
ଆଜ୍ଞା ଦେଲେ ଜଗଦୀଶ
ଆମ୍ଭର କଲ୍ୟାଣ ପ୍ରାପ୍ତ ହେଉ ତୋତେ
ଉଠଉଠ ହେ ମହେଶ ।। ୮୫ ।।

ଈଶ୍ୱର ବୋଇଲେ ଶୁଣିମା ଅନାଦି
ତୁମ୍ଭର ସଞ୍ଚିତ ଯେବେ
ମାତାଙ୍କୁ ହରି ମୁଁ ମହାପାପୀ ହେଲି
ଷାହିକରି ପ୍ରଭୁ ଏବେ ।।। ୮୬ ।।

ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି
ତୁମ୍ଭେ ଯେ ସବୁରି ଈଶ
ତେଣୁକରି ପ୍ରଭୁ ଗୁହାରି କରୁଛି
ଅଧିକ କହିବି କିସ ।। ୮୭ ।।

ଈଶ୍ୱର ବଚନେ ଅନାଦି କହିଲେ
ଶୁଣ ତୁମ୍ଭେ ସଦାଶିବ
ଅଜ୍ଞାନେ ତୁମ୍ଭେ ଯେ ପାପକୁ ଅର୍ଜିଲ
ପୁରାଣ ଶୁଣିଲେ ଯିବ ।। ୮୮ ।।

ଶ୍ରୀମହା ପୁରାଣ ଗ୍ରନ୍ଥକୁ ଶୁଣିଲେ
ଏ ପାପ ହୋଇବ ଦହି
ଯେମନ୍ତ ପାପକୁ ଯେଉଁ ପ୍ରାୟଶ୍ଚିତ
ତାହା ଦେବା ତୋତେ କହି ।। ୮୯ ।।

ଅନାଦି ବୋଇଲେ ଶୁଣ ହେ ଈଶ୍ୱର
ବ୍ରହ୍ମହତ୍ୟା ଯେହୁ କରେ
କୋଟି ଅଶ୍ୱମେଧ ଯାଗ ପୂର୍ଣ୍ଣ କଲେ
ତେବେ ସେ ପାପରୁ ତରେ ।। ୯୦ ।।

ଅନାଦ୍ଧ ବୋଇଲେ ଶୁଣ ହେ ଈଶ୍ୱର
ମଦ୍ୟ ଯେଉଁ ଲୋକ ଖାଏ
ଗଙ୍ଗା ସାଗରରେ ସ୍ନାସଇ ସେ ଯେବେ
ତେବେ ସେ ପାତକ ଯାଏ ।। ୯୧ ।।

ଅନାଦ୍ଧ ବୋଇଲେ ଶୁଣ ହେ ଈଶ୍ୱର
ଗୋ ହତ୍ୟା କରନ୍ତ ଯେବେ
କୋଟିଏ ଗୋଧେନୁ ବିପ୍ରେ ଦାନଦେଲେ
ସେ ପାପ ଗୁଡ଼ଇ ତେବେ ।। ୯୨ ।।

ଅନାଦ୍ଧ ବୋଇଲେ ଶୁଣହେ ଈଶ୍ୱର
ଗର୍ଭ ନଷ୍ଟ ଯେ କରଇ
ଜଳ ଦାନଦେଲେ ସେ ପାପୁଁ ଉଦ୍ଧାରେ
ଶୁଣ ତୁମେ ମନ ଦେଇ ।। ୯୩ ।।

ଅନାଦ୍ଧ ବୋଇଲେ ଶୁଣ ହେ ଈଶ୍ୱର
କନ୍ୟାଙ୍କୁ ଯେହୁ ନନ୍ଧବ
ବସ୍ତ୍ର ପ୍ରୀତ୍ତ ଅର୍ଥେ ଧର୍ମ ଆଚରିଲେ
ତେବେ ସେ ପାପୁଁ ତରିବ ।। ୯୪ ।।

ଅନାଦ୍ଧ ବୋଇଲେ ଶୁଣ ହେ ଈଶ୍ୱର
ଯେହୁ ଶିଶୁ ପ୍ରାଣହରେ
ସେ ମହା ପାପରୁ ମୁକତ ହୁଅଇ
ପ୍ରାଣୀଙ୍କି ଯେବେ ନିସ୍ତାରେ ।। ୯୫ ।।

ଅନାଦ୍ଧ ବୋଇଲେ ଶୁଣହେ ଈଶ୍ୱର
ଋଣ ନ ଶୁଝିବ ଯେବେ
ଶିରକୁ କାଟିଣ ଅନଳେ ସ୍ନାମିଲେ
ସେ ପାପ ଗୁଟିବ ତେବେ ।। ୯୬ ।।

ଅନାଦ୍ଧ ବୋଇଲେ ଶୁଣହେ ଈଶ୍ୱର
ମିତ୍ରଠାରେ ଦ୍ରୋହହେଲେ
ମକର ମାସରେ ନିତ୍ତ ସ୍ନାନ କଲେ
ସେ ପାପ ଗୁଡ଼ଇ ଭଲେ ।। ୯୭ ।।

ଅନାଦ୍ଧ ବୋଇଲେ ଶୁଣହେ ଈଶ୍ୱର
ମହାବନ୍ଧନ ଯେ କାଟି
ଜଳ ଦାନକରି ଧର୍ମ ଆଚରିଲେ
ହୁଅଇ ସେ ପାପଛୁଟି ।। ୯୮ ।।

ଅନାଦ୍ଧ ବୋଇଲେ ଶୁଣହେ ଈଶ୍ୱର
ଗୁପତ ଦବ୍ୟ ବଚନ
ମାତୃ ହରଣ ମହାପାପ ଛୁଟଇ
ସାଧିଲେ ଯେ ବ୍ରହ୍ମଜ୍ଞାନ ।। ୯୯ ।।

ଅନାଦ୍ଧ ବଚନେ ଈଶ୍ୱର ବୋଇଲେ
ଶୁଣିମା ହିଦଶ ସାଇଁ
ଅତ ଦୁସ୍ତର ଯେ ଏହ୍ନ ବ୍ରହ୍ମଜ୍ଞାନ
କେମନ୍ତେ 'ସାଧିବ ମୂହିଁ ।। ୧୦୦ ।।

କେମନ୍ତେ ଆସନ କେଉଁମତେ ଧ୍ୟାନ
କେମନ୍ତେ କାହାକୁ ପୂଜା
ତୁମ୍ଭେ ମହାଗୁରୁ ମୁଁ ତୁମ୍ଭର ଶିଷ୍ୟ
କହନ୍ତୁ ଦେବାଧି ରାଜା ।। ୧୦୧ ।।

ସୁରନର ବ୍ରହ୍ମା ଏମାନେ ସେବିଲେ
ଯେଉଁ ପାଦପଦ୍ମ ଦୁଇ
ତୁମ୍ଭବିନା ମୋର ଅନ୍ୟ କେହିନାହିଁ
ପାରିଲେ ରଖ ଗୋସାଇଁ ।। ୧୦୨ ।।

ଅନାଦ୍ଧ ବୋଇଲେ ଶୁଣହେ ଈଶ୍ୱର
ଦୂରିତ ଯେବେ ଦହିବୁ
ମହାବ୍ରହ୍ମଜ୍ଞାନ ଉପଦେଶ ଦେଇ
କର୍ଣ୍ଣମାର୍ଗରେ କହିବୁ ।। ୧୦୩ ।।

ଏମନ୍ତ ବୋଲଣ ଅନାଦ୍ଧ ପୁରୁଷ
ସୁଫଳ ବାଞ୍ଛାକୁ କଲେ
ଈଶ୍ୱରଙ୍କ କର୍ଣ୍ଣେ ମନ୍ତ୍ର ଉଚ୍ଚାରଣ
ପରମ ଦୀକ୍ଷାକୁ ଦେଲେ ।। ୧୦୪ ।।

ଅନାଦି ବୋଇଲେ ଶୁଣହେ ଈଶ୍ୱର
ପବନ ହୋଇଲା କର୍ତ୍ତା
ଗୁରୁଙ୍କ ଦର୍ଶନେ ପାପ ନାଶଗଲା
ଏବେ ସାଧ ବ୍ରହ୍ମଜ୍ଞାନ ।। ୧୦୫ ।।

ମୂଳର କମଳ ଚ୍ଚର ପାଖୁଡ଼ା ଯେ
ମେଘନାଳେ ମନଭେଳା
ନାଶାବାୟୁ ଛିଦ୍ର ତ୍ରିବେଣୀ ସ୍ଥାନରେ
ତପଟେ ରହେ ଅଙ୍ଗୁଳା ।। ୧୦୬ ।।

ତଳର କମଳ ଛ ଗୋଟା ପାଖୁଡ଼ା
କହିବା ତହିଁର ଗତ
ଶକୁନକ ଯେନ ଆସନେ ବସିଛ
ବନ୍ଧ ଭୁଣ୍ଡ ଗଣପତ ।। ୧୦୭ ।।

ତାହାର ତଳରେ ଅଷ୍ଟମ ପାଖୁଡ଼ା
ଲିଙ୍ଗ କମଳର.ସାଜ
ଏହା ହେତୁ କର ବୋଲଣ ବୋଇଲେ
ଦେବତାଙ୍କୁ ଦେବରାଜ ।। ୧୦୮ ।।

ନାଭିର କମଳ ଅଟେ ଦଶଦଳ
ବ୍ରହ୍ମା ସାବିତ୍ରୀଙ୍କ ସ୍ଥାନ
ହୃଦର କମଳ ଦ୍ୱାଦଶ ପାଖୁଡ଼ା
ଲକ୍ଷ୍ମୀ ଯେନ ଭଗବାନ ।। ୧୦୯ ।।

ତାହାର ତଳରେ ଷୋଡ଼ଶ ପାଖୁଡ଼ା
କଣ୍ଠ କମଳରେ ସ୍ଥିତ
ମାଳ କଣ୍ଠେଶ୍ୱର ପାର୍ବତୀଙ୍କି ଯେନ
ପରମ ସାନନ୍ଦ ମତ ।। ୧୧୦ ।।

ତାହିଁ ଦଳ ବେନ ହଂସ ଅଛି ଯେନ
ବଚନେ ନୁହଇ କହି
ସିଦ୍ଧି ବୋଲି କହ ଏ ବେନ ଅକ୍ଷର
ଶୂନ୍ୟରେ ଅଛନ୍ତି ରହି ।। ୧୧୧ ।।

ପୁରେ ପୁରେ ପଶି ଖୋଜ ଏମାନଙ୍କୁ
ଦୃଢ଼ ଆସନରେ ବସି
ମନ ଚୈତନକୁ ଦୃଢ଼ତର କର
ପଶ୍ଚିମ କର୍ଣ୍ଣରେ ପଶି ॥ ୧୧୨ ॥
ସହସ୍ର କମଳ ଦଳ ଅଛି ଯହିଁ
ତହିଁ ଯୋଗକର ଲୟ
ଆପଣାରଠାରେ ଆପଣାକୁ ଦେଖ
ପୂର୍ଣ୍ଣାନନ୍ଦ ଜ୍ୟୋତିର୍ମୟ ॥ ୧୧୩ ॥
ଉଡ଼ନ୍ତା ପକ୍ଷୀକୁ ଧର ନ ମାରବ
ଜନ୍ତୁ ନ କରବ ବଧ
ମାତୃ ଦ୍ରୋହ ରୂପ ପାପ ନାଶ ଯିବ
ଏହି ପ୍ରକାରରେ ସାଧ ॥ ୧୧୪ ॥
ଏମନ୍ତେ ତାହାକୁ ଜ୍ଞାନ ପଥ କହି
ପ୍ରଭୁ ହେଲେ ଅନ୍ତର୍ଦ୍ଧାନ
ଗଙ୍ଗାର କୂଳକୁ ଯାଇଁ ବିଶ୍ୱନାଥ
ଗୁରୁଙ୍କୁ କଲେ ଦର୍ଶନ ॥ ୧୧୫ ॥
ଅନାଦି ପଞ୍ଚମ ଇନ୍ଦ୍ରିୟ ନିରୋଧି
ମନ୍ତ୍ର ସିଦ୍ଧି କଲେ ଯେଣୁ
ଜ୍ଞାନ ଅନଳରେ ପାପକୁ ଦହଣ
ମୁକତି ଲଭିଲେ ତେଣୁ ॥ ୧୧୬ ॥
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ଅନାଦି କହିଲେ ଯାହା
ଶିବ ଜ୍ଞାନ ମାର୍ଗେ ଅମର ହୋଇଲେ
ତୁମ୍ଭେ ହେତୁକର ତାହା ॥ ୧୧୭ ॥
ଜ୍ଞାନମାର୍ଗେ ସିଦ୍ଧ ହେଲେ ଦେବବୃନ୍ଦ
ଏଥିକୁ ନକର ହେଳା
ବୈକୁଣ୍ଠ ପାବଚ୍ଛ ଦୂଟିତ ଦହନ
ଅର୍ଣ୍ଣବେ ଦିଅନ୍ତ ଭେଳା ॥ ୧୧୮ ॥
ତୁମ୍ଭେ ଗୋପୀମାନେ ସ୍ଥିରକର ମନ
ଆମ୍ଭେ ଯାଉଅଛୁ ଚଳ
ମଧୁବନେ ଯାଇଁ ଦର୍ଶନ କରବୁଁ
ଧାନବନ୍ଧୁ ବନମାଳୀ ॥ ୧୧୯ ॥

ତୁମ୍ଭଙ୍କୁ ଦେଖିଣ ସୁଖୀ ମୁଁ ହୋଇଲି
ଅଧିକ କହିବି କେତେ
ଭକ୍ତିରେ ଭକ୍ତ ମୁଁ ଅଟେ ମହାପାପୀ
ଦୟା କରଥିବ ମୋତେ ।। ୧୨୦ ।।

ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ
ଆମ୍ଭେମାନେ ଅଟୁ ମନ୍ଦ
ଶ୍ରୀକୃଷ୍ଣଙ୍କ ଗୁଣ କେବେ ସୁମରିବା
ଦିବା ନିଶି ନାହିଁ ନିଦ ।। ୧୨୧ ।।

ଆମ୍ଭପାଇଁ ତୁମ୍ଭେ ପରିଶ୍ରମ କରି
ପ୍ରଭୁଙ୍କୁ କହିବ ଯାଇଁ
ବୋଲିବ ତୁମ୍ଭଙ୍କୁ ଗୋପନାରୀମାନେ
ବାରତା ଅଛନ୍ତି ଦେଇ ।। ୧୨୨ ।।

ଭକ୍ତ ହୋଇ ଆମ୍ଭେ ଅପରାଧ କଲୁ
ପ୍ରଭୁ ତା ନକଲେ କ୍ଷମା
ଯାହା ଦେଖି ଯାଇ ମଥୁରା ରହିଲେ
ନମାଡ଼ିଲେ ଗୋପସୀମା ।। ୧୨୩ ।।

ପ୍ରଭୁ ହୋଇ କାହିଁ ବିଚାର ନକଲେ
କେଉଁ ଦୋଷ ଆମ୍ଭେ କଲୁ
ତୁମ୍ଭେତ ଆମ୍ଭଙ୍କୁ ନିର୍ଗୁଣ କହିଲ
ବୃଥାରେ ଗଞ୍ଜି ହୋଇଲୁଁ ।। ୧୨୪ ।।

ଏକଥା ତାହାଙ୍କୁ ପ୍ରବୋଧି କହିବ
ବୁଝିବେ ସେହି ଯେମନ୍ତେ
ଯାହାକୁ ପୋଷଇ ତାହାକୁ ନାଶଇ
ଅଚ୍ଛୁକ ଶାସ୍ତ୍ରେ ଏମନ୍ତେ ।। ୧୨୫ ।

ତାହାଙ୍କୁ କହିବ ଯେବେ ନ ଆସିବେ
ତେବେ ଆମ୍ଭେମାନେ ଯିବୁ
ପାଦପଦ୍ମ ଥରେ ଦର୍ଶନ କରିଲେ
ଆମ୍ଭେମାନେ ମୁକ୍ତ ହେବୁଁ ।। ୧୨୬ ।।

ଉଦ୍ଧବ ବୋଇଲେ ଶୁଣ ଗୋପନାରୀ
ତୁମ୍ଭେ କହୁ ଅଛ ଯାହା
ତୁମ୍ଭମାନଙ୍କୁ ସେ ଅବଶ୍ୟ ଜାଣନ୍ତି
ଅନ୍ତର୍ଯ୍ୟାମୀ ଚକ୍ରବାହା ।। ୧୨୭ ।।

ଏବେ ତୁମ୍ଭେ ତାଙ୍କ ପାଦପଦ୍ମ ସେବ
ଆମ୍ଭେ ଯେ ଗମନ କରୁଁ
ଅଭୟ ଚରଣ ସରୋଜ ଦର୍ଶନେ
ଜନ୍ମର ଦୁରିତ ହରୁଁ ।। ୧୨୮ ।।

ଗୋପୀଙ୍କି ପ୍ରବୋଧି ଉଦ୍ଧବ ରଥରେ
ମଥୁରା ହେଲେ ପ୍ରବେଶ
ଘନବନ୍ଧୁ ପାଦେ ଶରଣ ମାଗିଣ
ଭାବେ କହେ କୃଷ୍ଣ ଦାସ ।। ୧୨୯ ।।

ଅମୃତ ପୟୋଧି ଶ୍ରୀକୃଷ୍ଣ ଚରିତ
ତାହାକୁ ଉପମା ନାହିଁ
ଗୁଣାର୍ଣ୍ଣବ ବୋଲି ଯାହାଙ୍କ ମହିମା
ବିଶେଷ କହିବା କାହିଁ ।। ୧୩୦ ।।

ଭକତଙ୍କ ହିତେ ମୋର ହୃଦଗତେ
ଉଦୟ ହୋଇଲା ଯାହା
ଶ୍ରୀଜଗନ୍ନାଥଙ୍କ କରୁଣା ନଥିଲେ
ମୁଁ କାହୁଁ ବର୍ଣ୍ଣିବି ତାହା ।। ୧୩୧ ।।

ସେ ପ୍ରଭୁ ଯହୁଁ ମୋ ହୃଦେ ବିଜେକଲେ
ପୂର୍ଣ୍ଣ ହେଲା ଏହୁ ପଦ
ସନ୍ଥଜନ ଆଗେ ସ୍ୱରୂପ କହିଲି
ବିଷୟୀ ବିଷକୁ ପଦ ।। ୧୩୨ ।।

ସାଧୁଜନମାନେ ବିଗୁର କରିଣ
ଦୋଷ ନଦେବେ ମୋର
ଘନକୃଷ୍ଣ ଦାସ ଭାବରେ ଭଣିଲେ
ଶ୍ରୀକୃଷ୍ଣ ପାଦେ କଙ୍କର ।। ୧୩୩ ।।

— X —

# ଧର୍ମ ପୁରାଣ

ଶ୍ରୀ ଗଣେଶାୟ ନମଃ

( ରାଗ ବଙ୍ଗଳାଶ୍ରୀ )

ଯୁଧିଷ୍ଠି ଦେବଙ୍କ ଶ୍ରୀମୁଖ ବଚନ
ଭୀମ ଆଗେ ପରକାଶ
ପିତୃକାର୍ଯ୍ୟ ଅର୍ଥେ ଯାଗ କରିବା
କୁବେର ପୁରେ ଯାଇଆସ ।।

ଆପଣେ ଶ୍ରୀହରି ଯମଙ୍କୁ ନିସ୍ତାରି
ଆଣିଲେ ପିତା ସନ୍ଦେଶ
ଶିଶୁମନ୍ତ କୃଷ୍ଣଦାସ ଭଣେ ହରି
ଦ୍ୱାରକା ପୁରେ ପ୍ରବେଶ ।।

ଭୀମଙ୍କୁ ଚାହିଁ ଯୁଧିଷ୍ଠି ନରସାଇଁ
ବୋଇଲେ କ୍ଷଣରେ ବାବୁ
ଯାଗଶାଳାରେ ଅନ୍ନଛତ୍ର ହୋଇବ
କୁବେର ଚାହିଁକ ଯିବୁ ।।

ବସିବୁ କନ୍ତରେ ହୋଇ ଧୀରମନ୍ତ
କହିବୁ ତୁ କଥା ପେଲ
ଲକ୍ଷେ ଭରଣ ଧାନ ଋଣ ମାଗିବୁ
ଆମ୍ଭେ ବୋଲୁଅଛୁଁ ବୋଲ ।।

ନପୁଣ ଆଜ୍ଞା କରଇ ଯେ ମୁରାରି
ଧନପତି ବଡ଼ଲୋକ
ଦେଲେ ନଦେଲେ ତୁନ ହୋଇ ଆସିବୁ
ମନେ ନ କରିବୁ ଦୁଃଖ ।।

ଯୁଧିଷ୍ଠିର ବାଣୀ ଭୀମସେନ ଶୁଣି
ପାଦେ ପ୍ରଣିପାତ କଲା
ଧର୍ମ ନୃପତଙ୍କ ଆଜ୍ଞା ଶିରେ ଘେନି
କୁବେର ତହିଁକି ଗଲା ॥
ଦେଖିଲା ପୁର ସେ ଅତ୍ୟନ୍ତ ସୁନ୍ଦର
ପଟାନ୍ତର ଦେବା ନାହିଁ
ସ୍ୱର୍ଗମର୍ତ୍ତ୍ୟ ତିନିଭୁବନ ପଦାର୍ଥ
ତୁଳ ହୋଇଅଛି ତହିଁ ॥
ଦିବ୍ୟ ଭବନ ମୁକୁତା ଝରମାନ
ହୀରା ମାଣିକ୍ୟ ବିକାଶେ
କୋଟି ଚନ୍ଦ୍ରମାଙ୍କ ଉଦେ ହୋଇଅଛି
ସେହି ପରକାର ଦିଶେ ॥
ସୁବର୍ଣ୍ଣର ଖମ୍ବ ଅତି ଅନୁପମ
ମାଣିକ୍ୟର ପୀଢ଼ ତଳ
ବିଶ୍ୱକର୍ମା ଲାଗି ନିର୍ମାଣ କରିଛି
ଯହିଁକି ଯେମନ୍ତ ସଜ ॥
ଦେଖି ମହାମତ୍ତ ହୋଇଣ ନୃପତି
ବିଚାରଇ ବୃକୋଦର
ଆଜ ମୋ ଜୀବନ ସୁଫଳ ହୋଇଲା
ଦେଖିଲି ଏ ଦିବ୍ୟପୁର ॥
ପିତାଙ୍କର କାର୍ଯ୍ୟ ସିଦ୍ଧ ହେବ ଆଜ
ନେବଇଁ ଅନେକ ଦ୍ରବ୍ୟ
ଯେତେବେଳେ ଯାହା ବିଚାର ଲୋଡ଼ିବା
ମିଳିଲା ହୋଇଛି ସବ ॥
ଏହି ରତ୍ନପୁର ଦେବଙ୍କ ଭଣ୍ଡାର
ପ୍ରତେ ପାଇଲି ମୋ ମନେ
କୁବେର ହୋଇ କେବଣ ମହାତ୍ମା
ନ ଦେଖିଲି ତ ନୟନେ ॥

---

ବୃକୋଦର — ଭୀମ ।
ବୃକନାମକ ଅଗ୍ନି ଯାହାଙ୍କ ଉଦରରେ ଅଛି ।

ଏହି କଥା ଭାଳି ଧୀରେ ପାଦ ଚାଳି
ଭିତରେ ପ୍ରବେଶ କଲା
ମନ୍ଦିର ଅଗଣାରେ ବଜେ ଧନପତି
ଷଣ୍ଢେ ଦୂରରୁ ଦଶିଲା ॥

ହେଠ ବଦନ ହୋଇଣ ଧନପତି
ପାକଶାଳାରେ କୁଞ୍ଚ
ଶିରେ ମୁଣ୍ଡାଇ ହାହାକାର କରି
ଥୋଇଛି ଆପଣେ ସଞ୍ଚ ॥

ଏମନେକ ଗାଡ ଦେଖିଣ ମାରୁତ
ଅତି ଚମତ୍କୃତ ହୋଇ
ମନେ ବିଚାରିଲା ଏପୁର ଭିତରେ
ଦରିଦ୍ର ଅଛି ତ ରହି ॥

ଏହେବ ଭଣ୍ଡାର ସୁବର୍ଣ୍ଣର ପୁର
ଅଷ୍ଟରତ୍ନେ ନିରମାଣି
ଏପୁର ଭିତରେ ଏତେ ଦରିଦ୍ରକୁ
ବିଧାତା ଥୋଇଛି ଆଣି ॥

ସୁନା ରୂପା ହୀରା ମାଣିକ୍ୟ ନଳା ଯେ
ଗଡ଼ାଗଡ଼ି ଯାଉଅଛି
ଏତେ ପଦାର୍ଥରୁ ଏତେ ଦରିଦ୍ରକୁ
ପାପତ ହୋଇଲା-କଛି ॥

କସ କରିବା କାହିଁକି ଏବେ ଯିବା
ମନେକଲା ମହାଚିନ୍ତା
କୁବେର ଏବେ କେଉଁଠାରେ ଅଛନ୍ତି
କେ ଦେବ ତଥ୍ୟ ବାରତା ॥

ଏମନ୍ତ ଚାହିଁ ବିମ୍ବପୁ ଧୁଙ୍କ ହୋଇ
ହୃଦରେ ବହନ୍ତେ ତମ
ଦେଖି ଧନପତି ମନରେ ଜାଣିଲେ
ଯୁଧିଷ୍ଠିର ଭାଇ ଭୀମ ॥

ହରଷ ହୋଇଣ ବହନ ଯାଇଣ
ଉତ୍ତର ପୁରରେ ପଶି
ଅଣ୍ଟିଧନ ନେଇ କୋଠିରେ ଥୋଇଣ
ବାରତା ପୁଚ୍ଛନ୍ତି ଆସି ॥

ବୋଇଲେ ବାପ ମନ ମଧ୍ୟରେ ତାପ
ପାଉଅଛ କିମ୍ପା ତୁମ୍ଭେ
ଚିହ୍ନି ନପାର ଯେ ବିମୁଖ ହେଉଛ
କୁବେର ଅଟୁଟି ଆମ୍ଭେ ॥

ଦେଖିଣ ମାରୁତ ହୋଇଣ ତୃପତ
ବୋଇଲେ ଶୁଣ କୁବେର
କନକ ପୁରେ ଅଧିକାରୀ ହୋଇଣ
ଏତେ ଦୁଃଖ କିମ୍ପା ତୋର ॥

ସ୍ମିତ ବଚନେ ଧନପତି ବୋଇଲେ
ଯାହା ପୁଚ୍ଛିଲ ହେ ତୁମ୍ଭେ
ଶ୍ରୀ ଜଗନ୍ନାଥଙ୍କ କୋଠ ଭଣ୍ଡାର ଏ
ରକ୍ଷାପାଳ ସିନା ଆମ୍ଭେ ॥

ଦିବ୍ୟ ବସନ ପାଣି ଦ୍ରବ୍ୟ ମାନଙ୍କେ
ସବୁରି କାରେଣି ଅଛୁ
ଯେତେବେଳେ ଯାହା ଲୋଡ଼ା ପଡ଼ିବଟି
ସ୍ୱାମୁରେ ନେଇ ତା ଖଟୁ ॥

ଶ୍ରୀ ଜଗନ୍ନାଥଙ୍କ ଯାହାଙ୍କୁ କରୁଣା
ତାହାଙ୍କୁ ଦିଅନ୍ତି ଦ୍ରବ୍ୟ ।
ବିନା ଆଜ୍ଞାରେ ତୃଣ ନ ହଲଇ
ସମ୍ଭାଳି ଥାଇ ମୁଁ ସବୁ ॥

ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି
ଯାହାଙ୍କୁ ଯେମନ୍ତ ଦାନ
ଏହି ଭଣ୍ଡାରୁ ପଡ଼ ଆଜ୍ଞା ହୁଅଇ
ଶୁଣ ତୁ ଯୁଧିଷ୍ଠି ସାନ ॥

ସ୍ୱର୍ଗମର୍ତ୍ତ୍ୟ ପାତାଳ ତ୍ରିଭୁବନପୁରେ
ଯେତେକ ପଦାର୍ଥ ସାର
ବହିଲେ ଦ୍ରବ୍ୟ କ୍ଷଳେହେଁ ନସରଇ
ଅଛିଦ୍ର କୋଠଭଣ୍ଡାର ॥

ଦେବାଧି ଦେବଙ୍କ ଉପରେ ଠାକୁର
ଶ୍ରୀଜଗନ୍ନାଥ ଗୋସାଇଁ
ତାହାଙ୍କ ବିନୁ ଏ ଭଣ୍ଡାର ପଦାର୍ଥେ
ଆନେ ଅଧିକାର ନାହିଁ ॥

ରାଜା ପରଜା ଚରାଚର ପ୍ରାଣୀଙ୍କି
ଯାହାଙ୍କୁ ଯେତେକ ଲେଖା
ବରାଦ ହୁଅଇ ଆରଦିନ ପାଇଁ
ପ୍ରଭାତୁ ହୋଏ ତନଖା ॥

ସେଦିନ ଯେ କେହି ପଡ଼ି ନ ପାଇଣ
କରିଥାଇ ଉପବାସ
କୋଠ କରଣ ଦଣ୍ଡ ମଣ୍ଡ ହୁଅଇ
ଠାକୁରଙ୍କ ମନେ ତ୍ରାସ ॥

ସ୍ଥାବର ଜଙ୍ଗମ ଯେ କୀଟ ପତଙ୍ଗ
ସର୍ବଘଟେ ପ୍ରାଣମଣି
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ
ଦୀନକୃଷ୍ଣ ଦାସଭଣି ॥

———

# ଦ୍ୱିତୀୟ ଅଧ୍ୟାୟ

ବିଷ୍ଣୁ ମାୟାଧର ମହିମା ଅପାର
କେ ଜାଣିବ ତାଙ୍କ ମାୟା
ଥିଲା ଲୋକଙ୍କରେ କୃପଣ ପଦାର୍ଥେ
ନଥିଲା ଲୋକଙ୍କୁ ଦୟା ॥

ଧନପତି ବାଣୀ ଏସନେକ ଶୁଣି
ଭୀମସେନ ପୁଚ୍ଛା କରି
କାହାର ପଦାର୍ଥ କେମନ୍ତ ପ୍ରକାରେ
କାହାକୁ ଦିଅନ୍ତି ହରି ॥

ପ୍ରକୃତ କାରଣ କରନ୍ତୁ ଶ୍ରବଣ
ଏହି ମୋର ନିବେଦନ
କୁବେର ବୋଲଇ ସାବଧାନେ ଶୁଣ
ଯୁଧିଷ୍ଠି ଦେବଙ୍କ ସାନ ॥

ତୁମ୍ଭେ ବୋଇଲ କାହାଦ୍ରବ୍ୟ କାହାକୁ
କେମନ୍ତେ ଦିଅନ୍ତି ହରି
ସେକଥା ତୋଆଗେ ବିସ୍ତାରି କହିବା
ବୁଝିବାକୁ ଭଲକରି ॥

ଦେବପୁର ବୋଲି ଏକଇ ଶାସନ
କୁଶଧର ନାମେ ରାଜା
ଦଶ ସହସ୍ର ଘର ଯେ ତହିଁ ଅଛି
ସର୍ବେ ହେ ବିପ୍ର ପରଜା ॥

ଅଠର କୋଶ ମାଡ଼ିଣ ସେହୁ ଦେଶ
ବସିଅଛି ସେହୁ ଗ୍ରାମ
ବ୍ରାହ୍ମଣ ଜଣେ ସେ ଶାସନରେ ଅଛି
କୃପଣ ପଣ୍ଡା ତା ନାମ ॥

ବାଡ଼ ବୁଢି ତାର ବହୁତ ବିସ୍ତାର
ଧନ ସମ୍ପଦ ଅନେକ
ଲୁଣ ବେଢ଼ିଧାନ ସୁନା ରୂପାମାନ
ଦେଇଥାଇ ରାଜ୍ୟଯାକ ॥
ଧନ ସଞ୍ଚୟ ବିଷୟେ ଦେଇ ଚିତ୍ତ
ଅନବ୍ରତ ବୁଲୁଥାଇ
ମାସକୁ ମାସ କଳନ୍ତର ସାଧିଇ
ଖାତକ ଘରକୁ ଯାଇ ॥
କଉଡ଼ଠାରେ ଉପ୍ରୋଧ ନାହିଁ ତାର
ଥିଲା ନଥିଲା ନଜାଣେ
ଟଙ୍କା ମୁଣ୍ଡରେ କୃଷପଣ ଘେନଇ
ଧାନଦେଢ଼ି ପରମାଣେ ॥
ଧର୍ମଶାସ୍ତ୍ର କେବେ ଶ୍ରବଣେ ନ ଶୁଣେ
ଜୀବରେ ନଥାଏ ଦୟା
ସମ୍ପତ୍ତି ପଟଳେ ନରସ୍ତରେ ଭୋଳ
ଘୋଟିଅଛି ବିଷ୍ଣୁ ମାୟା ॥
ଦରିଦ୍ର ଲୋକ ମାଗିଲେ ନ ଦିଅଇ
ଭୋକିଙ୍କି ନ ଦିଏ ଅନ୍ନ
ମୁଖରେ ସତ କେବେହେଁ ନକହଇ
ବିଫଳ କଲାକ ଜନ୍ମ ॥
ଦେବତା ବିପ୍ରଙ୍କୁ ଭକତି ନକରେ
ପୂଜା ନକରେ ଅତିଥି
କର୍ମ ଧର୍ମମାନ ସମସ୍ତ ତେଜିଣ
ଧନମଦେ ଥାଇ ମତି ॥
ପୁତ୍ର ଦୁହିତା ଗୋଟିଏ କୋଳେ ନାହିଁ
ଅପୁତ୍ରିକ ଦ୍ୱିଜ ଗୋଟି
ଗୁରୁ କର୍ଣ୍ଣେ ଆଦ ବେଳହୁଁ ନୋହିଲା
ସନ୍ଥ ଚରଣେ ନ ଖଟି ॥

କଳନ୍ତର — ସୁଧ

ଏମନ୍ତେ ଏକଦିନେ ସେ ଦ୍ୱିଜବର
ଗୋଜାପତ୍ର ଘେନି କର
ଖାତକ ଠାରୁ ଋଣ ସାଧି ଯିବାକୁ
ଘରୁ ହୋଇଲା ବାହାର ॥
ମନରେ କୋପ କରିଣ ମହାଦର୍ପେ
ଘରୁ ବାହାର ହୁଅଇ
ଦୂର ଦେଶକୁ ଗମନ କଲା ବିପ୍ର
ସଖା ସଙ୍ଗେ କେହି ନାହିଁ ॥
ଅଗମ୍ୟ ଘୋର ଗହନ ବିପିନରେ
ବହୁତ ପଥ ଅଇଲା
ଦେବ ଗିରି ବୋଲି ଏକଇ ପର୍ବତ
ନିଶାରେ ତହିଁ ରହିଲା ॥
ମନୁଷ୍ୟ ମାନଙ୍କ ଲେଶ ନାହିଁ ପାଶ
ଖୋଜି ନପାଇଲା କିଛି
ଗିରିବର ଶିଖ ଉପରେ ଦେଖିଲା
ସୁବର୍ଣ୍ଣ ମଣ୍ଡପେ ଅଛି ॥
ମାଣିକ୍ୟ ହୀରା ମୁକୁତାର ଝରା ତହିଁ
ମର୍କତର ସ୍ତମ୍ଭମାନ
ରୂପାର ବତା ସୁବର୍ଣ୍ଣ କାଣ୍ଡଶ୍ରେଣୀ
ଲାଗିଅଛି ଭିନ୍ନ ଭିନ୍ନ ॥
ଶ୍ୱେତ ଚାମର ମଣ୍ଡଣି ତା ଉପରେ
ପଟାନ୍ତର ନାହିଁ ମଞ୍ଚ
ପଦ୍ମରାଗ ହୀରା ଉପରେ ଲାଗିଛି
ଦେଖିବାକୁ ଦିବ୍ୟସଞ୍ଚ ॥
ସୁବର୍ଣ୍ଣର ତାଳ ଅତି ପରିମଳ
ମୁଁ କିସ କହିବି ଆଜ
ମିଥୁନ ମାସେ ବକୁଳ ପ୍ରାପ୍ତେ ତେଜ
ଦିଶୁଥାଇ ଦାଉ ଦାଉ ॥

---

ଗୋଜାପତ୍ର — ଦଲିଲ

କୋଟି ବ୍ରହ୍ମାଣି ଯେଉଣ ବିଶ୍ୱକର୍ମା
ନିର୍ମାଣିଛୁ ଅନୁପମ
ତେତିଶ କୋଟି ଦେବତା ସଙ୍ଗେ ଯେନ
ବିଜୟେ ପୁରୁଷୋତ୍ତମ ॥
ସ୍ୱର୍ଗମର୍ତ୍ତ୍ୟ ତିନି ଭୁବନ ଲୋକରେ
ପଡ଼ିଲା ବିଗୃର ମାନ
ଏହିକ୍ଷଣି ଆସ ଗୋପପୁର ଯିବା
ଦେଖିବାକ ଦିବ୍ୟସ୍ଥାନ ॥
କୋଠ କରଣକୁ ଛାମୁକୁ ଡକାଇ
ବୋଇଲେ ଜଗତ ପତି
କାଲି ପଡ଼ି ଘାତ କେମନ୍ତ ପ୍ରକାରେ
କଏ ସେ ପାଇ ନାହାନ୍ତି ॥
ପ୍ରଭୁ ବୋଇଲେ ତିନିପୁର ଲୋକରେ
ପଡ଼ି ନପାଇଲେ ଯେତି
ତଳପରେ ତାଙ୍କ ନାମ ବସାଅ ଯେ
କେମନ୍ତ ପ୍ରକାରେ ସେତି ॥
କେତେ କେତେ ଧର୍ମ କେତେକେତେ କର୍ମ
କେମନ୍ତ ପ୍ରକାରେ ସେବା
କାମ କ୍ରୋଧ ହିଂସା ଦୟା କ୍ଷମା କେତେ
ଏ କଥା ମାନ ବୁଝିବା ॥
ଶୁଣି କରଣ କରପତ୍ର ଯୋଡ଼ିଣ
ଜଣାଇଲେ ମହାବାହୁ
କେଉଁ ଭଗତ କଥା ଆଗେ କହିବି
ଶ୍ରୀମୁଖରେ ଆଜ୍ଞା ହେଉ ॥
ପ୍ରଭୁ ବୋଇଲେ ପାତାଳ ଭୁବନରେ
ଯେଉଁ ଦୁଇ ଖାର ଛନ୍ତି
ତାହାଙ୍କ କଥା ଆଗକରି କହ
ଯେ କ କ ବୃତ୍ତି କରୁଥାନ୍ତି ॥

---

କୋଠକରଣ — ଜଗନ୍ନାଥ ମନ୍ଦିରର କର୍ମଚାରୀ ବିଶେଷ ।

କେଉଁ ବୁଲେ ଜନମ ହୋଇଛନ୍ତି
କେଉଁ ବିଷୟେ ସରାଗ
ପ୍ରତିବଧି କରି ଏକଥା ଆମ୍ଭଙ୍କୁ
ବୁଝାଇ କହ ତୁ ଆଗ ॥

ପ୍ରଭୁଙ୍କ ବଚନେ କରଣ ବୋଇଲ୍
ଶୁଣିମା ପୁରୁଷୋତ୍ତମ
ସତ ସୁକୃତ ବୋଲି କରି ଗୋସାଇଁ
ସେ ଦୁଇ ଭାଇଙ୍କ ନାମ ॥

ମିଷକୁଳେ ଜାତ କୁଟୁମ୍ବ ପୋଷନ୍ତି
ନାନା ଦୁଃଖ କଷ୍ଟେ ପଡ଼ି
କଟକ ମନ୍ତ୍ରୀ ଦୁଇଭାଇ କାଢ଼ନ୍ତି
ଜାତିରେ ଅଟନ୍ତି ହାଡ଼ି ॥

ଦୁଃଖ ସୁଖ ବେଶ୍ୟା ଅତିଥି ଦିଅନ୍ତି
ଭକତ ଭାବକୁ ହିତ
ଛନ୍ଦମନ୍ଦ ମାୟା ହୃଦରେ ନଥାଇ
ପାଦପଦ୍ମେ ଏକାଚିତ୍ତ ॥

ବିଷ୍ଣୁ ଭକ୍ତିରେ ବିଶ୍ୱାସ ଥିବା ଲୋକଠାରେ
ତାହାଙ୍କର ପ୍ରୀତି
ଧର୍ମ କଥାକୁ ଆଗଭର ହୋଇଣ
ନ କରନ୍ତି ଅପକୀର୍ତ୍ତି ॥

ଏମନ୍ତେ ଏକ ଦିନକେ ବେନି ଭାଇ
ନାମ କୀର୍ତ୍ତନେ ପଶିଲେ
ହରି ନାମାମୃତ ରସ ସ୍ୱାଦ ପାଇ
ପାଦ ପଦ୍ମରେ ରମିଲେ ॥

କୁଟୁମ୍ବଙ୍କ କଥା ରୋଗ ଶୋକାବସ୍ଥା
ସମସ୍ତ ପାଶୋରି ଗଲ୍
ଏକ ଦିନେ ସେହି କଟକ ମଧ୍ୟରେ
ବିଦେଶୀ ଗୋଟିଏ ମଲ୍ ॥

ନଗ୍ର ଦଣ୍ଡୁଆସି ବୁଲିବୁଲି ଆସି
ଦେଖିଲା ତା ବେନ ଡୋଳେ
ଦଇବେ ସେ ଯେ ଆକ୍ଷ ନିର୍ମାକ୍ଷ ଲୋକ
ପଡ଼ିଛନ୍ତି ମଣ୍ଡପ ତଳେ ॥
ତହୁଁ କଟୁଆଳ କୋପେ ଅନର୍ଗଳ
ପାରୁଣ ଲୋକଙ୍କୁ ଘାଇ
ବୋଇଲା ବେନ ଭାଇଙ୍କର ବର୍ତ୍ତନ
ତଳପ ଦିଅ କଟାଇ ॥

ନଗ୍ର ଭିତରେ ମୃତପିଣ୍ଡ ପଡ଼ିଲା
ନ ଲାଗିଲା ତାଙ୍କୁ ଛନ୍ନ
ନିରନ୍ତରେ ଏବେ କାର୍ତ୍ତିନେ ପଶିଲେ
ସେବାକୁ କାହିଁଛି ମନ ॥
ଏତେ ବଚୁର ହୃଦରେ କୋପକରି
ଧାଡ଼କାରେ ଗଲା ଉଠି
ପଡ଼ ଭାତ ତାଙ୍କୁ କିଛିହିଁ ନଦେଲେ
କରଣ ତଳପୁ କାଟି ॥

ଘର ଦୁଆର ସହିତେ ତାହାଙ୍କର
ଭସ୍ମ କରି ଦାଦେ ଦେଲା
ଦୁଃଖେ ପଦାର୍ଥ ଯେତେକ ସଞ୍ଚିଥିଲେ
ସବୁତ ଆପଣେ ନେଲା ॥

ଦଇବେ ସେ ଯେ ସେବକ ଲୋକ ସିନା
ନ ପାରିଲା କିଛି ବୋଲି
ତେଣୁକରି ବେନ ଭାଇଙ୍କ କୁଟୁମ୍ବ
ଉପାସେ ଶୋଇଲେ କାଲି ॥

ଏମନ ବାଣୀ ଶୁଣିଣ ଚକ୍ରପାଣି
ଚାହିଁଲେ ବାସୁକି ମୁଖ
ବୋଇଲେ ତୁ ଯେ ଜ୍ଞାନବନ୍ତ ହୋଇଣ
ମୋ ଭକ୍ତକୁ ଦେଲୁ ଦୁଃଖ ॥

---

ଦଣ୍ଡୁଆସୀ — ରାଜ କର୍ମଚାରୀ ବିଶେଷ, ଦରୁଆନ ବା ଜଗୁଆଳ

ପାତାଳ ପୁରେ ତୁ ନୃପତି ହୋଇଣ
ଏମନ୍ତ ଅଧର୍ମ କଲୁ
ଯେତେବେଳେ ଭକ୍ତ ଉପାସେ ଶୋଇଲା
ସଙ୍ଗୋଳା କର୍ମ ନ କଲୁ ।।

ସ୍ଥାବର ଜଙ୍ଗମ ଜୀବଜନ୍ତୁ ସହିତେ
ଦୁଃଖ ସୁଖ କର୍ମଭୋଗୀ
ରାଜ୍ୟରେ ଯେତେ ପାପପୁଣ୍ୟ ହୋଇବ
ନୃପତିଙ୍କି ସବୁ ଲାଗି ।।

ପର୍ବତ ଗୁହା କାନନ ଭିତରେଣ
ବରଷନ୍ତି ଯେତେ ଜଳ
ସେହି ପୁଣ ଯାଇ ଯେମନ୍ତ ପ୍ରକାରେ
ସମୁଦ୍ରେ ହୁଅଇ ମେଳ ।।
ସେହି ପ୍ରକାରେ ପାପପୁଣ୍ୟ ସହିତେ
ଭଲ ମନ୍ଦାଦି ଦାୟିତ୍ୱ
ନୃପତି ଶିରେ ସବୁ ଆସି ବସଇ
ଏହା ଜାଣନ୍ତି ସମସ୍ତ ।।

ଏ ତୋର କଟକ ଭିତରେ ମୋହର
ଭକତ ଧ୍ୟାନ ଭାଙ୍ଗିଲା
ଧର୍ମ ଶାସ୍ତ୍ର ପରମାଣରେ ପାତକ
ଥୋକାଏ ତୋତେ ଲାଗିଲା ।।

ବହନ ହୋଇ ଏବେ ତୁହି ଯାଇଣ
ମିଳବୁ ତାହାଙ୍କ ପାଶ
କୋଟି ସମ୍ପଦ ଯେ ସମ୍ମୁଖରେ ଥୋଇଣ
ବୋଲିବୁ ଉପେକ୍ଷ ଦୋଷ ।।
ତେବେ ତୋ ଜନମ କରମ ସୁଫଳ
ହୋଇବ ନୃପତି ମଣି
ଭକତର ମୋର ଭିନ୍ନାଭିନ୍ନ ନାହିଁ
ଅନ୍ତର୍ଗତେ ଥିବୁ ଜାଣି ।।

ଦେବ ଦାନବ ନାଗଲୋକ ମାନବ
ମଲେ ଯେ ମରଣ ମୋର
ବାସୁଦେବ ପ୍ରାୟୁ ତାହାଙ୍କୁ ମଣିବୁ
ଶୁଣ ତୁ ହୋ ନୃପବର ॥
ଏମନ୍ତ ବୋଲି ଯେ କରୁଣାର ସାଇଁ
ଫେଡ଼ିଲେ ଭକତ ଚିନ୍ତା
ଇନ୍ଦ୍ର ଦେବତାଙ୍କୁ ଅନାଇଁ ବୋଇଲେ
ସ୍ୱର୍ଗର କମ ବାରତା ॥
ତୁମ୍ଭେ ସୁରରାୟୁ ନକର ହେ ଭୟୁ
ଇନ୍ଦ୍ରପଦ ବୃହ ଠିକେ
ଦେବତାଙ୍କ ଭୋଗ ମଡ଼ଆ ହୋଇଲା
ସନ୍ତୋଷ ନକଲୁ କେ ॥
ସ୍ୱର୍ଗପୁର କଥା ଯେ ଲୋକ ବ୍ୟବସ୍ଥା
ତୋତେ ଦେଇଅଛୁ ପୁଣ
କାଲି କାହାକୁ ପଡ଼ ଜଣା ହୋଇଲା
କହିଲା କୋଠ କରଣ ॥
ପ୍ରଭୁଙ୍କର ବାଣୀ ଦେବ ଇନ୍ଦ୍ର ଶୁଣି
ମଥାରେ ଯୋଡ଼ିଲା ହସ୍ତ
ବୋଇଲା ମୋର ଅପ୍ରାଧ କ୍ଷମାକର
ଅଶେଷ ବ୍ରହ୍ମାଣ୍ଡ ନାଥ ॥
ଆଜଠାରୁ ସ୍ୱର୍ଗପୁର ବିଷୟରେ
ସାବଧାନ ରହିଥିବ
କାଲି ଯାହାକୁ ବିଭୋଗ ନ ଖଟିଲା
ଶତେଗୁଣ ତାଙ୍କୁ ଦେବ ॥
ଶୁଣି ଗୋବିନ୍ଦ ମନେ ମହା ସାନନ୍ଦ
ଫୁରୁଣା ହୋଇଲା ଦେହ
କୋଠ କରଣକୁ ଅନାଇ ବୋଇଲେ
ମର୍ତ୍ତ୍ୟପୁର କଥା କହ ॥

---

ସୁରରାୟୁ — ଇନ୍ଦ୍ର

ପ୍ରଭୁଙ୍କର ବାଣୀ ଏସନେକ ଶୁଣି
କହିଲା କୋଠ କରଣ
ବୋଇଲା ପ୍ରଭୁ ମର୍ତ୍ତ୍ୟପୁର ବାରତା
ସାବଧାନ ହୋଇ ଶୁଣ ॥

ବେଦପୁର ନାମେ ଏକଇ ଶାସନ
କୁଶଧର ନାମେ ରାଜା
ଦଶସହସ୍ର ଘର ତହିଁରେ ବସଇ
ସକଳେ ବିପ୍ର ପରଜା ॥

ଅଠର କୋଶ ମାଡ଼ିଣ ସେହୁ ଦେଶ
ବସିଅଛି ମହାଗ୍ରାମ
ବ୍ରାହ୍ମଣ ଜଣେ ସେ ଶାସନରେ ଅଛି
କୃପଣ ପଣ୍ଡା ତା ନାମ ॥

ସମ୍ପଦ ତାହାର ଅଛଇ ବିସ୍ତାର
କେ ଅନ୍ତ କରିବ କାହିଁ
ତ୍ରିଣବିଧି କରି ଯେତେକ ପଦାର୍ଥ
ସବୁଠାକୁ ଅଛି ନେଇ ॥

ଘର ତାହାର ଯେ ଅଛଇ ବିସ୍ତାର
ବାଡ଼ି ଚଉକତି ମଞ୍ଚ
ନାନାବର୍ଣ୍ଣ ପୁଷ୍ପ ତହିଁରେ ଲାଗିଛି
ଏକକୁ ଆରେକ ଘଞ୍ଚ ॥

ସୁଇ ଯାଈ ମଲ୍ଲୀ ସେବତି କରୁଣା
ତଗର ଭରାଠ ମୂଳେ
ବୃକ୍ଷ ଗୋଟିକେ ଭିନ୍ନଭିନ୍ନ ଚଉରା
ନିର୍ମାଣ କରିଛି ଠୁଳେ ॥

ନିସନ୍ଧରେ ବାଡ଼ ଦେଇଅଛି ଗାଡ଼
ଆବରଣ ଚଉକତି
ହରି ଭକ୍ତନାମେ ଏକଇ ମୂଳିଆ
ରକ୍ଷା କରଇ ତା ନିତି ॥

ସୁମେବା କରଣ ଆଉ ଆବୋରଣ
ବେଳ ଜାଣି ଦଏ ପାଣି
ନଡକ ନଡ ମୂଲ ମାଗି ନଆଇ
କୁଟୁମ୍ବ ବେନ ପରାଣୀ ॥

ଅନ୍ନ ବସ୍ତ୍ର ଦୁଇ ସଂଯୋଗ ନୁହଇ
କେତେଦେଁକ ଦିନ ଗଲା
ଦଇବେ ଦୁଃଖୀ ମୂଲିଆ ଲୋକ ସିନା
ଦେହ ତା ଅସୁସ୍ଥ ହେଲା ॥

ବିଷମ ଜ୍ୱରରେ ଉଠି ନ ପାରଲା
ହୋଇଲାକ ହନ୍ତସନ୍ତ
ଅନ୍ନ ବ୍ୟଞ୍ଜନ କାହିଁ ନ ମିଳଲା
ମୂଲିଆ ଘର ଯେମନ୍ତ ॥

ପଥ୍ୟ ସରଞ୍ଜାମ ନୋହିଲାକ ଯୋଗ
ବ୍ୟାଧି କଷ୍ଟେ ମହାଦୁଃଖୀ
ଫୁଲ ତୋଟାରେ ପାଣି ଦିଆ ନୋହିଲା
ବୃକ୍ଷମାନ ଗଲେ ଶୁଖି ॥

ବ୍ୟାଧିର ଯେ ତାପ ଅତହିଁ ଅମାପ
ନ ପାରଲା ଦୁଃଖ ପଡ଼ି
ପିଣ୍ଡକୁ ପ୍ରାଣ ମହାଗନ୍ତ ଲାଗିଲା
ଜୀବନ ଯାଉଛି ଉଡ଼ି ॥

କର୍ମ ବେଗର ନଚ୍ୟାରୁର ସମସ୍ତ
ନ କରି ପାଇଲା ଶୋକ
ପାଦ ପଦ୍ମ ସେବା ପଡ଼ିଆ ହୋଇଲା
ବେଗରେ ଭଗତ ଲୋକ ॥

ଗେରସ୍ତ ଯେ କାର୍ଯ୍ୟ କରି ନ ପାରିଲା
ତୋଟାରେ ମରୁଛି ଫୁଲ
ଆପଣେ ଯତ୍ନେ ଅଶକତ ହୋଇଲା
ବ୍ରାହ୍ମଣ ନଦେଲା ମୂଲ ॥

ଦଇବେ ବପ୍ର ଯେ ଅତ୍ୟନ୍ତ କଠୋର
ନର୍ଦ୍ଦୟ ଗୃଣ୍ଡାଳ ଚିତ୍ତ
ବୋଇଲା ଏ ଯେବେ ଆତ୍ମଭ ନକଲା
କାହିଁପାଇଁ ଦେବ ଘାତ ॥

ପାପ ପୁଣ୍ୟ ଦୁଇ ବଗୃର ନକର
ନବ୍ରଣ କଲାକ ଯେଣୁ
ହର ଭକତକୁ କଛି ନ ମିଳଲା
ଉପାସେ ଶୋଇଲା ତେଣୁ ॥

ନବ୍ରଣ ହୋଇଣ ଉପବାସେ ଶୋଇ
ପାଦପଦ୍ମେ ଚିତ୍ତ ଦେଇ
ଅତ୍ତ ଆରତଙ୍କେ ସେ ଦୁଃଖରେ ଡାକଲା
ଘାନବନ୍ଧୁ କର ଛାହ ॥

କରୁଣର ବାଣୀ ଏସନେକ ଶୁଣି
ଆଜ୍ଞାଦେଲେ ଚକ୍ରଧର
ବୋଇଲେ ଏ ଦୋଷ କାହାକୁ ଲଗିଲା
ସମସ୍ତେ ବଗୃର କର ॥

ପ୍ରଭୁଙ୍କର ବାଣୀ ଏସନେକ ଶୁଣି
ବୋଇଲେ ଦେବତା ଗଣେ
କୃପଣ ପଣ୍ଡାକୁ ଏ ଦୋଷ ଲଗିଲା
ଧର୍ମ ଶାସ୍ତ୍ର ପରମାଣେ ॥

ଶୁଣିତା ଶ୍ରୀହର ମନେ ତାପ କର
କରୁଣ ମୁଖକୁ ଗୃହିଁ
ବୋଇଲେ ସମସ୍ତେ ଠଙ୍କା ବେଗେ ଦଅ
ହର ଭକତକୁ ନେଇ ॥

ଯେ ଯେ ଆମ୍ଭର ଲୁହଇ ପଗପର
ଯେସନେକ ପିତାପୁତ୍ର
ମୋ ଭାବ ଜାଣେ ଯେ ତାଭାବ ମୁଁ ଜାଣେ
ଏକ ଜାତ ଏକ ଗୋତ୍ର ॥

ସେ ସେ ଦୁଃଖ ପାଇ ହୃଦେ ଚିନ୍ତା ବହ୍ନ
ମନେ ସୁମରିଲା ମୋତେ
କୋଠ ଭଣ୍ଡାର୍ରୁ ସହସ୍ରେ ଟଙ୍କା ତାଙ୍କୁ
ବେଗେଣ ଦିଅ ପ୍ରଭାତେ ॥

ଦଇବେ ତାର କୁଟୁମ୍ବ ବେନି ପ୍ରାଣୀ
ଅଧିକ ନାହିଁ ନା ଆଉ
ମରିଲେ ପୁଣି ତ ଆଉ ଦେଇପାରୁ
ଏତେକ ଏବେ ସେ ଖାଉ ॥

ପ୍ରଭୁଙ୍କ ବଚନେ ଚୈତନ୍ୟ କରଣ
ମଥାରେ ଯୋଡ଼ିଲା ହସ୍ତ
କାଲି ପ୍ରଭାତରେ ଏ ଟଙ୍କା ତାହାକୁ
ଅବଶ୍ୟ ହେବ ପ୍ରାପତ ॥

ଶୁଣିଣ ଶାପଟ୍ଟ ହରଷ ମନରେ
ଆସ୍ଥାନୁ ଉଠିଲେ ଧାଇ
ସେ ସାହା ପୁରକୁ ବୃନ୍ଦାରକେ ଗଲେ
ଶୁଭେଣ ପାହିଲା ରାତି ॥

ସେ ଧନର କଥା ଯେତେକ ବ୍ୟବସ୍ଥା
କହିଲେ ଦେବତା ଗଣ
ମଣ୍ଡପ କଣରେ ଥାଇ ତା ଶୁଣନ୍ତି
କୃପଣ ପଣ୍ଡା ବ୍ରାହ୍ମଣ ॥

ଅନ୍ତର୍ଗତେ ତାର ବିସ୍ମୟ ହୋଇଲା
ସଫଳ ହୋଇଲା କାର୍ଯ୍ୟ
ସହସ୍ରେ ଟଙ୍କା ସେ ହରି ଭକତକୁ
ପ୍ରାପତ ହୋଇବ ଆଜ ॥

ସେ ଧନକୁ ଯାଇ କେମନ୍ତେ ବଳି ମୁହିଁ
ଉପାୟ ବୁଦ୍ଧି ପ୍ରକାରେ
ମୂଲ ଦେଲା ଦ୍ରବ୍ୟ ପଛନ୍ତେ ସାଧିବ
ଆଉ ମୋ ଖାତକ ଠାରେ ॥

ଏସନେକ ବାଣୀ ମନେ ମନେ ପୁଣି
ସେଠାରୁ ବାହାର ହୋଇ
ରବି ଅସ୍ତକାଳେ ନଜର ଗୃହରେ
ପ୍ରବେଶ ହୋଇଲା ଯାଇ ॥

ଦେବଙ୍କର କଥା ବାରତା ସମସ୍ତ
ଭାରଯାକୁ କହି ଦ୍ୱିଜ
ବୋଇଲା ବିଧାତା ପୁରୁଷ ଆମ୍ଭଙ୍କୁ
ଅନୁଗ୍ରହ କଲେ ଆଜ ॥

କାଲି ମୁଁ ଗଲି ମଣ୍ଡପଠାରେ
ପର୍ବତ ଶିଖରେ ମାଇଁ
ସ୍ୱର୍ଗରୁ ଆସି ଦେବତାମାନେ ଯେ
ଗୋଷ୍ଠି କରିଥିଲେ ତହିଁ ॥

ଥିଲା ନଥିଲା ଯେ ଉପବାସ କଥା
ବିଗୃତ ବୁଝିଲେ ବେନି
ପଡ଼ି ଭଙ୍ଗମାନ ଲେଖି ଦେଉଥିଲେ
ଯାହାକୁ ଯେମନ୍ତ ଲାଗି ॥

ଆମ୍ଭର ମୂଳିଆ ଦୁଃଖ ଯେ ପାଇଲା
ସମସ୍ତ ବୁଝିଲେ ଭଲ
କୋଠ କରଣ ଯେ ଗ୍ରାମୁରେ କହିଲା
ଏ କଥାହିଁ ପଡ଼ିଗଲା ॥

ଦୁଃଖର କଥା ଯେତେ ଯେତେ ବ୍ୟବସ୍ଥା
ବୁଝିଲେ ସକଳ କାର୍ଯ୍ୟ
ମହତେ ଟଙ୍କା ପଡ଼ିଭାତ ତାହାକୁ
ବରାଦ ହୋଇଛି ଆଜ ॥

ଏହିକଥା ଶୁଣି ମନରେ ମୁଁ ଗୁଣି
ଅସ୍ଥିର ହୋଇଲା ଦେହ
ଆଜ ରାତ୍ରେ ଧନ ପ୍ରାପତ ହୋଇବ
କି ବୁଦ୍ଧି କରିବା କହ ॥

ତହ୍ନିଁ ପାଇଁ ମୁହିଁ ଅଇଲଇଁ ଧାଇଁ
ତୁହ୍ମ ଠା ଶୁଣିଲୁ ଏବେ
ମୋହ ବୁଦ୍ଧି ବଳ ତୋ ଆଗେ କହିବି
ନାସ୍ତି ନ କରିବୁ ଯେବେ ॥

ଗେରସ୍ତର ବାଣୀ ସେ ବ୍ରାହ୍ମଣୀ ଶୁଣି
ମନରେ ଲଭିଣ ତୋଷ
ବୋଇଲା କେମନ୍ତ କି ବୁଦ୍ଧି କରିବ
କହକନା ମୋର ପାଶ ॥

ବିପ୍ର ବୋଇଲା ମୁଁ ଯାହା ଭିଆଇଛି
ବେଗେ ତୁ ଶୁଣଗୋ ସଖି
ଆଜକ ମାନ ଯେ ଘର ଗୁଡ଼ ଯାଇ
ପାଞ୍ଚ କରିବା କି ଦେଖି ॥

ମୋହ ମନକୁ ତ ଏମନ୍ତ ଆସଇ
ତୁମ୍ଭର କେମନ୍ତ ଭାବ
ତିନଶ ଠଙ୍କା ତାହାକୁ ଲାଞ୍ଚ ଦେବା
ସେ କଥା ଆଉ କହିବ ॥

ଏକା ଗ୍ରହକେ ଏତେ ଧନ ପାଇବା
ଆମ୍ଭଙ୍କୁ ଅଛି କି ହାନି
ବ୍ରାହ୍ମଣୀ ବୋଇଲା ତାହାଠାରୁ ଦେଖି
ଆସକନା ବୋଲି ଘେନ ॥

ଭରଯାର ବାଣୀ ଏମନେକ ଶୁଣି
ବ୍ରାହ୍ମଣ ଚଳିଲା ଖରେ
ତତକ୍ଷଣେ ଯାଇ ପ୍ରବେଶ ହୋଇଲା
ହରି ଭକତଙ୍କ ଘରେ ॥

ତା କଣ୍ଠରେ ବସି ବୋଇଲା ଆଶ୍ୱାସି
କି କରୁଛ ଆଜ ତୁମ୍ଭେ
କାଲି ଗତରାତ୍ରି କାହୁଁ ଭିଆଇଲ
ସଙ୍ଗୋଳ ଅଇଲୁ ଆମ୍ଭେ ॥

ଭୂମର ଏଦୁଃଖ ଦେଖିଣ ବିମୁଖ
ହୃଦୟେ ପାଇଲୁଁ ତାପ ॥
ମନରେ ମହା ଉଚ୍ଚାଟ ଲାଗିବାରୁ
ସଙ୍ଖୋଳି ଅଇଲୁ ବାପ ॥

ଗୋଟିଏ ମୋହର ଅଛୁ ଯେ ବିତ୍ୱର
ଶୁଣିଲେ କହିବ ତୋତେ
ଆଜ ରାତକ ଏହି ଘର ଖଣ୍ଡିକ
ମୂର୍ଚ୍ଛି ପାରିବୁ କ ମୋତେ ॥

ପାହିଲାରୁ ନଶି ରହିବୁ ତୁ ଆସି
ମନରେ ନକର ଶଙ୍କା
ଏଥକୁ ଆମ୍ଭେ ଖରଚ ଦେବା ତୋତେ
ଲେଖାରେ ଛନଶ ଟଙ୍କା ॥

ବ୍ରାହ୍ମଣର ବାଣୀ ଏସନକ ଶୁଣି
ବୋଇଲା ହରି ଭକତ
ଏତେ ଧନ ମୋତେ କେମନ୍ତେ ଦେବୁ ତୁ
ପ୍ରତେ ଯାଉନାହିଁ ଚିତ୍ତ ॥

ଜଉର ତାପେ ମୁଁ କାର୍ଯ୍ୟ ନ କଲାରୁ
ପଡ଼ିଆ ହୋଇଲା ବୋଲି
ହନେ କରି ମୂଲ ଆଗତ ନ ଦେଲୁ
ଉପାସେ ଶୋଇଲି କାଲି ॥

ମୂଲଲାଗି ତୋତେ ମାଗିଣ ଗଲି ଯେ
ମୁଖକଲୁ ଅଷ୍ଟବଙ୍କା
ଏବେ ତୁ କେମନ୍ତ ପ୍ରକାରେ ମୋତେ ଯେ
ଦେବୁ ଛନଶତ ଟଙ୍କା ॥

ବିପ୍ର ବୋଇଲା ମୁଁ ନିୟମ କରିବି
ଏବେ ତୁ ପରତେ ଯାଅ
ଭୁଣ୍ଡି ବୋଲି ଯେବେ ପ୍ରମାଣ ନୋହିଲା
ହାତ ପତ ଦେଉଥାଅ ॥

ହରି ଭକତ ବୋଇଲା କାହିଁପାଇଁ
ହାତପନ୍ଧ ଦେବୁ ମୋତେ
କେଉଁ କଥାକୁ ତୁ ଆତଙ୍କି ହୋଇଛୁ
ପଶୃଚ୍ଛ ଅଛି ମୁଁ ତୋତେ ॥

ବିପ୍ର ବୋଇଲା ତୁ ସାବଧାନ ହୁଅ
ଶୁଣ ହୋ ଭକତ ହରି
ଯେଉଁ କଥାକୁ ମୁଁ ଆତଙ୍କ ହେଉଛି
କହଇ ସୁଧୀର କରି ॥

ପାଞ୍ଜି ପରମାଣେ ପଣ୍ଡିତ କହିଲେ
ରାଶିକି ମୋହର ଘାତ
ବୋଇଲେ ଆଜ ନିଶି ଘରେ ନଥିବୁ
ଅଛି ତୋତେ ମୁଣ୍ଡକାଟ ॥

ସେଦିନ ତୋର ମନ୍ଦରରେ ରହିବ
ତୁ ଯାଇ ମୋ ଘରେ ଥିବୁ
ନିଜନ୍ମ ପ୍ରଭାତେ ଯେ ଯାହା ଗୃହରେ
ପୂର୍ବ ପରସ୍ପେ ରହିବୁ ॥

ତେଣୁକରି ତୋତେ ତିନିଶ ଟଙ୍କା ମୁଁ
ଯାଚୁଅଛି ଆରେ ଭାଇ
କହୁ ନ ବଶୃର ଆଜକ ମାନ ତୁ
ଆମ୍ଭଘରେ ରହ ଯାଇଁ ॥

ବ୍ରାହ୍ମଣର ବାଣୀ ଏସନକ ଶୁଣି
ହରି ଭକତ ବୋଇଲା
ମୋହ ବଶୃରକୁ ଏ କଥା ମାନ ତ
କହୁନାହିଁ ଭଲ ନୋହିଲା ॥

ତୋହ ଜୀବନକୁ ଏତେ ଆଶ କଲୁ
ମୁଁ ଯହୁଁ ଆସିଲି ମାଗି
ତୁ ଆଜ ନିଶିରେ ମୋ ଘରେ ରହିବୁ
ମୁଁ ଥିବି ତୋଘର ଜଗି ॥

ହୋଇଲେ ହେଉଅଛେ ଏହା କରିବା
ମନେ କର୍ ଯେବେ ଶଙ୍କା
ଧନପାଇଁ ଯେବେ ଜୀବନ ମୂର୍ଚ୍ଛିବ
ପ୍ରବେଶ କର ତୁ ଠଙ୍କା ॥

ଶୁଣି ସେ ବ୍ରାହ୍ମଣ ହରଷ ହୋଇଣ
ଧାନ୍ତକାରେ ଗଲା ଚଳି
ଭାରିଜା ଆଗରେ ମଣାଇ କହିଲା
ପଡ଼ିଲାଟି ଆମ୍ଭ ପାଳି ॥

ଭଲା ମୁଁ ଗଲି ଜରକ ତାକୁ କଲି
କଥାରେ ବୋଧ ହୋଇଲା
ହଇବେ ସେ ସେ ପାଷାଣ୍ଡ ଲୋକସିନା
ଜ୍ଞାନ ତା ଉଦୟ ହେଲା ॥

ଆଣ ମୋ ଠଙ୍କା ନକର କିଛି ଶଙ୍କା
ବହନ ଗଣ୍ଠିରେ ବାନ୍ଧ
ବିଧାତା ଆମ୍ଭଙ୍କୁ ଏ ଲାଭ ଦେଇଛି
ମୂଳଆ ସେହି ସେ ଅନ୍ଧ ॥

ଏଧନ ଗୁଡ଼ାକ ଲାଞ୍ଚ ଜମନ୍ତେ ଯେ
କାର୍ଯ୍ୟବେଳେ ତାକୁ ଦେବା
ତେଣୁ ଏକାବେଳେ ସହସ୍ର ଠଙ୍କା ଯେ
ଘରକୁ ନେଇ ଆସିବା ॥

ଶୁଣି ସେ ବ୍ରାହ୍ମଣୀ ବେଗେ ଠଙ୍କା ଆଣି
ଗେରସ୍ତ ହସ୍ତରେ ଦେଲା
ତିନିଶ ଠଙ୍କା ଗଣ୍ଠିରେ ବାନ୍ଧି ବିପ୍ର
ଭକତ ଘରକୁ ଗଲା ॥

ତା କଟକ ଯାଇ ବିନୟ ହୋଇଣ
କହିଲା ଅନେକ ମତେ
ବୋଇଲା ଏ ଧନ ଜଗନ୍ନାଥ ପ୍ରଭୁ
ଅନୁଗ୍ରହ କଲେ ତୋତେ ॥

ପଦାର୍ଥ ଗଣ ମୋ ବୋଲ ତୁମ୍ଭେ ଶୁଣ
କଣ୍ଟୁହିଁ ନ ଯାକ ଆଉ
ତୁମ୍ଭେ ବେନି ପ୍ରାଣୀ ଆମ୍ଭ ଘରେ ରୁହ
ତୁମ୍ଭଘରେ ଆମ୍ଭେ ରହୁଁ ॥

ବିପ୍ର ବଚନରେ ଭକତ ବୋଇଲା
କଥାଏ କହିବା ତୋତେ
ଯହିଁମାଇଁ ମୋତେ ଧନ ଆଣି ଦେଲୁ
ହାତ ପତ୍ର ଦିଅ ମୋତେ ॥

ଯାଚଦେଲା ଦ୍ରବ୍ୟ ନିମନ୍ତେ ପଛେ ତୁ
ଅସତ ହୋଇବୁ ଯେବେ
ଦୁଃଖୀ ଲୋକ ମୁହିଁ କାହାକୁ କହିବି
ହଟହଟା ହେବ ତେବେ ॥

ହରି ଭକତ ବଚନେ ଦ୍ୱିଜବର
ହାତପତ୍ର ଖଣ୍ଡେ ଲେଖି
ବୋଇଲା ଏକଥା ପ୍ରମାଣ ମୋହୋର
ଜଗପାଳେ ତୁମ୍ଭେ ସାକ୍ଷୀ ॥

ଯେବେ ଏ ବଚନ ମୁଁ କରିବି ଆନ
ଧଣଗୁଣେ ଦେବ ଶାସ୍ତି
ରାଜା ଘରକୁ ସହସ୍ରେ ଟଙ୍କା ଦେବି
ଏକଥା ଅଟେ ଯୁଗତ ॥

ଏହାକହି ବିପ୍ର ଲେଖିଥିବା ପତ୍ର
ହରିଭକ୍ତ ହସ୍ତେ ଦେଲା
ଭାରିଯାକୁ ଘେନି ହରି ଭକତ ଯେ
ବ୍ରାହ୍ମଣ ଘରକୁ ଗଲା ॥

ସମ୍ଭାଳି ସେ ଧନ ହରଷିତ ମନ
ମନ୍ଦରେ ପ୍ରବେଶ ହେଲେ
ବ୍ରାହ୍ମଣ ବ୍ରାହ୍ମଣୀ ଦୁଇ ଲୋକେ ମିଳି
ଭକତ ଘରକୁ ଗଲେ ॥

ସୁନ୍ଦର ହୋଇ ରହୁଁଲେ ସେ ଦୁହେଁ
ଦୁହିଁଙ୍କ ମନ ହରଣ
ଏସନ ସମୟେ ରଜନୀ ହୋଇଲା
ଅନ୍ଧତେର ପରବେଶ ।।

କୃପଣ ପଣ୍ଡା ଯେ ଧନ ଆଣିବାକୁ
ଆଶାକରି ଥିଲା ବସି
ଶଙ୍ଖଧ୍ୱନି ଶୁଣି କୋକିଳ ରାବଲା
ପାଇଲା ବେଦନ କଶି ।।

ଦେଖିତା ବ୍ରାହ୍ମଣ ମାନସ ତାପେଣ
ବୋଇଲା ବିକଳ ଭାବେ
ଏତେ ବେଳ ଯାଏ ଧନ ତ ନଇଲା
କି ବୁଦ୍ଧି କରିବି ଏବେ ।।

ସକଳ କଥାବାର୍ତ୍ତା ଯେତେ ବ୍ୟବସ୍ଥା
ସବୁ ତ ମିଛ ହୋଇଲା
କିସ ବିଗୁଣଣ ବିଧାତା ପୁରୁଷ
ଏତେ କର୍ମ କମାଁ କଲା ।।

ଏବେ କି କରିବି କାହାଁକି ମୁଁ ଯିବି
ବୁଦ୍ଧିବାଟ ଦିଶୁ ନାହିଁ
ହାତପଟ ଦେଇ ମୁକତେ ହାରିଲି
କାହାକୁ କହିବି ଯାଇଁ ।।

ବ୍ରାହ୍ମଣ ମୁଖ ଦେଖିକରି ବିମୁଖ
ବ୍ରାହ୍ମଣୀ ବୋଲେ ବଚନ
ଲୋଭ ବଢ଼ାଇ ଯେ ଜ୍ଞାନ ହରାଇଲ
ଅକାରଣେ ଗଲା ଧନ ।।

କିସ ପାଞ୍ଚକଲ କାହାଠୁଁ ଶୁଣିଲ
ଘର ବୁଡ଼ାଇଲ ଥାଇଁ
ପର ଧନକୁ ଯେ ଆଶ ବଢ଼ାଇଲ
ବିଧାତା ସହିବ କାହିଁ ।।

ଏବେ ତୁମ୍ଭେ ନଷ୍ଟ ବଦନ ହୋଇ
ଆପଣା ଘରକୁ ଯିବା
ଅର୍ଜିଲା ଫଳ ତ ବେଶରେ ପଡ଼ିଲା
ପରଘରେ କର୍ମ ଥିବା ॥
ଗଣ୍ଠି ଧନ ପର ହସ୍ତରେ ଦେଲ ଯେ
କଷ୍ଟହିଁ ନୋହିଲା କାର୍ଯ୍ୟ
ଲୋକେ ଜାଣିଲେ ଉପହାସ ହୋଇବ
ତେବେ ତ ପାଇବା ଲାଜ ॥
ଶୁଣିଣ ବ୍ରାହ୍ମଣ ମାନସ ତାପେଣ
ଶ୍ରଶଯାକୁ ଘେନି ଚଳି
ନିତାନ୍ତ ମନ୍ତ୍ର ପ୍ରାପ୍ତକ ହୋଇ ବିପ୍ର
ନିଜପୁରେ ଯାଇଁ ମିଳି ॥
ଶ୍ରୀକୃଷ୍ଣ ଭକତ ମୁରୁଣା ଚିତ୍ତରେ
ଆପଣା ଘରକୁ ଗଲେ
ଶ୍ରୀଜଗନ୍ନାଥଙ୍କ ଏମନ୍ତ ମହିମା
ଭକତକୁ ଦୟା କଲେ ॥
ବ୍ରାହ୍ମଣ ତ ଶୁଣି ବିସ୍ମୟ ହୋଇଣ
ପୁଣି ହିଁ ଗମନ କଲା
ବନଅନ୍ତେ ଯାଇଁ ପ୍ରବେଶ ହୋଇଲା
ଯେବଣ ମଣ୍ଡପେ ଥିଲା ॥
ମଉନ ଭାବରେ ରହିଲା ସେ ତହିଁ
ପ୍ରବେଶ ହୋଇଲା ନିଶି
ତେତିଶ କୋଟି ଦେବତା ଗଣ ଘେନି
ବିଜେକଲେ ବ୍ରହ୍ମଋଷି ॥
ଚନ୍ଦ୍ର ସୂର୍ଯ୍ୟ ଇନ୍ଦ୍ର ବାସୁକୀ ସହିତେ
ବରୁଣ ରାଜା ଅଇଲା
ଯମ ପବନ କୁବେର ବୈଶ୍ୱାନର
ଗହଳ ସଭା ହୋଇଲା ॥

---

ବ୍ରହ୍ମଋଷି — ଭଗବାନ ପରମାତ୍ମା
ବୈଶ୍ୱାନର — ଅଗ୍ନି

ଚଇତନ ନାମେ କରଣେ ହକାର
ଆଜ୍ଞାଦେଲେ ଦେବଦତ୍ତ
କାଲି ପଡ଼ଭାତ କେମନ୍ତ ହୋଇଲା
କହକନା ବେଗକର ॥

ଶୁଣି କରଣ କରପଦ୍ମ ଯୋଡ଼ଣ
ପଛଧୂଆ ଦେଇ ଯାଇଁ
ବୋଇଲା ପ୍ରଭୁ ମର୍ତ୍ତ୍ୟପୁର ବାରତା
ଶୁଣିମା ହେଉ ଗୋସାଇଁ ॥

ହରି ଭକତଙ୍କୁ ଯେଉଁ ପଡ଼ଭାତ
ଶ୍ରୀମୁଖେ ଆଜ୍ଞା ହୋଇଲା
ସହସ୍ରେ ଟଙ୍କାରୁ ତିନଶ ଟଙ୍କା ସେ
କାଲି ଭିତରେ ପାଇଲା ॥

ସ୍ୱର୍ଗପୁର କଥା ବିଶେଷ ଅଟଇ
ଇନ୍ଦ୍ରହିଁ ସଙ୍ଘୋଳା କଲେ
ପାତାଳ ଭକତମାନଙ୍କୁ ବାସୁକୀ
ଅନେକ ସମ୍ପଦ ଦେଲେ ॥

କାଲି ପଡ଼ ପ୍ରଭୁ ସମସ୍ତେ ପାଇଲେ
କେହି ଉପବାସେ ନାହିଁ
ନଗର ବଚନ ଶ୍ରୀମୁଖରେ କହିଲି
ଶୁଣିମା ହେଉ ଗୋସାଇଁ ॥

ହରି ଭକତ ହୋଇଣ ହର୍ଷଚିତ୍ତ
ପୂରୁଣା କଲାକ ମନ
ଆଜ୍ଞା ପ୍ରମାଣେ ତିନଶ ଟଙ୍କା ଦେଲୁଁ
ଶୁଣିବା ଭକତ ଧନ ॥

ପ୍ରଭୁଙ୍କ ଶ୍ରୀମୁଖରେ ଏମନ୍ତ ବୋଲିଣ
କହିଲା ସହୁଁ କରଣ
ମଣ୍ଡପ କଣରେ ଥାଇ ତା ଶୁଣିଲା
କୃପଣ ପଣ୍ଡା ବ୍ରାହ୍ମଣ

ଆସନ ତେଜି ମନରେ ତାହା ଭଜି
ଚାହିଁଲ ବେନି ଲୋଚନେ
କେହୁଣି ଆଡ଼େ କିଛିହିଁ ନ ଦିଶଇ
ଶବଦ ଶୁଭୁଛି ଶୂନ୍ୟେ ॥

ଦେଖି ବ୍ରାହ୍ମଣ ସ୍ତମ୍ଭୀଭୂତ ହୋଇଣ
ଡରେଣ କମ୍ପଇ କାୟା
ଦେବତାଙ୍କ ରୂପ ଯେ କାହିଁ ଦେଖିବ
ଘୋଟିଅଛି ବିଷ୍ଣୁ ମାୟା ॥

ହୃଦପୂରେ ଗୁଣି ବିଚାରିଲା ପୁଣି
କୋପଭରେ କଲା ମନ
ବୋଇଲା ଆହେ କରଣ ମହାତ୍ମା
କହୁଚ ଏ ଭାଷାମାନ ॥

ତିନିଶ ଟଙ୍କା ମୁଁ ହରିବନ୍ଦକନ୍ତକୁ
ଦେଇଅଛି ହସ୍ତେ ଧରି
ତୁମ୍ଭେମାନେ ଏବେ କେମନ୍ତେ ବୋଲୁଛ
ଆମ୍ଭେ ଦେଲୁ ବୋଲି କରି ॥

ବ୍ରାହ୍ମଣର ବାଣୀ ଏମନ୍ତ ଶୁଣି
କରଣ ବୋଇଲେ ତହିଁ
ଆମ୍ଭେ ନଦେଲେ ଯେ ତୋର ଘର ବଳେ
ବିପତ୍ତି ଖଣ୍ଡିବ କେହୁ ॥

ରଜନୀ ଦିବସେ ନାନା କଷ୍ଟ ପଡ଼ି
ଯେତେକ ଜୀବିକା କରି
ସେ ଧନ ଅର୍ଜଇ ତାର ସେ ନୁହଇ
ଯେବେ ନ ଦିଅନ୍ତି ହରି ॥

ତେଣୁକରି ହାଦେ ସକଳ ପଦାର୍ଥ
ପ୍ରଭୁଙ୍କ କୋଠ ଭଣ୍ଡାର
ଏକଠାବରୁ ତାହାଙ୍କୁ ଦେଉଥାଉ
ବଣିକ ବିଧି ପ୍ରକାର ॥

ଯେତେ ଧନ ଏବେ ତୋହ ଘରେ ଅଛି
ତାହା ତୋତେ କଲି କନା
ଯେତେକ ଖାଇବୁ ତେତେକ ତୋହର
ଅଧିକ ଆମ୍ଭର ମିନା ॥

ଏକଥା ବ୍ରାହ୍ମଣ ଧ୍ରୁବ ସତ୍ୟ ଜାଣ
ହୃଦପଦ୍ମେ ଥାଅ ଚେତ
ଏତେବୋଲି ଦେବେ ଅନ୍ତର୍ଦ୍ଧାନେ ଗଲେ
ପାହିଲା ମେଦନ ରାତ୍ର ॥

ଯେଉଁ ମଣ୍ଡପ ଭିତରେ ଦ୍ୱିଜବର
ଶୟନ କରିଣ ଥିଲା
ରଜନୀ ପାହିଲା ବେଳକୁ ସେ ଶୁଣି
ଅନ୍ତର୍ଦ୍ଧାନ ହୋଇଗଲା ॥

ଦେଖି ବ୍ରାହ୍ମଣ ମାନସ ତାମେଣ
ଘରକୁ ବାହୁଡ଼ି ଯାଇଁ
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ
ଘନକୃଷ୍ଣ ଦାସ କହି ॥

ଧନପତି ବାଣୀ ଏସନକ ଶୁଣି
ସନ୍ତୁଷ୍ଟ ଯୁଧିଷ୍ଠି ଧାନ
କୁବେର ମୁଖକୁ ଅନାଇ ବୋଇଲେ
ଶୁଣ ତୁ ମୋର ବଚନ ॥

ଧର୍ମ ଯୁଧିଷ୍ଠି ଯେ ମାନସରେ କଷ୍ଟି
ପିତୃକାର୍ଯ୍ୟ କରିବାକୁ
ଲକ୍ଷେ ଭରଣ ଧାନ ଋଣ ମାଗନ୍ତି
ପେଷିଛନ୍ତି ତୋହଠାକୁ ॥

ଏଥିକି ବିଚାରି ଦେବୁକି ନଦେବୁ
ସ୍ୱରୂପ ଆମ୍ଭଙ୍କୁ କହ
ବିଳମ୍ବ କଲେ ସେ ଠାକୁରଙ୍କ ମନେ
କ୍ରୋଧ ହୋଇବ ଅସହ୍ୟ ॥

ବସ୍ତୁନ୍ଧ ସୁବର୍ଣ୍ଣ ପାଣିଦ୍ରବ୍ୟ ମାନ
ଦର୍ପଣ ଗ୍ରମର ନେବା
ନେତ ପଟାମ୍ବ ଦେବାଙ୍ଗ ଝୀନ ବାସ
ରଜାଙ୍କୁ ସେ ନେଇ ଦେବା ॥

ଏବଧି ଋଣର ଯେମନ୍ତେ ପ୍ରମାଣ
ଶାସ୍ତ୍ରରେ ଲେଖା ହୋଇଛି
ମୂଳ କଳନ୍ତର ଏକ ବେଳେ ଦେବା
ଅପ୍ରତେ ନକର କଛି ॥

ଭୀମସେନ ବାଣୀ ଏମନେକ ଶୁଣି
କୁବେର ବୋଇଲେ ତହିଁ
ଶ୍ରୀଜଗନ୍ନାଥଙ୍କ ଆଜ୍ଞାରେ ଦେବ ମୁଁ
ଯୁଧିଷ୍ଠିଙ୍କି କହ ଯାଇ ॥

ମେହ୍ନ ଏବେ ଆସି ମୋର ପୁରେ ପଶି
ଯେତେକ ପଦାର୍ଥ ନେବେ
କାର୍ଯ୍ୟ ସରିଲେ ସେ ମୂଳ କଳନ୍ତର
ଏକାବେଳେ ଲେଖିଦେବେ ॥

ତା ଶୁଣିଣ ଭୀମ ହୃଦେ ବହୁ ତମ
କ୍ଷଣେ ହୋଇ ସ୍ତମ୍ଭୀଭୂତ
ଚିତ୍ତେ ବିଚାରିଲା କି ବୁଦ୍ଧି କରିବ
ଏ ତ କହିଲା ଏମନ୍ତ ॥

ମୋହର ଅଇଲା ନିଷ୍ଫଳ ମୋ କଲା
ଧନପାଇଁ ଏତେ ବାଇ
ଭଣ୍ଡାର ଯାକ ହସ୍ତରେ ଦେଇଥିବ
ଠାକୁରଙ୍କ ଆଜ୍ଞା ନାହିଁ ॥

କୁବେରର ଶିର ଯାକ ମୋ କାଖର
ନେବାକୁ ମୋ ମନ ଏକା
ଯୁଧିଷ୍ଠି ଦେବଙ୍କ ସନମତ ନାହିଁ
ତେଣୁ ମୋ ହୃଦରେ ଦକା ॥

ଏବେ ମୁଁ ଯିବ ବାରତା ପାଇ ଦେବ
ଧର୍ମନନ୍ଦନଙ୍କ ଆଗେ
କାର୍ଯ୍ୟ କାରଣର କିଛିହିଁ ନୋହିଲା
କହିବ କେମନ୍ତ ବାଗେ ॥

କ୍ଷଣେ ମାରୁତ ଚଳଗଲା ଧାଇଁ
ମିଳିଲା ଯୁଧିଷ୍ଠି ପାଶ
ଖଣ୍ଡଦୂରୁ ଦେଖି ଧର୍ମଙ୍କ ନନ୍ଦନ
ଭୀମଙ୍କୁ ବୋଇଲେ ବସ ॥

କି କାର୍ଯ୍ୟ କଲ ବାରତା ଲଇ ନିକ
କହ କହ ବୃକୋଦର
ଭୀମ ବୋଇଲା ସେ କିଛି ନ ଦେଲା
ପାପିଷ୍ଠ ମୂଢ଼ କୁବେର ॥

ଅପାର କଥା କେତେ ଯେତେ ବାରତା
କହିଲା ଅନେକ ରାଗେ
ଶୁଣିକରି ମୋର ଚିତ୍ତ ତରକିତ
ବାହୁଡ଼ି ଅଇଲ ବେଗେ ॥

ଯେବେ ଗୋସାଇଁ ଆଦେଶ ଥାନ୍ତି ଦେଇ
କାଖରେ ଯାକନ୍ତି ମୁଣ୍ଡ
ଏକା ମୁଷ୍ଟି ଘାତେ ଭଣ୍ଡାର ଯାକ ଯେ
ସମସ୍ତ କରନ୍ତି ପିଣ୍ଡ ॥

ବୃକୋଦର ଵଚ ଶୁଣିକରି ଧର୍ମ
ମନେ ଚିନ୍ତା କଲେ ହରି
ଏଡ଼େ ଦୁଷ୍ଟଙ୍କୁ ମୁଁ କୁବେର ପୁରକୁ
ପେଷିଥିଲି ଋଣ କରି ॥

ମହତ ରଖିଲା କିଛି ନ କହିଲା
ଏକଥା ଆମ୍ଭର ଭାଗ୍ୟ
ଆମ୍ଭେ ଏତିକିଣି ମନେ ଚାପ କଲେ
ନୋହିବ ରାଜସୂୟ ଯାଗ ॥

ଭୀମକୁ ଚାହିଁ ଯୁଧିଷ୍ଠି ନରସାଇଁ
ବୋଇଲେ ଶୁଣ ପାବନ
ଆମ୍ଭେ ଆପଣେ କୁବେରଠାକୁ ଯିବୁଁ
ଶ୍ରୀଜଗନ୍ନାଥଙ୍କୁ ଘେନ ।।

ଭୀମକୁ ସଙ୍ଗରେ ଘେନଣ ରଙ୍ଗରେ
ଚଳିଲେ ଧର୍ମଙ୍କ ଶିଷ୍ୟ
ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଣ
ବୋଇଲେ କରିବା କସ ।।

ପିତାଙ୍କ କଷ୍ଟ କେମନ୍ତେ ହେବ ନଷ୍ଟ
ବୋଇଲେ କରୁଣା ସାଇଁ
ଲକ୍ଷେ ଭରଣ ଧାନ ଋଣ କରିବ
ଯଜ୍ଞବଧି କାର୍ଯ୍ୟ ପାଇଁ ।।

ପାଟ ପତନ ସିନ୍ଧୁଆ ଶେଯ ଘେନ
ଦେବାଙ୍ଗ ପତନୀ ମଯୂ
ଚାମର ଦର୍ପଣ ସୁବର୍ଣ୍ଣର ଝୁମ୍ପା
ଏଥୁ ଆଣିବା ଥୋକାଏ ।।

ମାଣିକ୍ୟ ହୀରା ଯେ ମୁକୁତାର ହାର
ଅପୂର୍ବ ଚାନ୍ଦୁଆ ମାନ
ଏଥୁ ଥୋକାଏ ଋଣ କରି ଆଣିବା
ବୋଇଲେ ଧର୍ମ ନନ୍ଦନ ।।

ଯୁଧିଷ୍ଠିର ବାଣୀ ଏମନେକ ଶୁଣି
ଆଜ୍ଞା ଦେଲେ ଚକ୍ରଧାରୀ
ତୁମ୍ଭ ବଚନ କେହୁ ଆନ କରିବ
ଚାଲ ଯିବା ଋଣ କରି ।।

ଏହି ରୂପେ କହି ଯେ କରୁଣା ସାଇଁ
କୁବେର ତହିଁକି ଗଲେ
ଯକ୍ଷେଶ୍ୱର ଦେଖି ଧନପତି ତାଙ୍କୁ
କୋଟି ଦଣ୍ଡବତ କଲେ ।।

ଶିରେ ବେନକର ଯୋଡ଼ଣ କୁବେର
ବୋଇଲେ ଆହେ ଗୋସାଇଁ
ଆଜ୍ଞା ଦେଇଥିଲେ ସ୍ୱାମୀଙ୍କୁ ଯାଆନ୍ତୁ
ପାଦଶ୍ରମ କାହିଁପାଇଁ ॥

ଆଜ ମୋ ଜୀବନ ସୁଫଳ କରମ
ଦର୍ଶନ କଲି ଶ୍ରୀମୁଖ
କୋଟି ଜନ୍ମର ପାତକ କ୍ଷୟ ଗଲା
ଲଭିଲି ପରମ ସୁଖ ॥

ଆହେ ଦେବ ହର ଶୁଣିମା ଗୁହାର
ଜଣାଉଅଛି ମୁଁ ଯାହା
କେଉଁ କଥାକୁ ଆଗମନ କରିଛ
ଅଶେଷ ବ୍ରହ୍ମାଣ୍ଡ ନାହା ॥

କୁବେରର ବାଣୀ ଏମନେକ ଶୁଣି
ବୋଇଲେ କରୁଣା ମାଇଁ
ଯୁଧିଷ୍ଠିର ଦେବଙ୍କୁ ଧାନ ଋଣ ଦେବୁ
ଆସିଅଛୁ ତହିଁପାଇଁ ॥

ଯାଦେବୁ ତା ନେବୁ ଭଣ୍ଡାର ଆମ୍ଭର
ତୋତେ ଦେଇଅଛୁ ପୁଣ
ଯେଣୁକରି ଆମ୍ଭେ ତହିଁ କରୁଛୁ ନୋହୁଁ
ଧର୍ମଶାସ୍ତ୍ରର ପ୍ରମାଣ ॥

ଏଥକୁ ଆମ୍ଭେ ଯେ ଲଗାହେଲୁଁ ଜାଣ
ମୂଳ କଳନ୍ତର ଯେତେ
କାର୍ଯ୍ୟ ସରିଲେ ଏ ଭଣ୍ଡାର ପଦାର୍ଥ
ବୁଝିନେବୁ ବିଧିମତେ ॥

ପ୍ରଭୁଙ୍କୁ ବନ୍ଦିଣ କୁବେର କହଇ
ଶୁଣ ତୁମ୍ଭେ ଚକ୍ରପାଣି
ଯେଉଁ ମୁଖରେ ଯୁଧିଷ୍ଠି ଋଣ ନେବେ
ସେ ମୁଖେ ଦେବେକ ଆଣି ॥

ଶ୍ରୀକୃଷ୍ଣ ବୋଇଲେ ତୁ ଯାହା କହିଲୁ
ଶାସ୍ତ୍ରବିଧି ପରମାଣ
ସାହୁ ଖାତକର ଯେମନ୍ତ ଦେଖ୍ଣର
ତୋ ଆଗେ କହିବା ଶୁଣ ।।

ଧର୍ମଶାସ୍ତ୍ର ପରମାଣେ କହୁଅଛୁଁ
ଭ୍ରାନ୍ତି ନ କରିବୁ କିଛି
ସାହୁ ଖାତକ ବୋଲଣ ଦୁଇକଥା
ଘୋରଯୁଗେ ଏବେ ଅଛି ।।

ଧନଦେଇ ସାହୁ ଦ୍ରବ୍ୟ ମାଗିଗଲେ
ଖାତକ କରଇ ଶଙ୍କା
ନେବାମୁଖ ଆଉ ଦେବାରେ ନୁହଇ
ଅବଶ୍ୟ କରଇ ଦକା ।।

ଲେଖା ଯେବେ ଆସି ସାହୁଘରେ ପଶି
କହେ ମଧୁର ବଚନ
ପାଇ ଅର୍ଥ ମିଛେ ମିଛେ ବୋଲୁଥାଇ
କାଲି ଶୁଝିବି ତୋ ଋଣ ।।

ଲାବଣ୍ୟ ହୋଇ ମୁଖରେ କହୁଥାଇ
ଭିତର ମନରେ ବ୍ୟଥା
ଦ୍ରବ୍ୟ ଯେବେଆସି ଗୃହରେ ପଶିଲେ
ପାସୋରଇ ସବୁକଥା ।।

କହିଦିନେ ସାହୁ ଦୁଆରକୁ ଗଲେ
ବାଙ୍କକରି କହେ ମୁଖ
ରୋଜଗାର ଆଦ କିଛି କରନାହିଁ
କିଛିଟେ ପାଆନ୍ତି ଦୁଃଖ ।।

ସଙ୍ଗାଳ ଯେବେ ମୋ ବଣିଜକୁ ଗଲ
ତୁମ୍ଭଙ୍କୁ ଚାହାକୁ ଛନ୍ଦ
ଲାଭତ ତହିଁକି ଟଙ୍କାଏ ହୋଇଲା
ଗୁହାକୁ ହୋଇଲା ଗନ୍ଧି ।।

ଖାତକର ବାଣୀ ଏସନକ ଶୁଣି
ସାଦ୍ଧୁ ମନେ ମହାବ୍ୟଥା
ଅନ୍ତର୍ଗତେ ତାହା ବଗୃଣ ବୋଲଇ
ଏତ ବଜ୍ରମ୍ବଣ କଥା ।।

ଲାଭସେ ତୋହର କର୍ମର ବେଭାର
ହେଉଳ ଅବା ନହେଉ
ଘଣକ ପାଇଁ କାହାଣକ ଦେଉଛୁ
ମୋତେ ତ ଏମନ୍ତ କହୁ ।।

ଯେତେବେଳେ ମୋତେ ଗୋଜାପଣ ଦେଲୁ
କଉଡ଼ ପାଇଲୁ ଜାଣ
ତେତେବେଳେ ତେତେ ବନସ୍ତୀ ହୋଇଲୁ
ଏବେ କମ୍ପା ଏତେ ଟାଣ ।।

ଘରରେ ତୋହର ଯେସବୁ ବେଭାର
ଗୋରୁଗାଇ ଆଦିକର
ଋଣଖାଇ ଯେବେ ମୋତେ ଟାଣକଲୁ
କାଲ ହୋଇଯିବ ଧର ।।

ଏତେବୋଲ ସାଦ୍ଧୁ ଆପଣା ପଦାର୍ଥ
ନମନ୍ତେ କରନ୍ତେ ଯୋର
ଖାତକ ଯାଇ ରାଜା ଆଗେ କହିବ
କଥା ଯିବ ଏତେ ଦୂର ।।

ରାଜାବାଇ ପୁଣ ନଜେ ନ ବୁଝିଣ
ସଭାକୁ ଦେବେ ସେ କଥା
ଲୋକଙ୍କୁ ବୋଲବେ ବୁଝ ତୁମ୍ଭେମାନେ
ସାଦ୍ଧୁ ଖାତକର କଥା ।।

ଥିଲା ନଥିଲା ଦୁଇକଥା ବୁଝିଣ
ବଗୃଣବ ଧର୍ମବାଟ
ଅଳପ ବହୁତେ ବୋଧ ଶୋଧ କର
ଛୁଣ୍ଡାଇ ଦଅ ଏ ଲଟ ।।

ନଥିଲା ଖାତକ ମୂଳେ ମୂଳେ ଦେଉ
　　　　　　　　ସଭାରେ ନ ପଡୁ ଗୋଳା
ନ୍ୟାୟ୍ୟ କଲା କଥା ଯେମନ୍ତ ପ୍ରକାରେ
　　　　　　　　ଶେଷକୁ ହୁଅଇ ଖୋଳା ॥

ନେବାମୁଖ ଆଉ ଦେବାରେ ନଥାଇ
　　　　　　　　ଏ ତ ସ୍ୱଭାବ ଲକ୍ଷଣ
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
　　　　　　　　ସାହୁ ଖାତକର ଗୁଣ ॥

ଗୋବିନ୍ଦଙ୍କ ବାଣୀ କୁବେର ଯେ ଶୁଣି
　　　　　　　　ଶିରରେ ଯୋଡ଼ିଲେ କର
ବୋଇଲା ଖେଦେଦ ଆବର କଥାଏ
　　　　　　　　କହ ମୋତେ ଚକ୍ରଧର ॥

ସାହୁ ଖାତକର ଯେ ବିଧି ଆଗ୍ରର
　　　　　　　　ଶ୍ରୀମୁଖେ କହିଲ କନା
ଋଣ ନେଇ ସାହୁ ଦୁଃଖ ପାଇଲେ ଯେ
　　　　　　　　ଅଧର୍ମ ହୋଇବ ମିନା ॥

ଖାତକ ଯେ ଯାଇ ରାଜା ଆଗେ କହି
　　　　　　　　ସଭା ବସାଇଲା ବେଗେ
ଦୁଇ କୁଳଧର୍ମ କେମନେ ରହିବ
　　　　　　　　ଶ୍ରୀମୁଖେ କହିବା ଏବେ ॥

ଶୁଣି ଶ୍ରୀପତି ହରଷ ହୋଇ ମତି
　　　　　　　　ବୋଇଲେ ଶୁଣ କୁବେର
ତାହା ତୋର ଆଗେ ବଖାଣ କହିବା
　　　　　　　　ଧର୍ମ ଅଧର୍ମ ବେଭାର ॥

ସାହୁ ଧର୍ମହାଦେ କେମନ୍ତେ ଭୁଟଇ
　　　　　　　　କଳନ୍ତର କରେ ଠାଣ
ଏକ ବରଷକ ଭିତରେ ମୋହୋର
　　　　　　　　କାହାଣକେ ଆଠପଣ ॥

ଏ କେଉଁ ଜନ୍ମ କରମ ଫଳରେ
ପଦାର୍ଥ ହୋଇବା ପାଇଁ
ମୂଳ କାରଣ ଯେତେକ ହୋଇଥାଇ
ଖାଦକ ଉପରେ ଥାଇ ॥

କାଳନ୍ତର ମାସେ ପଡ଼ିଆ ହୋଇଲେ
ତେଜ କରଇ ପ୍ରମାଣ
ସେବକ ଉପରେ ଯେମନ୍ତ ଥାଇଛି
ଯାଆନ୍ତର ପ୍ରକ୍ଷେପଣ ॥

ଦୁଆର ମାଡ଼ ଅଗ୍ରଜନେ କରଇ
ନଖାଇଣ ଅନ୍ନ ପାଣି
ନାନା ପ୍ରକାରେ ଗାଳମନ୍ଦ କରଇ
କର୍ଣ୍ଣରେ ଯାହା ନଶୁଣି ।

ବାପଅଜା ସାତ ପୁରୁଷ ଝାଡ଼ଇ
ଜନ୍ମଥାଏ ଯେତେ କଥା
କ୍ରୋଧର ଦେଖୁ ଦୂରପଦୁ ଜଳରେ
ନ ଲାଗଇ ତେତେ ବ୍ୟଥା ।

ଘାଇ ମାଙ୍କିସ ଏକଲର ଦଗାଣ
ଲବଣ ଦେଲେ ଯେମନ୍ତେ
ନଥିଲ ଖାଦକ ଦେହକୁ ଡାକଇ
ସାଦ୍ଧ ବଚନ ତେମନ୍ତେ ।

ଖଣ୍ଡଦୃଷ୍ଟ ଯେବେ ସାଦ୍ଧୁ ଖାଦକ
ଦେଖିବ କେଉଁ ଲୋଚନେ
ପମ ଅସ୍ପୃଷ୍ଟ ଖାଦକଙ୍କ ପ୍ରାଣ
ସେଇ ଈଶ୍ୱରଇ ମନେ ।

ସିଂହକୁ ଦେଖି ଯେମନ୍ତେ ଛୁଟାଇ
ଶୃଗାଳର ଜୀନ ବୁଝେ
ସାଦ୍ଧୁ ଦେଖିଲେ ଖାଦକ ଦେହକୁ
ଜୀବନ ତେମନ୍ତ ଯାଏ ।

ହୃଦପଦ୍ମେ ମେ ଯେ ମୋତେ ସେବା କରି
ପାଉଥାଇ ମନେ ଖେଦ
ସ୍ତମ୍ଭୀଭୂତ ହୋଇ ଠାବରେ ରହଇ
ନ ଚଳଇ କର ପାଦ ॥

ଥିଲା ନଥିଲା ନଜାଣି ସାଧୁ ଯେବେ
କରନ୍ତର ଦେବ ଧାଡ଼
ଖାନକ ପୁଣି ଯେ ସ୍ଥାନ ଛାଡ଼ିଗଲେ
ମୂଳ ସୁଝା ଯାଇ ବୁଡ଼ ॥
ଆମ୍ଭ ଦେଖି ଯେବେ ବସୁର ନକଲା
ମାଧୁର ଅଧର୍ମ କଥା
ଆଜି ଆଜି ଯେବେ କରଣ କଲା ସେ
ଖାତକ ପାଇବା ବ୍ୟଥା ॥

ବରଷକ ମୂଣ୍ଡେ ଦେଇ କଳନ୍ତର
ସାଧୁର ଅଧର୍ମ ଏହୁ
ସୁଝି ନପାରି ଖାତକ ପଳାଇଲେ
ବୋଲନ୍ତି ମୋ କର୍ମେ ନାହିଁ ॥

ଅର୍ଦ୍ଧନେ ପୁଣ ବସୁର ବୋଲଇ
କବୁଲି କରବ ଆଜ
କସତ ପଣେ ପଳାଇ ଗଲା ସେବେ
ଛମାସ ବରଷ ଯାଉ ॥

କଳନ୍ତର ଯହିଁ ସୁଝି ନ ପାରିଲା
ଭସ୍ମ କଲି ତା ତଥେ
ପାଞ୍ଚ ନେଉଟାରେ କଥା ଘଟାଇଲେ
ମୂଳ ଦେବା ଦେବ ମୋତେ ॥

ଏମନ୍ତେ ଏହି ଖୋକାଏ ଦିନ ଗଲେ
ଖାତକ ଠାବରେ ମିଳ
ଟୋକାପତ୍ର ସେହ ଘରର ଯାଇଁ ପଶି
ନାନାମତେ ଦଣ୍ଡ କଲ ॥

ଦେଶ ପଧାନ ପୁରୁଷେଠି କରଣ
ସବୁରି ଆଗରେ କହ୍ନ
ନତକ ନଷ୍ଟ ଗୁହାରି କରୁଥାଇ
ବଡ଼ମା ପଣରେ ରହ୍ନ ॥

ଗୋଜାପଷ ଦେନ ଋଣ ଦେଇଥାଇ
ଖାତକ ମୋ ପାଶେ ଥିଲା
ଦ୍ରବ୍ୟ ଦେନ ଆସି ତୁମ୍ଭେ ଦେଶେ ପଶି
ବଡ଼ ପକ୍ଷ ପଣ କଲା ॥

ଧଳବେ ଆସି ଦୂର ଦେଶେ ପଶିଲା
କେତେଦିନେଁ ଗୃଲବା ବାଟ
ଏଥକୁ ତୁମ୍ଭେ ଉଦଯୋଗୀ ହୋଇଣ
ଛୁଣ୍ଡାଇ ଦଅ ଏ ଲଟ ॥

ଏସନକ ବାଣୀ ସାହୁଠାରୁ ଶୁଣି
ଦେଶଲୋକ ମନେ ବ୍ୟଥା
ସଭା କରିଣ ଖାତକକୁ ଡାକିଣ
ପଚୃରନ୍ତି ସବୁ କଥା ॥

ଶୁଣ ହୋ ଭାଇ ପ୍ରସନ୍ନ ମୁଖ ହୋଇ
ଧର୍ମ ଶାସ୍ତ୍ର ପରମାଣ
ସାହୁ ଯେବେ ତୋର ଘରକୁ ଅଇଲା
ସୁଝି ପାରିବୁ କି ଋଣ ॥

ପାରିଲେ କହ ନପାରିଲେ ରହ ଯେ
ବଳପଣ ତୋତେ ନାହିଁ
ଆମ୍ଭେମାନେ ଲଟ ଛୁଣ୍ଡାଇ ଦେବାକୁ
ଆସିଛୁଁ ମଧ୍ୟସ୍ଥ ହୋଇ ॥
ଦେଶ ଲୋକ ବାଣୀ ଏସନକ ଶୁଣି

ଖାତକ ବୋଲଇ ଶୁଣ
ଥୋକାଏ ମୋତେ ଛୁଡ଼ ବାଡ଼ ନକଲେ
କେମନ୍ତେ ସୁଝିବ ଋଣ ॥

ମାସକୁ ମାସ କଳନ୍ତର ଲଭ୍ୟ ସେ
ମୋହଠାରୁ ଅଛି ନେଇ
ପୁଣ ମୂଳ କଳନ୍ତର ଦଶଗୁଣ
ମୋ ପୁରେ ଅଛି ବସାଇ ।।

ଯେବେ ତାହାର ପରଶୋଧ ପାଇବ
ମୋତେ କିଛି ଘୃଡ଼ ଦେଉ
ଗୋଜାପସ୍ତ ଚର ଦ୍ରବ୍ୟ ଘେନଯାଉ
କଳନ୍ଦ୍ରନ୍ଦ କିଛି ନୋହୁ ॥

ଖାତକର ବାଣୀ ଦେଶ ଲୋକେ ଶୁଣି
ସମସ୍ତେ ବୋଇଲେ ଗୁଜ
ଲେଖଣ ବୁଝିଲେ ମୂଳ କଳନ୍ତର
ଦ୍ୱିଗୁଣ ହୋଇଛି କାଢ଼ ॥

ତେଣୁକର ତୋତେ ଖାତକ କଣିଲା
ମୁକତ ହୋଇଲୁ ଏଣେ
ଧାନ ତିନିଗୁଣ କଉଡ଼ି ଦ୍ୱିଗୁଣ
ଧର୍ମ ଶାସ୍ତ୍ର ପରମାଣେ ॥

ଏହି ଭାବରେ ପାଳିବା ଯାଏ ସାହୁ
ଖାତକ ଉପରେ ପଣ
ତେଣିକ ତାହା ମୁଖରେ ଯାହା ଦେବ
ତହିଁକି ନକରେ ଟାଣ ।।

ପଣେ ମାଣେ କରି ଯେତେକ ପାଇବ
ସନ୍ତୋଷେ ଘେନିବ ତାହା
ଆଳଟ ଆଉ କେବେହେଁ ନ କରିବ
ଶାସ୍ତ୍ରରେ କହୁଛି ଏହା ॥

ଏଥକୁ ଅବା ଯେ ବଢ଼ୁର ନକଣ
ସବୁ କଳନ୍ତର ମାଗି
ଖାତକ ଧର୍ମ ବେଭାରେ ବଡ଼ ହୋଇ
ସାହୁର ଖାତକ ଲାଗି ॥

ମୂଲକୁ ଯେବେ ଦ୍ୱିଗୁଣ କଲନ୍ତର
ନଦେଲ କରବ କୋପ
ସାହୁର ତହିଁ ଅଧର୍ମ କିଛି ନାହିଁ
ଖାତକ ପାଇବ ତାପ ॥

ନିର୍ଗୁଣ ଖାତକ ବେଳ ଗୁଣ କର
କଲନ୍ତର ଥିବ ଦେଇ
ଶୁଝିଲା ବେଳେ ଥୋକାଏ ନ ଛାଡ଼ିଲେ
ତହିଁରେ ଅଧର୍ମ ପାଇ ॥

ତେଣୁକରି ତୋତେ ପ୍ରବୋଧ କରୁଛି
ଖାତକ କରିବା ଗୋଜା
ଏହି ପଦାର୍ଥ ତୋ ଆନଠାରେ ବଡ଼ୁ
ଅଧିକ ନବୋଲ ଯାଯା ॥

ଏମନକ ସାହୁ ବଚନ ଶୁଣିଣ
ଜଗତ ଜନକ ମୁଖେ
ଥୋକାଏ ଏଥୁ ଛାଡ଼ ବାଡ଼ କରିଣ
ଦେନଯାଇ ତାହା ସୁଖେ ॥

ସତ ସାହୁପଣ ଯେ ଅବା କରିଣ
ଏମନ୍ତ ପ୍ରକାରେ ବଧି
ନସତ ସାହୁର ଧର୍ମ ଛାଡ଼ ଯାଇ
ଧନରେ ହୁଏ ପ୍ରବୋଧି ॥

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
ତୁମ୍ଭେ ପୁଚ୍ଛା କଲ ଯାହା
ସାହୁ ଖାତକର ଏମନ୍ତ ବେଭାର
ତୋ ଆଗେ କହିଲୁ ତାହା ॥

ଗୋବନ୍ଦ ବଚନେ କୁବେର ବୋଇଲେ
ଶୁଣିମା କରୁଣା ସାଇଁ
ଗତ କଲନ୍ତର ରହିଲେ ଯେ ସାହୁ
ଖାତକକୁ କଣେ ନାହିଁ ॥

ଖାତକ ମେ ଋଣ ସୁଝି ନ ପାରଣ
ସ୍ଥାନ ଗୃହ ଗଲା ଯେବେ
ଦୁଇକୁଳ ଧର୍ମ କେମନ୍ତେ ରହିଲା
ବସ୍ତାଙ୍କ କହିବା ଏବେ ॥
ସାଧୁ ଯେ ନଷ୍ଟେ କଳନ୍ତର ଘେନଇ
ସେକଥା ଅଟଇ ସତ
ସାଧୁ ଖାତକର ଯେମନ୍ତେ ନେଉଣ
କହିବା ପରମ ତତ୍ତ୍ୱ ॥
ଧାନ ପାଞ୍ଚ ପାଇଁ ପ୍ରମାଣ ହୋଇବ
କଉଡ଼ି ନୋହିବ ଚଡ଼ା
ଷୋଳ ପଣରେ କଳନ୍ତର ହୋଇବ
ସାତଗଣ୍ଡା ଦୁଇକଡ଼ା ॥
ତିନି ବରଷ ଯେ କୋଡ଼ିଏ ଦିବସ
ସାତମାସ ପୂରିଗଲେ
ମୂଳ କଳନ୍ତର ଦୁଇ ମଟ ହେବ
ଖଡ଼ି ଘେନି ଲେଖାକଲେ ॥
ଏ ଅବଧି ସାତବରଷ ତିନିମାସ
ଦଶଦିନ ଯାଏ ଗଣି
ଏତେ କଳନ୍ତର ସୁଝି ନ ପାରିଲେ
ଖାତକ ସାଧୁଙ୍କୁ ଜାଣି ॥
ଦେଖିବ ତାହା ଉପରେ ପଣନାହିଁ
ଶ୍ରୀମୁଖେ କହିଛ କଥା
ତାହାର ମୁଖେ ଯେତେ ଦେଇ ପାରିବ
ଅଧିକେ ଅଧର୍ମ ସିନା ॥
ଆକଟ ଆଉ କେବେହେଁ ନକରିବ
ସନ୍ତୋଷେ ଯେତେକ ପାଇ
ପାପପୁଣ୍ୟ ଦୁଇ ବସ୍ତୁର ନକର
ଦୁଇକୁଳ ଧର୍ମ ଖାଇ ॥

---

କଳନ୍ତର — ସୁଧ

ନଜନ୍ତର ସାହୁ ବେଜ ନ ପାଳଲେ
ଦ୍ୱିଗୁଣ ଦ୍ୱିଗୁଳ ସାର
ଏଥୁ ଉଣାକଲେ ଅଧର୍ମ ହୋଇବ
ଖାତକକୁ ନାହିଁ ପାର ॥
ଋଣ ଦେଇ ସାହୁ ନିଶ୍ଚ ହୋଇଲେ
ନଗଲେ ଖାତକ ଠାକୁ
ବରଷକ ମୁଣ୍ଡେ ବେଳେ ନ ମାଗିଲେ
ଖାତକ ଜିଣିମ ତାକୁ ॥
ମିହାଣା ହୋଇ ତୁ କାହିଁ ରହିଥିଲୁ
ବିଷୟ ନହିଲା ଯହିଁ
ଥିଲାବେଳେ ବାରେ କଥିକ ନଇଲୁ
ଏବେ ଦେବ ତୋତେ କାହୁଁ ॥
ଦେଖ ମୋ ଅବସ୍ଥା କୁଟୁମ୍ବ ବ୍ୟବସ୍ଥା
ଖାଇବାକୁ ନାହିଁ ଗ୍ରାମ
ଏତେବେଳେ ତୋତେ କଅବା ଦେବ
ଛମାସ ଅନ୍ତରେ ଆସି ॥
ନ୍ୟାୟ ବଳେ ସାହୁ ଜିଣି ନ ପାରିବ
ନିର୍ଘଣ ହୋଇବ ହାଲେ
ଲୋକେ ବୋଲିବେ ତୁ କପାଇଁ ନଇଲୁ
ଖାତକର ଥିଲାବେଳେ ॥
ପ୍ରଭୁଙ୍କର ବାଣୀ ଏମନକ ଶୁଣି
କୁବେର ମନରେ ଦୁଃଖ
କରପଦ୍ମ ଯୋଡ଼ି ଗୃମୂରେ କହିଲା
ଶୁଣ ତୁମ୍ଭେ ପଦ୍ମମୁଖ ॥
ଅଶେଷ କୋଟି ବ୍ରହ୍ମାଣ୍ଡର ଠାକୁର
ସକଳ ଜନ୍ତୁର ନାହା
ବିନା ଆଜ୍ଞାରେ ତରଣି ନ ହଲଇ
ତୁମ୍ଭଙ୍କୁ ଉବାର କାହା ॥

---

ଉବାର — ନିଷେଧ
ତରଣ — କୁଟା

ଶ୍ରୀକୃଷ୍ଣଙ୍କ ବୋଇଲେ ମୁଁ ସବୁ ଜାଣଇଁ
ଆମ୍ଭଙ୍କୁ ଉଦାର କୋଟି
ଏକର ପଦାର୍ଥ ଆନକୁ ଦେଉଁ ଯେ
ଶଠିପନ ମାନ କାଟି ॥

ସାହୁର ଧନ ନଥିଲେ ତା ଜୀବନ
ସବୁତ ନୋଠ ଭଣ୍ଡାର
ଆଜ୍ଞା ନ ପାଇଲେ କେ ଗ୍ଭର ପାଇବ
ଦେବାକୁ ଗଙ୍କ କାହାର ॥

ନଥିଲା ଲୋକକୁ ଯଞ୍ଚ କମନେ ମୁଁ
ସାହୁ ଦଅଇ ଧନ
ଦୁଇ କୁଳର ମଧ୍ୟସ୍ଥ ହୋଇଥାଇ
ଏକଥା ଧ୍ରୁବ ବଚନ ॥

ଯାଚକର ଧର୍ମ କେମନେ ଜାଣିମା
ସାହୁକୁ ମାୟା ନକର
ଗୃହ ଭିତରେ ଯେତେକ ଦ୍ରବ୍ୟ ଥିବ
ଦେଖାଇବ ବସ୍ତୁଧର ॥

ଧାନ କଉଡ଼ି ଯେ ସୁନା ରୂପା ଯେବ
ଗୋରୁ ଗାଈ ଆଦି ମୂଲେ
ଯେତେକ ଦ୍ରବ୍ୟ ଆପଣେ ଅର୍ଜିଥିବ
ଦେଖାଇବ ସବୁଠାଲେ ॥

ଗୁପତ କରି ପଦାର୍ଥ ନ ଥୋଇବ
ନିର୍ମଳ କରିବ ମନ
ତାହାଙ୍କୁ ମୋର ଦଣ୍ଡବତ ଅଛଇ
ଏକଥା ଧ୍ରୁବ ବଚନ ॥

ଲାବଣ୍ୟ ଭାବେ ବଚନରେ କହିବ
ଅନ୍ୟେ ନ କରିବ ମାୟା
ଏମନ୍ତ ଯାଚକ ସଙ୍ଗରେ ମୁଁ ଥାଇ
ତାଙ୍କୁ ମୋର ବଡ଼ ଦୟା ॥

ସାଧୁ ଧର୍ମପଣ କେମନ୍ତେ ଜାଣିମା
ଖାଦକ ଅବସ୍ଥା ଦେଖି
ଅନ୍ନବସ୍ତ୍ର ସବୁ ଯେତେକ ଲାଗିବ
ବାରମାସ ଦେବ ଲେଖି ॥

ନଥିଲା ଦେଖିଲେ ଜୀବକା ନିମନ୍ତେ
ସଙ୍ଗାନ ପୁଣି ହିଁ ଦେଇ
କଦାଚ ମଜ୍ଜୁରୁ ବଇଦ ଯେମନେ
ପ୍ରତିପାଳ ଆଣୁଥାଇ ॥

ଖାତକକୁ ପୁହଁ ବୋଧକରି କହ
ତୁ ଯେବେ ପାଇଲୁ ଦୁଃଖ
ମୋହ ଧର୍ମକୁ ମୁଁ ପଦାର୍ଥ ଦେଇଛୁ
ତୋହ ଧର୍ମ ଏବେ ରଖ ॥

ଲେଖି ଯୋଖି ଘଡ କୁଟୁମ୍ବ ଖାଇବେ
ନ ଘୁଣ ବିମୁଖ ବୃଥ
ଆପୁନ୍ତି ବ୍ୟୟ ବଳକା ନକରିବୁ
ଯେମନ୍ତେ ମୋ ଦ୍ରବ୍ୟ ସୁସ୍ଥ ॥

ଧର୍ମ ପରମାଣେ କାର୍ଯ୍ୟ କରେ ଯେହୁ
ଦୟାରଖି ହୃଦଗତ
ଏମନ୍ତ ଲୋକ ମୋର ପ୍ରିୟ ଅଟନ୍ତି
ତାଙ୍କୁ ମୋର ଦଣ୍ଡବତ ॥

ନଥିଲା ଖାତକ ମଲା ବୃକ୍ଷ ସର
ସାଧୁ ଅଟେ ଗଙ୍ଗାଜଳ
ବୃକ୍ଷ ପଲ୍ଲବଲେ କଢ଼ି ବଢାଇ
ମୁଖେ ତୋଳେ ଫୁଲଫଳ ॥

ପ୍ରଭୁଙ୍କର ବାଣୀ ଏସନକ ଶୁଣି
କୁବେର କର ଯୋଡ଼ିଲା
ଖଣ୍ଡେ ଦୂର ପଞ୍ଚଘୁଞ୍ଚା ଦେଇଣ ସେ
ଚରଣ ତଳେ ପଡ଼ିଲା ॥

ମୁଣିହିଁ ଉଠି ଦଣ୍ଡବତ ହୋଇଣ
ଲଲଟେ ଯୋଡ଼ିଲ ହସ୍ତ
ବୋଇଲ ମୋହର ବଚନ ଶୁଣିମା
ଅଶେଷ ବ୍ରହ୍ମାଣ୍ଡ ନାଥ ॥
ଶ୍ରୀମୁଖରେ ଯାହା ଆଜ୍ଞା ଦାନକଲେ
କଉଡ଼ି ନୋହିବ ଚଢ଼ା
ଷୋଳ ପଣରେ କଳନ୍ତର ହୋଇବ
ସାତଗଣ୍ଡା ବେନ କଡ଼ା ॥
ତିନ ବରଷ ସାତମାସ କୋଡ଼ିଏ
ଦିବସ ପୂରିବ ଯେବେ
ଏତେଦିନେ ମାତ୍ର ମୂଳ ସେ ପାଇବ
କିଧନ ଅର୍ଜିବ ତେବେ ॥
କୁଟୁମ୍ବ ତାର କେତେ ଭାତ ଖାଇବ
ରାଜାକୁ ବୋଧିବ କାହା
ଏଥକୁ ମୁହିଁ କେମନ୍ତ ପ୍ରତେ ଯିବି
ଆଜ୍ଞା ହେଉ ଚଉବାହା ॥
ଶ୍ରୀକୃଷ୍ଣ ବୋଇଲେ ତୁ ଯାହା କହିଲୁ
ଏ ଅଟେ ଉଚିତ ବାଣୀ
ସାନ ବଡ଼ କରି ବିଧାତା ପୁରୁଷ
ନିର୍ମାଣ କରିଛି ଆଣି ॥
ହାନି ଲଭ ବାଣୀ ଦୁଃଖ ସୁଖ ଯେନ
ଲିଆଣ ମାୟା ସଂସାର
ପାଞ୍ଚ ଅଙ୍ଗୁଳି ସେ ସମାନ ନୁହଇ
ଏକଥାକୁ ତଥ୍ୟ କର ॥
ଅଳପ ଧନ ଅରଜ ଯେଉଁମାନେ
ଗିରସ୍ତି ବୋଲନ୍ତି ସର୍ବେ
ନୟତ ପଣେ ସାହୁପଣ କରନ୍ତି
କୁଟୁମ୍ବ ପୋଷିବ ଲଭେ ॥

ଶଏ ପର୍ଶ କଉଡ଼ି ଅରଜିଲେ
ବୋଲୁଥାନ୍ତି ଆମ୍ଭେ ସାଧୁ
ଆମ୍ଭ ବନ୍ଧୁ ଆଉ ସଂସାର ଭିତରେ
ବନ୍ଧୁ ଅଛନ୍ତି ଅବା କେହୁ ॥

ଖାତକକୁ ଶୁଣି ହରଷେ ବୋଲନ୍ତି
ନାହିଁକି ଅଇଲୁ ଅବା
କାହାଣକ ମୁଣ୍ଡେ ପଣେ ଦେବୁ ଯେବେ
ଏହିକ୍ଷଣି ଗଣିଦେବା ॥

ନୋହିଲେ ଆଉ କେଉଁଠାକୁ ପାଇବୁ
ତାହାକୁ କଟାଳ ଯାଇଁ
ଏକା କଥାଏ ତୋ ଆଗରେ କହିଲୁ
ପଛକୁ ଆଉ ନପାଇ ॥

ଏମନ୍ତେ ତହିଁ ପ୍ରବୋଧ ତାକୁ କହି
ଗୃହ ଭିତରେଣ ପଶି
ନଥିଲ ଖାତକ ମ୍ଳଭବେ ନିରେଖି
ଆଶା କରିଥାଇ ବସି ॥

ଅନ୍ତର୍ଗତେ ତାର ଦୁଃଖର କରଣ
ଭ୍ରାନ୍ତି ଉପେକ୍ଷଇ ମନୁ
ବୋଲଇ ଆଉ ମୁଁ କାହାକୁ ମାଗିବି
ଯେତେ ଦେନବ ଏ ଦେନୁ ॥

ମୋ ମନ କଥା ଅନ୍ତର୍ଗତେ ବାରତା
ସେ କାହୁଁ ଜାଣିବ ନକ
ଏକ୍ଷଣି ଆଗ ସଙ୍ଗାଳ କରଣ
କୁଟୁମ୍ବ ପୋଷିବ ଠିକ ॥
ଏତେ ବିଚାର ସାଧୁକୁ ଅନାଇଣ
ବୋଲଇ ଶୁଣ ଗୋସାଇଁ
ଯେତେକ ଦେନମ ତୁମ୍ଭ ମୁଖେ ଦେନ
ମୋହର କଟାଳ ନାହିଁ ॥

ଖାତକର ବାଣୀ ଏସନକ ଶୁଣି
ସାଧୁ ମନରେ ହରଷ
ହଇବେ ମେ ମେ ଅଳପ ଲୋକ ସିନା
କଉଡ଼ ପାଇଲେ ତୋଷ ॥

ସାରଣା କଲ କଳନ୍ତର ଘେନଣ
ପାପକୁ ନଥାଇ ଦକା
ଧର୍ମ ଶାସ୍ତ୍ରକୁ ବର୍ଣ୍ଣଲେ ଏମାନେ
ସାଧୁରେ ନୁହନ୍ତି ଲେଖା ॥

ନମତ ପଣେ ଜୀବକା ବୃତ୍ତିପାଇ
ଖାତକକୁ ବନ୍ଦେ ମାର
ଏମନ୍ତେ ଲୋକମାନଙ୍କୁ ଧନପତି
ସାଧୁରେ ଲେଖା ନକର ॥

ଶ୍ରୀଜଗନ୍ନାଥଙ୍କ ବଚନ ଶୁଣିଣ
କୁବେର ଯୋଡ଼ିଲା ହସ୍ତ
ବୋଇଲା ମୋତେ ଅବଧାନ ହୋଇବ
ଅଶେଷ ବ୍ରହ୍ମାଣ୍ଡ ନାଥ ॥

ଅଳପ ଧନ ଅର୍ଜଲା ଲୋକର
ଋଣ ଦେବା ବିଧିନାହିଁ
ସାଧୁ ବିଧିମାନ କାହାକୁ ବୋଲିବା
ଶ୍ରୀମୁଖେ କହ ଗୋସାଇଁ ॥

ପ୍ରଭୁ ବୋଇଲେ ଶୁଣିମା ଧନପତି
ଯେବଣ କଥାଟି କହୁ
ଲକ୍ଷେ ମାଢ଼କୁ ବର୍ତ୍ତମାନ ହେଲେ
ତାହାକୁ ବୋଲିବ ସାଧୁ ॥

ପଚିଶ ସହସ୍ର ମାଢ଼ ଋଣ ଦେଲେ
ଆବର ଅଧିକ ଗୁଡ଼
ପର ପଟାରେ ବଣିଜ କରୁଥିବ
ପଚିଶ ସହସ୍ର ମାଢ଼ ॥

ଆବର ପଚାଶ ମହସ୍ର ମାନ୍ଦେ
କୁନ୍ଦୁମ୍ବ ଗାନକୁ ଥୋଇ
ଆବର ପଚାଶ ମହସ୍ର ମାଡ଼ ଯେ
ଥିବ ଧନ ସ୍ଥିତ ହୋଇ ॥

ଏତେ ପ୍ରକାରେ ବସ୍ତୁର ଯେଉଁ ଲୋକ
ଧୀର ଭାବେ କାର୍ଯ୍ୟକରେ
ସେ ଯେ ସଂସାରେ ସାଦ୍ଧପଣ କରଇ
ଏ କଥା ଧର୍ମ ଶାସ୍ତ୍ରରେ ॥

ପାପ ପୁଣ୍ୟ ବେନ ଆଗପଛ ହୋନ
ନ କରଇ ଛନ୍ଦମାୟା
ଏମନ୍ତ ଭାବେ ସାଦ୍ଧପଣ କଲେ
ସେ ଖାତକକୁ ଥାଇ ଦୟା ॥

ତୁ ଯେ ଆମ୍ଭଙ୍କୁ ଦୃଢ଼କର ପୁଚ୍ଛିଲୁ
ସାଦ୍ଧ ଖାତକର ଗୁଣ
ଧ୍ରୁବ ବଚନ ମୋ ଆଗରେ କହିଲୁ
ଶ୍ରବଣ ପଥରେ ଶୁଣ ॥

ପ୍ରଭୁଙ୍କର ବାଣୀ ଏସନକ ଶୁଣି
ଧନପତି ମନେ ତୋଷ
ରଙ୍ଗିମା ଚରଣେ ଶରଣ ପଶଇ
ଅଚିନ୍ତିତ କୃଷ୍ଣ ଦାସ ॥

ଏତେ ତତ୍ତ୍ୱ ବାଣୀ ପ୍ରଭୁମୁଖୁ ଶୁଣି
କୁବେର ପୁଚ୍ଛିଲ ଏମା
ଯୁଧିଷ୍ଠି ଦେବଙ୍କୁ କେତେ ଧନ ଦେବା
ଆଜ୍ଞାହେଉ ଚକ୍ରଧାରୀ ॥

କୁବେର ବଚନେ ଶ୍ରୀକୃଷ୍ଣ ବୋଇଲେ
ତୋତେକ କହିବା ବାବୁ
ହୀର ମାଣିକ୍ୟ ମୁକୁତା ଆଦିକରି
ସୁବର୍ଣ୍ଣର ଚମ୍ପା ଦେବୁ ॥

ମୃଗଗଣା ଲକ୍ଷେ ନୃପଙ୍କ ଆସିବେ
ଗଣିତାରେ ହେବ ଲେଖା
ଜଣ ଜଣକେ ଅକ୍ଷତ ଅଲଙ୍କାର
ଯୁଧିଷ୍ଠି ଦେବେ ଯେ ଦେଖା ।।

ସେ ଯେ ମହାଧର୍ମ ସବୁର ଉତ୍ତମ
ବଚନ କହନ୍ତୁ ସତ
ତେଣୁକରି ତାଙ୍କ ପାଦରେ ମୋହର
କୋଟି ପ୍ରଣ୍ଡି ଦଣ୍ଡବତ ।।

ପ୍ରଭୁଙ୍କର ବାଣୀ ଏମନକ ଶୁଣି
ଧନପତି ବୋଲେ ତହିଁ
ଯେଉଁ ପ୍ରକାରେ ଶ୍ରୀମୁଖେ ଆଜ୍ଞାଦେଲ
ଅପ୍ରତେ ପାଉଛି ମୁହିଁ ।।

ସାହୁ ଖାତକର ଚରିତ୍ର ଅପାର
ଶ୍ରୀମୁଖେ କହିଲ ଯାହା
ତେଣୁକରି ପ୍ରଭୁ ତୁମ୍ଭର ଶ୍ରୀମୁଖେ
ପଚୁରୁ ଅଛି ମୁଁ ତାହା ।।

ଲକ୍ଷେ ମାଡ଼ ହାଦେ ଯାହାଙ୍କରେ ଥାଇ
ସାହୁଙ୍କୁ ସେ ବର୍ତ୍ତମାନ
ଏମନ୍ତ ହୋଇ ସଂସାରେ ଯେତେ ଲୋକ
ଅରଜିବେ କେତେଧନ ।।

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
କାହିଁ ପାଇଁ ଭ୍ରାନ୍ତ କରୁ
ପାଞ୍ଚ ଆଙ୍ଗୁଳି ସରିସମ ନୁହଇ
ଏହା କହିଁ ନ ବଚୁରୁ ।।

ସବୁ ଗିରିବର ସମାନ ନୁହଇ
ମେରୁ ଯେ ଅଟେ ପ୍ରଧାନ
ସବୁ ମୁକୁତା ଯେ ତୁଳନା ନୁହଇ
ଗଜ ମୁକୁତା ସମାନ ।।

ସବୁ ଗଜମାନେ ଗଜ ଯେ ନୁହନ୍ତ
ଗଜ ଅଟେ ଐରାବତ
ସବୁ ଅଶ୍ୱମାନେ ଅଶ୍ୱ ଯେ ନୁହଁନ୍ତ
ଉଚ୍ଚୈଶ୍ରବା ବଳବନ୍ତ ।।

ସବୁ ଲୁହାମାନେ ଲୁହା ଯେ ନୁହନ୍ତ
ଲୁହା ଅଟେ ଗଜ ବେଲ
ସବୁ କାଠମାନେ କାଠ ଯେ ନୁହଁନ୍ତ
ଚନ୍ଦନ ସଙ୍ଗେ କେ ତୁଲ ।।

ସବୁ ମାଟିମାନେ ମାଟି ଯେ ନୁହଁନ୍ତ
ମାଟି ଯେ ଗଙ୍ଗା ମୃତ୍ତିକା
ସବୁ ସ୍ତିରୀମାନେ ସ୍ତିରୀ ଯେ ନୁହଁନ୍ତ
ପଦ୍ମିନୀ ସ୍ତିରୀ ନାୟିକା ।।

ସବୁ ପକ୍ଷିମାନେ ପକ୍ଷୀ ଯେ ନୁହଁନ୍ତ
ନଜାଣି କପାଇଁ ବଡ଼
ଗରୁଡ଼ ସଙ୍ଗତେ ଆନପକ୍ଷୀ କପା
ଘଟନ କରତ ଲୋଡ଼ ।।

ସବୁ ଧେନୁମାନେ ଧେନୁ ଯେ ନୁହଁନ୍ତ
କପିଳା ସଙ୍ଗେ କେ ତୁଲ
ସବୁ ବୃକ୍ଷମାନେ ବୃକ୍ଷ ଯେ ନୁହଁନ୍ତ
ଅଶ୍ୱତଥ ସଙ୍ଗେ କେ ତୁଲ ।।

ସବୁ ମନୁଷ୍ୟ ଯେ ମନୁଷ୍ୟ ନୁହଁନ୍ତ
ମନୁଷ୍ୟ ପୃଥ୍ୱୀରେ ରଜା
ସବୁ ଜାତମାନେ ଜାତ ଯେ ନୁହନ୍ତ
ଜାତରେ ଉତ୍ତମ ଦ୍ୱିଜା ।।

ସବୁ ଋଷିମାନେ ଋଷି ଯେ ନୁହନ୍ତ
ଭୃଗୁଋଷି ଅଟେ ବଡ଼
ସବୁ ଯୋଗମାନେ ଯୋଗ ଯେ ନୁହନ୍ତ
ଶୋଭନ ଯୋଗ ଯେ ଗାଢ଼ ।।

ସବୁ ବନ୍ଧମାନେ ବନ୍ଧ ଯେ ନୁହନ୍ତ
ବନ୍ଧ ସେତୁବନ୍ଧ ଏକା
ସବୁ ବନମାନେ ବନଯେ ନୁହନ୍ତ
ନନ୍ଦନ ବନ ସେ ଲେଖା ।।

ସବୁ ପାଟମାନେ ପାଟଯେ ନୁହନ୍ତ
ଶଗଡ଼ ଉତ୍ତମ ପାଟ
ସବୁ ମରଣ ଯେ ମରଣ ନୁହଇ
ମରଣ ଯେ ମୁଣ୍ଡକାଟ ।।

ସବୁ ଚକ୍ରମାନେ ଚକ୍ରଯେ ନୁହନ୍ତ
ସୁଦର୍ଶନ ଚକ୍ର ଏକା
ସବୁ ବେତମାନେ ବେତ ଯେ ନୁହନ୍ତ
ଗଉଣୀ ମଙ୍ଗେ ଦେ ଲେଖା ॥

ସବୁ ପତ୍ରମାନେ ପତ୍ର ଯେ ନୁହନ୍ତ
ପତ୍ରଅଟେ ତାଳପତ୍ର
ସବୁ କ୍ଷେତ୍ରମାନେ କ୍ଷେତ୍ର ଯେ ନୁହନ୍ତ
କ୍ଷେତ୍ର ଅଟେ ପୁରୀକ୍ଷେତ୍ର ॥

ସବୁ ଦ୍ୱୀପମାନେ ଦ୍ୱୀପ ଯେ ନୁହନ୍ତ
ଜମ୍ବୁଦ୍ୱୀପ ମଙ୍ଗେ ସର
ସବୁ କୂପମାନେ କୂପଯେ ନୁହନ୍ତ
ସୁନା କୂପ ନୀଳଗିରି ॥

ସବୁ ଚିନ୍ତାମାନେ ଚିନ୍ତା ଯେ ନୁହଇ
ଋଣ ସେ ଚିନ୍ତାରେ ଲେଖି
ସବୁ ଦୁଃଖମାନେ ଦୁଃଖ ନୁହଇ ଯେ
ପରଭୃତ୍ୟ ବଡ଼ ଦୁଃଖୀ ॥

ସବୁ କଷ୍ଟମାନେ କଷ୍ଟମେ ନୁହନ୍ତି
ଅନ୍ନକଷ୍ଟ ମହାଦୁଃଖ
ସବୁ ଅଚିନ୍ତା ଯେ ଅଚିନ୍ତା ନୁହଇ
ସାଧୁତା ପଣରେ ସୁଖ ॥

ସବୁ ଶକ୍ତିମାନ ଶକ୍ତି ଯେ ନୁହଇ
ଜଗଦ୍ଧାତ୍ରୀ ଏକା ଶ୍ରେଷ୍ଠ
ସବୁ ବ୍ରତମାନେ ବ୍ରତ ଯେ ନ ହୁଇ
ଏକାଦଶୀଟି ଗରିଷ୍ଠ ॥

ସବୁ ପଥମାନେ ପଥ ଯେ ନୁହଇ
ପଥ ଏକ ସ୍ୱର୍ଗପୁରୀ
ସବୁ ରଥମାନ ରଥ ଯେ ନୁହନ୍ତି
ନନ୍ଦିଘୋଷ ରଥେ ସାର ॥

ସବୁ ମନ୍ତ୍ରୀମାନେ ମନ୍ତ୍ରୀ ଯେ ନୁହନ୍ତି
ସହଦେବ ମନ୍ତ୍ରୀ ସମ
ସବୁ କ୍ଷତ୍ରୀମାନେ କ୍ଷତ୍ରୀ ଯେ ନୁହନ୍ତି
କ୍ଷତ୍ରୀ ଅଟେ ପର୍ଶୁରାମ ॥

ସବୁ ପାଠମାନେ ପାଠ ଯେ ନୁହନ୍ତି
ଗୀତା ଅଟେ ଦିବ୍ୟପାଠ
ସବୁ ଘାଟମାନେ ଘାଟ ଯେ ନୁହନ୍ତି
ଗୋଧିକା ଯମୁନା ଘାଟ ॥

ସବୁ ନଦୀମାନେ ନଦୀ ଯେ ନୁହନ୍ତି
ଗଙ୍ଗା ସଙ୍ଗେ କେହୁ ସମ
ସବୁ ଗଡମାନେ ଗଡ଼ ଯେ ନୁହନ୍ତି
ଲଙ୍କାଗଡ଼ ଅନୁପମ ॥

ସବୁ ସାହୁମାନେ ସାହୁ ଯେ ନୁହନ୍ତି
କୁବେର ସଙ୍ଗେ କେ ସରି
ତେଣୁକରି ତୋହଆଗେ ଧନପତି
କହିଲୁଁ ବିସ୍ତାର କରି ॥

କୁବେର ବୋଇଲେ ଶୁଣିମା ଗୋସାଇଁ
ଦେବାଧି ଦେବଙ୍କ ରାଜା
ତୁମ୍ଭେଯେ ବୋଇଲ ନ୍ୟାୟ୍ୟ କଲେ ଧୋଇ
× × × × ×

ଏକଥା ଶୁଣିମୁଁ ମୋତେ ପାଞ୍ଚୁଅଛୁ
ପ୍ରତେ ଯାଉନାହିଁ ମନ
ଏଥିକୁ ସଂଶୟ ମୋଚ୍ଚଣ କରିବା
ଭକତ ଜନଙ୍କ ଧନ ।।

ଶ୍ରୀକୃଷ୍ଣ ବୋଇଲେ ତୁ ଯାହା କହିଲୁ
ଏକଥା ପ୍ରମାଣ ସିନା
ପଦେ ପଦେ କରି ବୁଝାଇ କହିବା
କର୍ଣ୍ଣଦେଇ ଶୁଣ କନା ।।

ଯେତେବେଳେ ସାଧୁ ଗଣ୍ଠିଧନ ହାଦେ
ପରହସ୍ତେ ତୋଳ ଦେଇ
ନେବା ଆଣିବା ବେଳକୁ ସେହି କଥା
କାହାର ଆୟତ୍ତ ନାହିଁ ।।

ସାଧୁମାଟି ଗଲେ ଖାତକ ନହଏ
ଥିଲେ ସିନା ତାଙ୍କୁ ଦେବ
ନଥିଲ ଖାତକ ଠାରୁ ସାଧୁ ଧନ
କେମନ୍ତ ପ୍ରକାରେ ନେବ ।।

ଥାଉଁ ଥାଉଁ ତାକୁ ନଗଣ କଲେ ଯେ
ଇହଲୋକେ ନାହିଁ ପାର
ଧର୍ମଶାସ୍ତ୍ର ପରମାଣେ ବଦ୍ଧିଲେ
ଧିକ ଜୀବନ ତାହାର ।।

ପଛନ୍ତ କାଳେ ବୋଲାବୋଲି ହୋଇଲେ
ଯୁଗତେ ଲଭିବ ବ୍ୟଥା
ଦୁଇ ଲୋକରେ ଟଣାଟଣି ପଡ଼ିବ
ସଭାକୁ ଯାଇ ସେକଥା ।।

କେବଳ ଧର୍ମକୁ କଣିବା ନିମନ୍ତେ
ମାଗି ନେଇ ଯେ ଟୋକା
ଆପଣା ଧନ ପରହସ୍ତେ ପଡ଼ିଣ
ଯୁକତେ ହୋଇଲ ସଖା ।।

ଶ୍ରୀକୃଷ୍ଣ ବଚନେ କୁବେର ବୋଇଲେ
ଶୁଣିମା ତୁମ୍ଭେ ଗୋସାଇଁ
କେହାଇ ଘଣଯା ସଙ୍ଖା କେଉଁଠାରେ
ଏହାତ ଦେଖିଲି ନାହିଁ ॥

ପ୍ରଭୁ ବୋଇଲେ ଅପ୍ରତେ କଲ୍ପ ଯେବେ
ଯୁଗତେ ହୋଇଲି ସଙ୍ଖା
ସେକଥା ତୋ ଆଗେ ବୁଝାଇ କହିବା
ଏବେ ତୁ ବୁଝ ହୋ ରାଜା ॥

ସତ୍ୟ ଯୁଗ ଭୋଗ ଗଲା ଉତ୍ତରେ ଯେ
ତ୍ରେତା ଯୁଗର ଆଗମ
ବ୍ରହ୍ମାଙ୍କ ନନ୍ଦନ ବେନ ଗୋଟି ଋଷି
ଉଦର ମନ୍ଦର ନାମ ॥

ଜଣି ପ୍ରଭାତେ ବେନ ଗୋଟି ଭାଇ ଯେ
ସମୁଦ୍ର ତଟରେ ବସି
ଜପ ତପ ମନ୍ତ୍ର ସନ୍ଧ୍ୟା ସାରଣ ଯେ
ମଠକୁ ବାହୁଡ଼ ଆସି ॥

ଅନ୍ନ ବ୍ୟଞ୍ଜନ କଛୁହିଁ ନ ଭୁଞ୍ଜନ୍ତ
ସେ ଯେ ଅଟନ୍ତ୍ର ସୁବୋଧ
ଏକା ଗାଈ ଗୋଟି ଦୋହନ କରଣ
ବେନଭାଇ ଖାନ୍ତ ଦୁଧ ॥

ପାଞ୍ଚକଳପ ହୋଇଲା ସେ ଗାଈକ
ଦୋହନ କରନ୍ତ ନତ୍ୟେ
ବସୁମାତାକୁ ଚେରେହେଁ ନ ଛୁଆନ୍ତି
ଆପଣା ବଗୁର ଚତ୍ତେ ॥

ଏଥୁ ଅନନ୍ତରେ ଏମନ୍ତ ସମୟେ
କେତେହେଁକ ଦନ ଗଲା
ବାସୁକୀ ନୃପଙ୍କ ନନ୍ଦଣ ହୋଇଣ
ଅନର୍ଗତେ ଚନ୍ଦ୍ରାକଳା ॥

ବଶୁନ୍ତ ବୋଇଲେ ବ୍ରହ୍ମାପୁତ୍ର ହୋଇ
ଘେନଲେ ଆପଣା ସୁଖ
ସଂସାର ଭାବ ମନ ବଧି ତ୍ରାଡ଼ଣ
ମୋତେ ନମାନଲେ ଦେଖ ॥
ନବଖଣ୍ଡ ପୃଥ୍ୱୀ ଭିତରେଣ ହାଦେ
ଯାହାର ଯେତେକ ଗାଈ
ଦୋହନ କରି ବସିବା ବେଳେ ମୋତେ
ପ୍ରଥମ ଚେରେକେ ଦେଇ ॥
ଏବେନ ଋଷି ସେ ଶୋଧନକୁ ପୋଷି
ଦୁଧଖାଇ କାଳେ କାଳେ
ପାଞ୍ଚକଳପ ହୋଇଲା ଆସି ମୋତେ
ହରଣ କଲେ ଏ ତାଳେ ॥
ଏବେ ମୁହିଁ ଯାଇଁ ମର୍ତ୍ତ୍ୟପୁରେ ଥାଇ
ତାହାଙ୍କୁ କରିବ ନାଶ
ଧର୍ମଶାସ୍ତ୍ର ପରମାଣେ ବଶୁରିଲେ
ଏଥିରେ ଅଛୁକ ଦୋଷ ॥
ଏ ଯେବେ ଏତେ ହରଣ କଲେ ମୋତେ
ମୋହର ଅପ୍ରାଧ ନାହିଁ
ଆଜ ତାଙ୍କ ମୃତ୍ୟୁ ଅବଶ୍ୟ ହୋଇବ
କାହାକୁ କହିବେ ଯାଇଁ ॥
ଆଉ ବୋଲକରି ବାସୁକୀ ନୃପତି
ପୁତ୍ରକୁ ଗଇଲେ ଖାଣ
ବୋଇଲେ ବେନି ଭାଇଙ୍କି ଦଂଶିକରି
ବହନ ବାହୁଡ଼ ଆସ ॥
ପିତାଙ୍କ ବଚନେ ମଣିନାଗ ଗଲା
ପାତାଳୁ ବାହାର ହୋଇ
ମନେ ତାପ ମର୍ତ୍ତ୍ୟ ଭୁବନରେ
ପ୍ରବେଶ ହୋଇଲା ଯାଇ ॥

---

ହାଦେ — ନଶ୍ଚିତ, ଶୀଘ୍ର

ଏମନ୍ତ ସମୟେ ବ୍ରହ୍ମାଙ୍କ ନନ୍ଦନେ
ଗାଈଙ୍କ ଦୋହନ କଲେ
ସୁବର୍ଣ୍ଣ ଭାଣ୍ଡ ଗୋଟିକରେ ପୂରାଇ
ଶିକାରେ ନୋକ ଥୋଇଲେ ॥

ଦଣ୍ଡ କମଣ୍ଡଳୁ ତମ୍ବା ପାଣ୍ଣି ନେଇ
ସାଗରକୁ ଚଳିଯାଇ
ସ୍ନାନ ସାରଣ ପୂର୍ବମୁଖେ ବସିଲେ
ପାଦପଦ୍ମେ ମନଦେଇ ॥

ସନ୍ଧ୍ୟା ତର୍ପଣ ଯଥାବିଧି ସାଧନ
କରନ୍ତି ସମୁଦ୍ର ତଟେ
ଏମନ୍ତ ସମୟେ ମଣିନାଗ ଯାଇ
ପଶିଲା ମୁନିଙ୍କ ମଠେ ॥

ଦେଖିଲା ଲୋଚନେ ଭାଣ୍ଡ ପୂର୍ଣ୍ଣ ହୋଇ
ଶିକାରେ ଅଛି ଗୋରସ
ହୃଦରେ ଭାଳିଲେ ସୁଯୋଗ ମିଳିଲା
ଦୁଧରେ ଗୁଡ଼ିବି ବିଷ ॥

ଗୋ-ରସ ଖାଇ ମଣିବେ ଦୁଇଭାଇ
ପିତାଙ୍କ କାର୍ଯ୍ୟହିଁ ଦେଉ
ଆମ୍ଭେ ଯେ ମର୍ତ୍ତ୍ୟ ଭୁବନକୁ ଅଇଲୁଁ,
ଏକଥା କହିଲ କେହୁ ॥

ଏହାଭାଳି ନାଗ ହୋଇ ଉଦବେଗ
ଦୁଧରେ ଗରଳ ଦେଲା
ଋଷିଙ୍କୁ ନପାଇ ବିମୁଖ ସେ ହୋଇ
ପାତାଳ ପୁରକୁ ଗଲା ॥

ଏଥୁ ଅନନ୍ତରେ ଗୋରସ ଭିତରେ
ଗରଳ ହୁଅନ୍ତେ ସଙ୍ଗ
ଋଷିଙ୍କ ମଠସ୍ଥଳରେ ଥାଇ ତାହା
ଦେଖୁଥିଲା କାଠବେଙ୍ଗ ॥

ମନେମନେ ଗୁଣି ମଣ୍ଡୂକା ଗୋଷ୍ଠିମେ
ବିଚାର କରୁଛନ୍ତି ବସି
ଏତେବେଳେ ଆମି ପ୍ରମାଦ ପଡ଼ିଲା
ମରିବେ ଏ ବେନି ଋଷି ॥

ମୁହିଁ ଏହାଙ୍କ ମଠକୁ ଆଶ୍ରେକରି
ନିଷ୍ଫଳ ହୋଇଲା କାର୍ଯ୍ୟ
ମୋହ ଦେଖୁ ଦେଖୁ ବେନି ଗୋଟି ଋଷି
ପ୍ରାଣେ ନାଶ ଯିବେ ଆଜ ॥

ସ୍ୱୋଧର୍ମ ଦେବତା କି ବୁଦ୍ଧି କରିବ
ଅଜ୍ଞାନ ଅଟଇ ମୁହିଁ
ବେଦ୍ୟରେ ମଣ୍ଡୂକା ତୁଣ୍ଡ ନ ମିଟଇ
କାହାକୁ କହିବ ଯାଇଁ ॥

ସେ ଦୁଧ ଆମି ଭୁଞ୍ଜିବେ ଦୁଇ ଋଷି
ଅବଶ୍ୟ ହୋଇବେ ନାଶ
ମୁହିଁ ଦେଖୁ ଦେଖୁ ଘୃଂମ ହତ୍ୟା ଦୋଷ
ମୋତେ ଲାଗିବ ଅବଶ୍ୟ ॥

ତେଣୁ ଏ ଗୋରସ ଭିତରେ ପଡ଼ିବ
ଏ ସ୍ଥିର ଜୀବନ ସାନ୍ଧ
ତାହାଙ୍କ ପାଇଁ ମୁହିଁ ମରେ ମରିବ
ଯୁଗେ ଯୁଗେ କଥା ଥାଉ ॥

ଏତେ ବୋଲି ଜାଠ ମଣ୍ଡୂକା ଗୋଷ୍ଠିଯେ
ଅନ୍ତର୍ଗତେ ଚିନ୍ତାକରି
ଦୁଧଭାଣ୍ଡ ମଧ୍ୟେ ତେଜିଣ ପଡ଼ିଲା
ଧର୍ମକୁ ମନେ ସୁମରି ॥

ଋଷିଙ୍କ ପାଇଁ ସେ ଆଗଭର ହୋଇ
ପ୍ରାଣତ୍ୟାଗ କଲା ଯହୁଁ
ଜଗତଜ ମାତ୍ର ନ ବଳବୋଷ୍ଟି ଭାଇ
ମଠକୁ ଅଇଲେ ତହୁଁ ॥

ମନ୍ଦର ଋଷିଙ୍କି ଉଦର ବୋଲିଲେ
ଶୁଣ ତୁ ଭାଇ ତାପସ
ଦୁଧ ଭାଣ୍ଡ ଆଣ ବନ୍ଦନ ଭୁଞ୍ଜିବା
ଲାଗୁଛି ଶୋକ ବିଶେଷ ॥

ଜ୍ୟେଷ୍ଠ ଭାଇ ବୋଲି ଉଦର ଶୁଣିସେ
ଭିତରେ ପଶିଲେ ଯାଇଁ
ଶିକାରୁ ଗୋ-ରସ କାଢ଼ିଣ ଆଣିଲେ
ମଣ୍ଡୂକା ପଡ଼ିଛି ତହିଁ ॥

ତାଦେଖି ତାପସ ମନେ ଲଭି ତ୍ରାସ
ବୋଇଲେ ହେ ଜ୍ୟେଷ୍ଠ ଭ୍ରାତ
ଗୋ-ରସ ସମସ୍ତ ହେଲା ଅପବିତ୍ର
ଅଗୋଚର କଥା ସତ ॥

ଆଜତ ବେଳରେ ଉପବାସ ହେଲା
କେମନ୍ତେ ବଞ୍ଚିବା ନିଶି
ପାପିଷ୍ଠ ମଣ୍ଡୂକା କାହିଁ ଥାଇ ହାଦେ
ଦୁଧରେ ପଡ଼ିଲା ଆସି ॥

ମନ୍ଦରର ବାଣୀ ଉଦର ଯେ ଶୁଣି
ବୋଇଲେ ଦେଖିବା ଆଣ
କେମନ୍ତ ପ୍ରକାରେ କାଷ୍ଟ ବେଙ୍ଗ ଗୋଟି
ଛାଡ଼ିଅଛି ନିଜ ପ୍ରାଣ ॥

ଏତେବୋଲି ଋଷି ତତପରେ ଆସି
ଗ୍ରହିଁଲେ ମଣ୍ଡୁକା ମୁଖ
ବୋଇଲେ ତୁ ଯେବେ ଆମ୍ଭ ହସ୍ତେ ମଲୁ
ଭୁଞ୍ଜିବୁ ଅନେକ ସୁଖ ॥

ପଶୁଜନ୍ମ ହୋଇ ଜ୍ଞାନ ପାଇ ଯେବେ
ପର ଉପକାରୀ ଅଟୁ
ନବଯୁବା ଦିବ୍ୟ କନ୍ୟାଏ ହୋଇବୁ
ଆମ୍ଭ ବର ତୋତେ ଘଟୁ

ନୋହିଲେ ତୁ ଯେ ଆମ୍ଭର ଅଗୋଚରେ
ଆସିଥିବୁ ଆମ୍ଭ ସ୍ଥାନ
ଅଧିକ କି ତୋତେ ଶାପ ଦେବା ଆଜ
ଏହିକ୍ଷଣି ମିବୁ ନାଶ ॥

ମୁନିଙ୍କ ବାଣୀ ପାଷାଣ ରେଖା ଜାଣି
ଅନ୍ୟଥା ନୋହିଲା ସର୍ବ
ତତକ୍ଷଣେ କାଷ୍ଠ ମଞ୍ଜୁଷା ଗୋଟି ସେ
କନ୍ୟାଏ ହୋଇଲା ତହିଁ ॥

କୋଟି କୋଟି ଦଣ୍ଡବତ ହୋଇଣ ସେ
ମୁନିପାଦେ କଲାସେବା
ସୁନ୍ଦରୀ ପଣେ ରମ୍ଭାଠାରୁ ବଳଇ
ପୃଥ୍ୱୀରେ କି ଲକ୍ଷ ଦେବା ॥

ଦକ୍ଷ ବ୍ରହ୍ମଋଷି ମନେ ହୋଇ ତୋଷୀ
କନ୍ୟାକୁ କୋଳରେ ଧରି
ବୋଲନ୍ତେ ତୁ ଆମ୍ଭ ଦୁହିତା ହୋଇଲୁ
ପାଳିବା ଯତନ କରି ॥

କନ୍ଦମୂଳ ଫଳ ମୁଡ଼ାଏ ଆଣିଣ
ପାଖରେ ତାହାର ଦେଲେ
ଏହି ମଠେ ଆଜି ବସିଥିବୁ ବୋଲି
ସନ୍ଧ୍ୟା କରିବାକୁ ଗଲେ ॥

କହୁଁ କହୁଁ ଏହି ଦ୍ରବ୍ୟ ବେଶ ହୋଇ
ଦଶିଲା ସେ ଦ୍ରବ୍ୟ ଶୋଭା
କାଳକ କାଳ ନବଯୁବା ହୋଇବ
କାହାକୁ କରିବା ଵଭା ॥

ରଜୋବନ୍ତୀ କନ୍ୟା ଅପ୍ରଦାନ ହୋଇ
ପିତାଘରେ ଯେବେ ଥାଇ
ସପତ ପୁରୁଷ ସହିତେ ତାହାର
ନର୍କରେ ପଡ଼ନ୍ତି ଯାଇ ॥

ଆମ୍ଭେ ଯେ ଋଷି ବନ ମଧ୍ୟରେ ପଶି
କନ୍ଦମୂଳ କରୁଁ ଭୋଗ
ଏ ଦିବ୍ୟ କନ୍ୟା କାହାକୁ ବିଭାଦେବା
ରାଜା ଘରକୁ ଏ ଯୋଗ୍ୟ ॥

ଏମନ୍ତ ବିଚାରି ବର ଖୋଜିବାକୁ
ଗଲେ ବେନି ଭାଇ ଗୋଟି
କଷ୍ଟକନ୍ଧ୍ୟା ନାମେ କଟକ ହୋଇଣ
ବାଳୀ ନୃପତିକି ଭେଟି ॥

ଋଷିଙ୍କି ଦେଖି ରାଜନ ମହାସୁଖୀ
ବୋଇଲେ ଋଷିଏ ବସ
କେବଣ କାର୍ଯ୍ୟେ ମୋ ପାଶକୁ ଅଇଲ
କହିବା ଏଥି ଆଦେଶ ॥

ମୁନି ବୋଇଲେ ଅଧିକ କଥା ନାଶ
ବିଚାରି କହୁଛୁଁ ଏତେ
ଦୁହିତା ଗୋଟିଏ ଆମ୍ଭର ଅଛଇ
ପ୍ରଦାନ କରିବା ତୋତେ ॥

ରମ୍ଭା ମେନକା ପଟାନ୍ତର ନୁହଁନ୍ତି
ଦେଖିବାକୁ ଶୋଭାକର
ନବଖଣ୍ଡ ପୃଥ୍ୱୀ ଭିତରେ ତା ପାଇଁ
ଖୋଜି ନପାଇଲୁଁ ବର ॥

ଅତି ସୁନ୍ଦରୀ ସୁକୁମାରୀ ଶରୀର
ପଦ୍ମଫୁଲ ପ୍ରାୟେ ମୁଖ
ମନକୁ ଯଦି ଆସିବ ମହାରାଜା
କନ୍ୟାକୁ ଯାଇ ତୁ ଦେଖ ॥

ସେ ଦେନି ଆମ୍ଭେ ଯେ ଗ୍ରାମକୁ ଅଇଲୁଁ
କହିଲା ଉଚିତ ବାଣୀ
ଶୁଣିକରି ମହା ସନ୍ତୋଷ ଲଭିଲା
କଷ୍କିନ୍ଧ୍ୟାର ନୃପମଣି ॥

ବୋଇଲା ମୁଁ ତୁମ୍ଭ ଗୁମୁରେ ଜୃଷି ହେ
ଅଧିକ କ କହିବ କ
ମତେ ଯେବେ ତୁମ୍ଭ ଝିଅ ବଭା ଦେବ
ଏକଥା ପ୍ରମାଣଟିକ ॥

ମୁନି ବୋଇଲେ ନଦେଲା ଇଚ୍ଛାଥିଲେ
କପାଇଁ ଅଇଲୁଁ ଆମ୍ଭେ
ଏହିକ୍ଷଣି ଏବେ ଝଜେ କରି ଯାଇ
କନ୍ୟା ଦେଖି ଆସ ତୁମ୍ଭେ ॥

ମୁନିଙ୍କର ବାଣୀ ଏମନକ ଶୁଣି
ବହନ ଉଠିଲା ବାଳୀ
ଦିବ୍ୟ ସଜ ହୋଇ ଶୁଭ ବେଳେ ଯାଇ
ଋଷିଙ୍କ ମଠରେ ମିଳି ॥

ବସିବାକୁ ଦିବ୍ୟ ଆସନ ପାଇଣ
ଲଭିଲା ପରମ ସୁଖ
ମୁନି ବୋଇଲେ ଦୁହିତାକୁ ଆମ୍ଭର
ଏବେ ଯାଇ ତୁମ୍ଭେ ଦେଖ ॥

ଏତେକ ବୋଲିଣ ସ୍ୱର୍ଣ୍ଣମାଳା ଆଣି
ଦୁହିତା ହସ୍ତରେ ଦେଲେ
ଆଜହୁଁ ଏ ତୋର ଭର୍ତ୍ତା ହୋଇଲନ୍ତି
ବରଣ କର ବୋଇଲେ ॥

ଶୁଣି ବେଗବତୀ ହୋଇ ତୋଷମତି
ପୁଷ୍ପମାଳା କରେଧରି
ବାଳୀ ନୃପତିଙ୍କ କଣ୍ଠେ ଲମ୍ବାଇଲେ
ପାଦେ ପ୍ରଣିପାତ କରି ॥

ଦେଖି ନୃପସାଇଁ ମନେ ତୁଷ୍ଟ ହୋଇ
ଋଷିଙ୍କି ଗୁହାଁ ବୋଇଲା
ଆଜହୁଁ କଣ୍ଠେ ଏହି ଝିଅ ତୁମ୍ଭର
ମୋହର ପତ୍ନୀ ହୋଇଲା ॥

ଏହାଙ୍କୁ ଦେଖି ମୁଁ ମନେ ହେଲି ସୁଖି
 ଅସ୍ଥିର ହେଉଛି ଦେହ
ଶୁଭ ଲଗ୍ନ ବେଳେ ବିଭା ଅନୁକୂଳ
 କେଉଁ ଦିନ ହେବ କହ ॥

ମୁନି ବୋଇଲେ ଆଜହୁଁ ଅଷ୍ଟମାସେ
 ମଧ୍ୟଭାଗ ଛାଡ଼ିଦେବା
ଧନୁମାସ ଅନ୍ତେ ମକର ପଣନ୍ତେ
 ପଞ୍ଚମୀ ଦିନଟି ବିଭା ॥

ଏସନକ ବାଣୀ ବାଳୀରାଜା ଶୁଣି
 ହରଷିତ ହେଲା ମନେ
ମୁନିଙ୍କୁ ମେଲାଣି ମାଗି ନୃପମଣି
 ଚଳିଲା ନିଜ ଭୁବନେ ॥

ଏଥୁ ଅନ୍ତରେ ଥୋକାଏ ଦିନ ଯାନ୍ତେ
 ଶୁଣିମା ଦିବ୍ୟ କାହାଣୀ
ଦୁହିତା ଗୋଟିକ ମଠରେ ଛାଡ଼ିଣ
 ସନ୍ଧ୍ୟା କରି ଗଲେ ମୁନି ॥

ଧୋତି ଉତ୍ତରି ତମ୍ବା ଗଡ଼ୁ ସହିତେ
 ସମସ୍ତ ଘେନିଲେ କରି
ସମୁଦ୍ର ତଟକୁ ତପକରି ଗଲେ
 ବ୍ରହ୍ମାଙ୍କ ବେନି କୁମର ॥

ଥୋକାଏ ଦିନ ଅଗତ ହୋଇଯାନ୍ତେ
 ବାଳୀନାମେ ନରବର
ବେଙ୍ଗବର୍ଣ୍ଣ କଥା ମନରେ ପଡ଼ନ୍ତେ
 ହେଲା ଅତ୍ୟନ୍ତ ଅଧୀର ॥

ବୋଇଲା ଆମ୍ଭେ ଦୁର୍ବୁଦ୍ଧି ପଣକଲୁଁ
 ଏତେଦିନେ ମନେ ପଡ଼ି
ଆଜକୁ ଏକମାସ ପୂର୍ଣ୍ଣ ହୋଇଲା
 କନ୍ୟାକୁ ଅଇଲୁଁ ଛାଡ଼ି ॥

ଏବେ ଯାଇ ତାକୁ କେମନ୍ତେ ଦେଖିବ
ଉଚ୍ଚାଟ ହେଉଛି ମନ
ବର୍ଣ୍ଣମାଳା ଦେଇ ସୁନ୍ଦରୀ ବରିଛି
ନକ ବିଗୁରଇ ଆନ ।।

ଏତେ ବୋଲି ରାଜା ଉଦବେଗ ହୋଇ
ଗମନ କଲା ଉଚ୍ଚାଟେ
କହୁଁ କହୁଁ ଯାଇଁ ପ୍ରବେଶ ହୋଇଲା
ଋଷିଙ୍କର ଦିବ୍ୟମଠେ ॥

ସନ୍ଧ୍ୟା କରିବାକୁ ସମୁଦ୍ର ତଟକୁ
ଯାଇଛନ୍ତି ବେଦଋଷି
ବେଙ୍ଗବତୀ କନ୍ୟା ପ୍ରବେଶ ହୋଇଣ
ମଠଦ୍ୱାରେ ଅଛି ବସି ॥

କେଶ କୁରୁଳାଇ ଦିବ୍ୟବେଶ ହୋଇ
ନୟନେ କଜ୍ଜ୍ୱଳ ରେଖା
ଦକ୍ଷିଣ କରେ ଦର୍ପଣ ଘେନବାମା
ଚାହିଁ ଅଛି ପଦ୍ମମୁଖ ।।

ଏମନ୍ତ ତାହା ଲୋଚନରେ ଦେଖିଲା
ବାଲୀନାମେ ନୃପବର
ମଦନବାଣ ହୃଦଗତେ ବାଜିଣ
ତନୁ ହେଲା ଜରଜର ।।

କାମରେ ଆରତ ହୋଇ ନରନାଥ
ବିଗୁର କରୁଛି ବସି
ଆଜ ମୁଁ ଏହାକୁ ରମଣ କରିବ
ନ ପାରଇ ମନୁ ମୁଞ୍ଚି ॥

କହୁଁ କହୁଁ ରାଜା ଅଜ୍ଞାନ ହୋଇଲା
ବୁଡ଼ିଲା କାମ ସଲିଳେ
ଲାଜ ଛାଡ଼ି ଯେ ଯେ ବେନି ଭୁଜେ ଭିଡ଼ି
କନ୍ୟାକୁ ଧଇଲା କୋଳେ ॥

ବିବିଧ ରଙ୍ଗେ ପରିବନ୍ଧ କରନ୍ତେ
ସରିଲା ସୁରତ ରସ
ବାଳୀ ବୀର୍ଯ୍ୟରେ ସେ ଋଷିଙ୍କ ନନ୍ଦନୀ
ହୋଇଲାକ ଗର୍ଭବାସ ॥

କନ୍ୟାକୁ ଭୋଗ କରିଣ ମହାରାଜା
କଟକକୁ ବିଜେକଲା
ଏମନ୍ତ ସମୟେ ସୂର୍ଯ୍ୟ ଦେବତା ସେ
ମେରୁ ଉହାଡ଼ ହୋଇଲା ॥

ସନ୍ଧ୍ୟା ବିଧି ଷଟକର୍ମ ସାରିଣ
ମଠକୁ ଆଇଲେ ଋଷି
ଦୁହିତା ଗୋଟିକ ଆଶ୍ୱାସନା କରି
ବଞ୍ଚିଲେ ସେଦିନ ନିଶି ॥

ଏଥୁ ଅନନ୍ତରେ ଏମନ୍ତ ସମୟେ
କେତେହେକ ଦିନ ଗଲା
ଲଙ୍କାର ରାବଣ ରଥରେ ବସିଣ
ଭ୍ରମଣକୁ ବିଜେକଲା ॥

ଅନେକ ଦୂର ଯେ ଅରଣ୍ୟ କନ୍ଦର
ବୁଲିଲାକ ଲଙ୍କସାଇଁ
ଉଦର ମନ୍ଦର ଋଷିଙ୍କ ମଠରେ
ପ୍ରବେଶ ହୋଇଲା ଯାଇଁ ॥

ବେଦୀରେ ମୁନି ଦୁହିତା କୋଳେ ଘେନ
ଶରଧା ଯୁକତେ ବସି
ଏମନ୍ତ ସମୟେ ଦଶଗ୍ରୀବ ରାୟେ
ପ୍ରବେଶ ହୋଇଲା ଆସି ॥

କନ୍ୟାକୁ ଦେଖିଣ ଲଙ୍କାର ରାବଣ
ହରଷ କଲାକ ମନ
ବୋଇଲା ମୁନିଏ କଥାଏ କହିବା
ଭକତ ମୋହର ବଚନ ॥

ଏ ତୁମ୍ଭ ନନ୍ଦିନୀ ଜଗତ ମୋହିନୀ
ମଞ୍ଚ ଭୁବନକୁ ଶୋଭା
ଯେମନ୍ତ ପ୍ରକାରେ ଏ ଝିଅ ଗୋଟିକୁ
କାହାକୁ କରିଛ ବିଭା ॥

ଋଷି ବୋଇଲେ ଏ ବିଭା ହୋଇନାହିଁ
ବେଇଛି ବରଣ ମାଳ
କିଷ୍କିନ୍ଧ୍ୟା ନାମେ କଟକ ନୃପତି
ବାଳୀ ନାମେ ମହୀପାଳ ॥

ରାବଣ ବୋଇଲା ବାଳୀ ନୃପତିଙ୍କି
ପ୍ରଦାନ କରିବ ଯେବେ
କେବଳ ମାତ୍ର ସେ ବରିଅଛି ସିନା
ମୋତେ ବିଭାଦିଅ ଏବେ ॥

ସ୍ୱର୍ଗ ମର୍ତ୍ତ୍ୟ ପାତାଳପୁର ସହିତରେ
ପ୍ରକାଶ ମୋହର ବାନା
ଏତେ ନୃପତି ମୁଁ ଥାଉଁ ଥାଉଁ ତୁମ୍ଭେ
ବାଳୀକୁ ଦେଉଛ କନ୍ୟା ॥

ଋଷି ବୋଇଲେ ତା କେ ନାସ୍ତି କରିବ
ପ୍ରମାଣ ହୋଇଛି ଯେବେ
କେବଳ ହସ୍ତ ଧରିବାକୁ ରହିଛି
ସତ୍ୟ ମନାଇଛୁ ପୂର୍ବେ ॥

ତା ଶୁଣି ରାବଣ ବୋଲଇ ବଚନ
କେଉଁ ଦିନ ଦେବ ବିଭା
ଋଷି ବୋଇଲେ ମାସ ଗୃହପାଞ୍ଜି ଯେ
ମନ ସ୍ଥିର କରିଥିବା ॥

ଧନୁମାସ ଅନ୍ତେ ମକର ପଶନ୍ତେ
ପଡ଼ିବ ପଞ୍ଚମୀ ତିଥି
ମୋହିଦିନ ଆସି ବିଭା ହୋଇବ ଯେ
କନ୍ୟାକୁ ବାଳୀ ନୃପତି ॥

ଶୁଣି ରାବଣ ହରଷ ହୋଇ ପୁଣ
ମନେ ବିଚାରି ବୋଇଲା
ବନ୍ଧାଦାନ କଥା ବାରତା ପାଇଲା
ଏହା ତ ଭଲ ହୋଇଲା ।।

ଅବଶ୍ୟ ସେ ଦାନ ମାଗନ୍ତା ଚାପ ଧରି
ଏଥକୁ ଆସିବ ମୁହିଁ
ବାଳୀ ନୃପତ୍ତି ଏଠାକୁ ନ ଆସୁଣୁ
ଆଗେ ଯିବ ବାହାରାଇ ॥

ଏତେ ବୋଲ ରାଜା ଋଷିଙ୍କି ବୋଇଲା
ଅବଧାନ କର ତୁମ୍ଭେ
କନ୍ୟାଟ ନ ଦେଲ ଦୟା ରଖିଥିବ
ବାହୁଡ଼ ଯାଉଛୁଁ ଆମ୍ଭେ ।।

ଋଷି ବୋଇଲେ ବଳମ୍ବ କାହିଁପାଇଁ
କରୁଅଛ ନୃପବର
ଆମ୍ଭ କଲ୍ୟାଣ ପ୍ରାପତ ହେଉ ତୋତେ
ଯୁଗେ ଯୁଗେ ରାଜ୍ୟକର ॥

ଶୁଣିଣ ରାବଣ ହରଷ ହୋଇଣ
ଲଙ୍କାକୁ ବାହୁଡ଼ି ଗଲା
ପାତ୍ର ମନ୍ତ୍ରୀମାନେ ମନ୍ତ୍ରି ଦେ ବସିଲେ
ଭୂପତି ବିଚାର କଲା ॥

ବୋଇଲା ଉଦର ମନ୍ଦର ବୋଲି ଯେ
ବ୍ରହ୍ମାଙ୍କର ବୈନଶିଷ୍ୟ
ତାହାଙ୍କର ଏକ ଦୁହିତାଏ ଅଛି
ମନ୍ଦମା କହିବ କସ ॥

ଅତି ସୁଶୋଭନା ନବ ଯଉବନା
ମଦନ ଭଣ୍ଡାର ବାମା
ମୁନିଜନମାନେ ଦେଖିଲେ ଟଳିବେ
ମୁଖ ତା ପୂର୍ଣ୍ଣ ଚନ୍ଦ୍ରମା ।।

ସେହି ଦିବ୍ୟନାରୀ ସ୍ୱର୍ଗ ଅପ୍ସରା
ଋଷିଙ୍କ ମଠରେ ଥାଇ
ବାଳୀ ରାଜାଙ୍କୁ ସେ ପ୍ରଦାନ ହୋଇବ
ବର୍ଣ୍ଣମାଳା ଅଛି ଦେଇ ।।

ଧନୁମାସ ଅନ୍ତେ ମକର ପଶନ୍ତେ
ପଞ୍ଚମୀ ଦିନରେ ବିଭା
ସବୁଠି ମଠରେ ଏକଥା ଥିବଟି
ଅବଶ୍ୟ ଚର୍ଚ୍ଚିକ ମିବା ।।

ଏମନ୍ତ ବିଗୃର କରି ଲଙ୍କେଶ୍ୱର
ରହିଲା ମଉନ ହୋଇ
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ
ପାନକୃଷ୍ଣ ଦାସ କହି ।।

ଏଥିଅନ୍ତେ କଥା ଶୁଣ ଦିବ୍ୟଶକ୍ତେ
ଅଷ୍ଟମାସ ପୂରିଗଲା
ମାଢ ମନ୍ତ୍ରିଗଣ ଗ୍ରାମକୁ ଡକାରି
ରାବଣ ବିଗୃର କଲା ।।

ବୋଇଲା ଋଷିଙ୍କ ଦୁହିତା ବିବାହ
କଣ୍ଟ ଆମି ହେଲା ପୂର୍ଣ୍ଣ
କେବଳ ମୋଟରେ ଗୃରିଦିନ ଅଛି
ଯିବାଟି କ ପରଦିନ ।।

ଶୁଣି ସୈନ୍ୟବଳ ହରଷ ମକଳ
ପାଟ ମନ୍ତ୍ରି ଆଦି କରି
ବିଭାର ଯୋଗାଡ଼ ମାନ ଲଗାଇଲେ
ଆନନ୍ଦେ ଲଙ୍କାର ନାରୀ ।।

ପ୍ରଭାତ ସଲଙ୍କେ ନଦୀ ନମାଡ଼ିଇ
ରାବଣ ମନ ଉତ୍ସୁକ
ରଜନୀ ଶେଷ ଶଙ୍ଖଧ୍ୱନି ଶୁଭିଲି
ଉଠିଲେ ସକଳ ଲୋକ ।।

ଏକୁ ଆରେକ ହକାହକ ହୋଇଣ
ଅଇଲେ ପୃଥିବୀ ଘୋଟି
ସିଦ୍ଧ ଘୋଷ ପ୍ରାପ୍ତ ଶବଦ ଶୃଙ୍ଖଳ
ବାଦ୍ୟକାର୍ ଦଶଗୋଟି ॥

ପୁଷ୍ପକ ବିମାନେ ଚଢ଼ିଣ ରାବଣ
ମିଳିଲା ସମୁଦ୍ର କୂଳ
ଏକା ରଥକେ ସମସ୍ତେ ବସିଛନ୍ତି
ଲଙ୍କାଗଡ଼ ସୈନ୍ୟବଳ ॥

ଥୋକାଏକ ପଥ ଗମି ସେ ଦଇତ୍ୟ
ହୋଇଲା ସାଗର ପାର
ଋଷିଙ୍କ ମଠ ନିକଟକୁ ଯାଇଣ
ବାନର ମୂରତ୍ତ ଧରି ॥

ରାବଣ ବୋଇଲା ନିଜ ରୂପମାନ
ଗୋପ୍ୟକରି ସବୁଥାଅ
ବାଳୀରାଜା ମୂର୍ତ୍ତି ଆମ୍ଭେ ଧରିଅଛୁ
ସଭିଏ ମର୍କଟ ହୁଅ ॥

ରାଜା ଆଜ୍ଞା ପାଇ ଥାଟ ସୈନ୍ୟଯାକ
ହୋଇଲେ ବାନର ବେଶ
ବାଳୀରାଜା ବେଶ ଧରିଣ ରାବଣ
ଋଷିଙ୍କ ମଠେ ପ୍ରବେଶ ॥

ବାଘ ବନ ଯେ ହୋଇଲା ବର୍ତ୍ତମାନ
ମଠରେ ଅଛନ୍ତି ଋଷି
ବେଦୀ ଗୋଟିଏ ନିର୍ମାଣ କରିଛନ୍ତି
ବରକନ୍ୟା ସଙ୍ଗେ ବସି ॥

ଉତ୍ତର ଦିଗକୁ ମୁରତି କରିଣ
ଅନାଇ ଅଛନ୍ତି ବାଟ
ଏତେ ବେଳଯାଏ ବାଳୀତ ନାଇଲା
ବାହାର ବେଳ ନିକଟ ॥

ଏମନ୍ତ ସମୟେ ରାବଣର ବାଦ୍ୟ
ଶୁଭିଲା ଅନେକ ଦୂରେ
ଋଷି ବରୁଣଲେ ନୃପତି ଅଇଲେ
ବଶ୍ରବଧ୍ ସଂଯୋଗରେ ।।
ଅସୁର ମାୟା ମର୍କଟ ବେଶ କାୟା
ଜାଣି ନପାରିଲେ ମୁନି
ଦୁହିତା ଗୋଟିକ ସଜବାଜ କରି
ବେଦୀରେ ବସିଲେ ଘେନ ।।

ଆପଣେ ବ୍ରାହ୍ମଣ ଶାସ୍ତ୍ରକୁ ପଢ଼ିଣ
ଉଚ୍ଚାରିଲେ ଗୋତ୍ରକୁଳ
ରାବଣ ବୋଇଲା ବେଗେ ହାତଯୋଡ଼ି
ନିବାକୁ ଉତ୍ତର ବେଳ ।।
ଶୁଣିଣ ଋଷି ମନରେ ହୋଇ ତୋଷି
ଆନନ୍ଦେ ହୋଇଲେ ଭୋଳ
ବର କନ୍ୟା ହାତ କୁଶରେ ବାନ୍ଧିଣ
ଶଙ୍ଖେ ଦେଲେ ମାଣି ତୋଳ ।।

ଲାଜାହୋମ ପୂର୍ଣ୍ଣ କରିବା ନିମନ୍ତେ
ଘୃତ ଥୋଇଛନ୍ତି ଆଗେ
ଏମନ୍ତ ସମୟେ ବାଳୀରଜା ବାଦ୍ୟ
ଶୁଭିଲା ନିକଟ ଭାଗେ ।।
ପୃଥିବୀ ଯାକ ଯେ ଯୋଡି ଆସୁଛନ୍ତି
ବାନର ମର୍କଟ ବଳ
ନବଖଣ୍ଡ ପୃଥ୍ୱୀ ପ୍ରଳୟ ହେଲାକି
ଘୋଟିଲା ସମୁଦ୍ର ଜଳ ।।

ଆଠ ମୁଖ ବୃଦ୍ଧିଁ ଅତି ଅସମ୍ଭବ
ଆକାଶ ପଥ ଉଚ୍ଛୁଳି
ରାବଣ ବୋଇଲା ପ୍ରମାଦ ପଡ଼ିଲା
ଆଇଲା ନୃପତି ବାଳୀ ।।

କ ବୁଦ୍ଧି କରିବ କେଉଁ ପଥେ ଯିବ
ନ ଦିଶଇ ମୋତେ ବାଟ
କହୁଁ କହୁଁ ଆସି ନିକଟ ହୋଇଲା
ବାନର ମାନଙ୍କ ଥାଟ ॥

ସନ୍ନିପାତ ବ୍ୟାଧି ଘୋଟିଲେ ଯେମନ୍ତ
ପୃଥ୍ୱୀ ଅନ୍ଧକାର ଦିଶି
ସମ୍ପଦ ଯାକ ହରାଇ ମରୁଅଛି
କର୍ମର ଅବଳେ ଆସି ॥

ଛନ୍ନ ଛନ୍ନ ମନ ଅସ୍ଥିର ଜୀବନ
ହୋଇଲା ବିଶ୍ରବା ବାଳ
ଚନ୍ଦ୍ର ଦେବତାଙ୍କୁ ରାହୁ ଘୋଟିଲାକ
ପ୍ରାପତ ହୋଇଲା କାଳ ॥

ଋଷିଙ୍କି ଗୁହାରି ବୋଇଲା ଲଙ୍କମାଈ
ବିଲମ୍ବ ନକର ତୁମ୍ଭେ
ଆଉ ଜାନ ହୋମ କୁଶଗଣ୍ଠି ଫେଡ଼
ବିଜୟ କରିବୁ ଆମ୍ଭେ ॥

ଋଷି ବୋଇଲେ ତୁ ମନ ସ୍ଥିରକରି
ଦଣ୍ଡେମାତ୍ର ଧୀରା ଥିବୁ
ଦସ୍ତ କୁଶଗଣ୍ଠି ଲୁହାଇ ମିଳାଇ
କେମନ୍ତେ ନୃପତି ହିବୁ ॥

ରାବଣ ବୋଇଲା ଆହେ ପ୍ରଭୁ ଋଷି
ଆମ୍ଭର ବଚନ ଶୁଣ
ଯେତେବେଳେ କନ୍ୟା ସମର୍ପି ଦେଲଣି
ତୁମ୍ଭର ଅଟୁ କ ପଣ ॥

ଏତେବୋଲି ତହିଁ ଉଦବେଗ ହୋଇ
ଉଠିଛୁ ସେ ଲଙ୍କନାଥ
କରୁ କୁଶଗଣ୍ଠି ଛିଣ୍ଡାଇ ପକାଇ
ବଢେଇଲା ଦଶରଥ ॥

ଅସୁର ବଳକୁ ରାବଣ ବୋଇଲା
ସମସ୍ତେ ରଥରେ ବସ
ଏଠାରେ ତୁମ୍ଭେ ବିଳମ୍ବ କଲେ ଆଜ
ଆମ୍ଭଙ୍କୁ ନାହିଁଟି ଯଶ ॥

ଏତେବୋଲି ରାଜା କନ୍ୟା ହସ୍ତଧରି
ପୁଷ୍ପକ ବିମାନେ ବସି
ଝଟକ ବିଜୁଳି ପ୍ରାପ୍ତ ହୋଇ ରଥ
ଅନ୍ତର୍ଦ୍ଧାନେ ଗଲାମିଶି ॥

ଏମନ୍ତ ସମୟେ ବାଳୀ ନୃପତି ଯେ
ପ୍ରବେଶ ହୋଇଲା ଖରେ
ଋଷିଙ୍କି ବୋଇଲା କନ୍ୟା ଆଣି ମୋତେ
ଦିଅନ୍ତୁ ଧାଡିକାରେ ॥

ମୁନି ବୋଇଲେ କି କଥା କହୁଅଛ
ବାତୁଳ ହେଲକି ତୁମ୍ଭେ
କେତେ ବାଳୀ ତୁମ୍ଭେ ପୃଥ୍ୱୀରେ ଅଛକି
ଜାଣି ନପାରିଲୁ ଆମ୍ଭେ ॥

ଏହିକ୍ଷଣି ବାଳୀ ନୃପତି ଗୋଟାଏ
ରଥକେ ଚଢ଼ି ଅଇଲା
ବାନର ବଳ ଲକ୍ଷ୍ୟେ ଘେନିଆସି
କନ୍ୟାକୁ ବିଭା ହୋଇଲା ॥

ଏହିକ୍ଷଣି ଯେଝେ ଜନମେଷେ ଯାଇଛି
ତୁ ପୁଣି ଅଇଲୁ ଧାଇଁ
ଏକା ଝିଅକୁ କେତେକ ବିଭାଦେବା
ଅଧିକ ଆଉତ ନାହିଁ ॥

ବାଳୀ ବୋଇଲା ସେ କେମନ୍ତ ବଣଇ
ଚହ୍ନି ନ ପାରିଲ ତୁମ୍ଭେ
ମୁନି ବୋଇଲେ ସେ ତୁମର ସ୍ୱରୂପ
ଯାହା ଦେଖିଅଛୁଁ ଆମ୍ଭେ ॥

ତୋହର ନଖ ତୋହର ସର୍ବ୍ୟମୂର୍ତ୍ତି
ତୋହର ନାସିକା ଧନ୍ୟ
ତୋହର ଶିର ତୋହର କରପାଦ
ଅଙ୍ଗୁଳ ଗୁଣ୍ଡାକ ଧନ୍ୟ ॥
କେଣୁକର ଯିବା ପରତେ ପାଇଲୁଁ
କନ୍ୟା ଗୋଟି କଲୁ ବଧ
ଏଥକୁ ଉତ୍ତର ଯେମନ୍ତ ଯୋଗାଇ
ସେହିମନ୍ତ ଆଜ୍ଞାଦେବା ॥
ଯେତେବେଳେ କନ୍ୟା ପ୍ରଦାନ କଲମୁଁ
କୁଶଗଣ୍ଡି ଅଛୁ ପଡ଼ି
ଛନ୍ନଛନ୍ନ ମନ କରଣ ନୃପଙ୍କ
ଉଠିଲା ଆସନ ଛାଡ଼ି ॥
ଜାଜାହୋମ ଠାରୁ କଛୁହିଁ ନକଲା
ତରସ୍ତ ହୋଇଲା ମନ
ଧାଇଁକାରେ ଯାଇଁ ରଥରେ ବସିଲା
କନ୍ୟାକୁ କୋଳେ ହେନଣ ॥
ଥାଇ ସନ୍ୟ ତାର ଯେତେ ଆଣିଥିଲା
ଗୋଟିଏ ନ ଗଲା ଛାଡ଼ି
ଝଟକ ବଜୁଳୀ ପ୍ରାପ୍ତ ହୋଇ ରଥ
ଶୂନ୍ୟପଥେ ଗଲା ଉଡ଼ି ॥
ବାଳୀ ବୋଇଲା ଯା କହିଲ ପ୍ରକୃତ
ପ୍ରମାଣ କହିଲୁଁ ଆମ୍ଭେ
ରାବଣ କନ୍ୟାକୁ ବଳ୍ୟ ହୋଇଗଲା
ଜାଣି ନ ପାରିଲ ତୁମ୍ଭେ ॥
ମୁନି ବୋଇଲେ ସେ ଅସୁରଙ୍କ ମାୟା
କେହୁ ନପାରିଲ ଜାଣି
ଦୁହିତା ଗଲାହେ ତୋତେ ନ ପାଇଲୁଁ
କି ବୁଦ୍ଧି କରିବା ପୁଣି ॥

ବାଳୀଯେ ବୋଇଲା ରଥ ଯେ ତାହାର
କେତେ ଦୂର ଯାଉଥିବ
ପଡ଼ଲେ ଭେଟରେ ଛଡ଼ାଇ ଆଣିବା
ନୋହିଲେ ଗଲେ ତ ଯିବ ।।

ଏତେବୋଲି ରାଜା ବଣ୍ଣମୂର୍ତ୍ତି ହୋଇ
ବାହାମ ଗତି ଯେ ଗଲା
ଏକ ଚରଣେ ମାରଣେ ନରପତି
ପଚିଶ ଯୋଜନ ଗଲା ।।

ସେଠାରେ ପୁଣି ସେ ଅଳପ ବିଶ୍ରାମି
ଦୃଷ୍ଟି ଦେଲା ପୁଣି ଆଗେ
ଦେଖିଲେ ରାବଣ ରଥ ଯାଉଅଛି
କୋଡ଼ିଏ ଯୋଜନ ଲାଗେ ।।

ସେଠାରୁ ପୁଣି ସେ ଆଉକ ଚରଣେ
ବୋଇଲା ବାଳୀ ନୃପତି
ଝାମ୍ପ ଦେଇ ଯାଇ ରଥରେ ବସନ୍ତେ
ଡରିଲା ପୌଲସ୍ତ୍ୟ ନାତି ।।

କନ୍ୟା ବାମହସ୍ତ ଧରିଣ ଆନନ୍ଦେ
ବସିଅଛି ଦଶଶିର
ଦକ୍ଷିଣ କର ଧରିଣ ବାଳୀ ରାଜା
ଓଟାରିଲା ଆଣ୍ଠୁକରି ।।

ବୋଇଲା ଆରେ ରାବଣ ଆମ୍ଭମାନଙ୍କୁ
କ୍ଷମ ହିବ ଦଶମଥା
ମୋହର ଭାରିଯାକୁ ଚୋରାଇ ନେଉଛୁ
ଏ ତୋର କେମନ୍ତ କଥା ।।

ବର୍ଣ୍ଣମାଳା ଦେଇ ଯେଉଁ କନ୍ୟା ମୋତେ
ବରିଅଛି ଆଗକରି
ତୁ ଯାଇଁ କେମନ୍ତେ ମାୟାରୂପ ଧରି
କପଟେ ଆଣିଲୁ ହରି ।।

ଏତେବୋଲି ରାଜା ଗ୍ରନ୍ଥ ଗ୍ରନ୍ଥି ଖୋଲି
ଓଟାରିଲା କନ୍ୟା ବାହା
ରାବଣ ବୋଇଲା ମୁଁ କାହିଁ ଗ୍ରନ୍ଥିଭି
ବନ୍ଧା ହୋଇଅଛି ଯାହା ॥

ବାମ କରଧରି ନରଣ କରଣ
ଓଟାରୁଛି ଲଙ୍କାସାଇଁ
ଦକ୍ଷିଣ କର ଧରଣ ବାଳୀ ରାଜା
କନ୍ୟାକୁ ଓଟାରେ ଭଇଁ ॥

ଦୁଇଆଡ଼େ ଦୁଇ ହସ୍ତକୁ ଧରଣ
ଓଟାରନ୍ତି ମହୀପାଳ
ମହାଶ୍ରମ ପାଇ ବେଙ୍ଗବଣ୍ଟ କନ୍ୟା
ହୋଇଗଲା ବେନଫାଳ ॥

ଖଣ୍ଡେକ ରାବଣ ହସ୍ତରେ ରହିଲା
ଆରଖଣ୍ଡ ନେଲା ବାଳୀ
ଧରାଧର ହୋଇ ଦୁଇ ରାଜାଙ୍କର
ଲାଗିଲା ବିଷମ କଳି ॥

ଯେଉଁ ପୁତ୍ର ଗୋଟି ବେଙ୍ଗବଣ୍ଟ କନ୍ୟା
ଗର୍ଭରେ ଧରିଣ ଥିଲା
ବେନଫାଳ ହୋଇ ଗିବା ମାତ୍ରକେ ସେ
ଭୂମିରେ ଢଳି ପଡ଼ିଲା ॥

ଏସନକ ଗତ ଦେଖି ବେଦପତି
ମରାଳ ଚଢ଼ି ଆଇଲେ
ତେତିଶ କୋଟି ଦେବଗଣ ସେନଣ
ରାବଣ ପାଶେ ହୋଇଲେ ॥

ଯମ କୁବେର ପବନ ବୈଶ୍ବାନର
ବୃହସ୍ପତି ଆଦି ଥାଇ
ବେନି ରାଜାଙ୍କର କଳି ଦ୍ବନ୍ଦ ଦେଖି
ସମସ୍ତେ ଆଇଲେ ଧାଇଁ ॥

ରାବଣ ବୋଇଲା ଆହେ ବେଦ ବ୍ରହ୍ମା
କେମନ୍ତ ବୁଝିଲ ତୁମ୍ଭେ
ମନକତେ ଆମ୍ଭର ଭରସା ଏହାକୁ
ବନ୍ଦୀ ହୋଇଅଛୁଁ ଆମ୍ଭେ ।।
କାହିଁପାଇଁ ଆସି ବାଳୀ ରଜା ମୋତେ
ଏତେ ଲଜ୍ଜାବାଦ ଦେଲା
ମୁନି ହତ୍ୟା କରି ପାତକ ଅରଜ
କେଉଁଣି ଆତେ ନୋହିଲା ।।
ବାଳୀ ବୋଇଲାରେ ପାମର ରାବଣ
ମୋହର ଭାରଜା ସେହୁ
ବରଳା କନ୍ୟାକୁ କପଟେ ଆଣିଲୁ
ଅଧର୍ମ ଅର୍ଜିଲୁ ତହିଁ ।।
ଆଦର ବଶେଷେ ମୋହର ଗର୍ଭରେ
ହୋଇଥିଲା ଗର୍ଭବାସ
ଦେବତା ଗଣ ବସ୍ତ୍ରର କହ ତୁମ୍ଭେ
କାହାର ଅଟେ ଏ ଶିଷ୍ୟ ।।
ବ୍ରହ୍ମା ବୋଇଲେ କଳ ଦ୍ୱନ୍ଦ ନକର
ବେନରଜା ତୁମ୍ଭେ ଥାଅ
ମଧ୍ୟସ୍ଥ ପଣେ କଥାଏକ କହିବା
ଯେ ଯାହାରେ ବୋଧ ପାଅ ।।
ବେଭାରେ କନ୍ୟା ଯେ ବର୍ଣ୍ଣମାଳା ଦେଇ
ବରିଅଛି ବାଳୀ ରଜା
ଏବେ ପୁଣି ତାକୁ ରାବଣ ଆଣିଲା
ଯୁକତେ ହୋଇଲା ସଖା ।।
ବାଳୀ ମୁଖ ଚାହିଁ ବ୍ରହ୍ମାଏ ବୋଇଲେ
ମୃତ ଶବ ଝଣ୍ଡିଥିଅ
ଯହିଁପାଇଁ ଏବେ କନ୍ୟା ନାଶଗଲା
ତୋହର ପୁତ୍ରକୁ ତୁ ନିଅ ।।

ଏ ପୁତ୍ର ତୋତେ ବଜ୍ର ଗୁଣେ ଆସିବ
ପ୍ରକାଶ ହୋଇବ ଧର୍ମ
ଅଙ୍ଗଦର ଯେବେ ବାହାର ହୋଇଲା
ଅଙ୍ଗଦ ଦେବୃଟି ନାମ ।।

ବ୍ରହ୍ମାଙ୍କର ବାଣୀ ଏସନକ ଶୁଣି
ବାଳୀ ରଜା ମନେ ତୋଷ
ମୃତ୍ୟୁଶବ ଗ୍ରାଢ଼ ପୁତ୍ର ଗୋଟି ଘେନ
ମିଳିଲା ଆପଣା ଦେଶ ।।

ବ୍ରହ୍ମା ମୁଖ ଗୃହିଁ ରାବଣ ବୋଇଲା
କବୁଦ୍ଧି କରିବ ଏବେ
ଏ କନ୍ୟା ଗୋଟିକ ଦେବତା ହୋଇଯେ
ଜାଆଇଁ ନଦେବ ଯେବେ ।।

ନଷ୍ଟପୁ ଭୁମ୍ଭର ନଜ ପଦ ଫେଲ
ସଂପୂର୍ଣ୍ଣେ କରିବ ନାଶ
ପଛନ୍ତ କାଳେ ଦେବତାମାନେ ତୁମ୍ଭେ
ମୋତେ ନ ଦେବନ୍ତି ଦୋଷ ।।

ବ୍ରହ୍ମାପଦ ଫେଇ ଅନ୍ୟକୁ ଦେବଇଁ
ଇନ୍ଦ୍ର ପଦ ଯିବ କ୍ଷୟ
ତେତ୍ରିଶ କୋଟି ଦେବତାଙ୍କୁ ମାରିବ
ମୋହର କାହାକୁ ଭୟ ।।

ଶୁଣି ବେଦପତି ମନେ ଲଜ୍ଜ ହୋଇ
ବୋଇଲେ କନ୍ୟାକୁ ଯୋଡ଼
ଯମ ଦେବତାଙ୍କୁ ଆଜ୍ଞା ଦେଲେ ତୁମ୍ଭେ
ସଞ୍ଜିବନୀ ମନ୍ତ୍ର ପଢ଼ ।।

ବିଶ୍ୱକର୍ମାକୁ ବେଦବ୍ରହ୍ମା ବୋଇଲେ
କନ୍ୟାକୁ ଯୋଡ ତୁ ବସି
ଶତ୍ରୁ ଶତ ଗୁଣେ ସୁନ୍ଦରୀ ହୋଇବ
ଦେଖିଲେ ହଲିବେ ଋଷି ।।

ବ୍ରହ୍ମାଙ୍କର ବାଣୀ ଏମନକ ଶୁଣି
କନ୍ୟାର ଧଇଲେ ହସ୍ତ
ବେଣୁଫାଳ ନେଇ ଏକଠାରେ ଥୋଇ
ଉପରେ ଢାଙ୍କିଲେ ନେତ ।।

ମାନସିକେ ବସି ଉଚ୍ଚରେଣ ପଢ଼ି
ସମସ୍ତ ନିର୍ମାଣ କଲା
ସୁନ୍ଦରୀପଣେ ପୃଥ୍ୱୀରେ ଲମ ନାହିଁ
ବ୍ରହ୍ମାଣ୍ଡଯାକ ମୋହିଲା ।।

ପବନକୁ ଚାହିଁ ବ୍ରହ୍ମା ଆଜ୍ଞା ଦେଲେ
ଜୀବନ ହୋଇ ତୁ ପଶ
ଆମ୍ଭମାନଙ୍କର କୀରତି ରହିବ
ଲଙ୍କପତି ପାଉ ଯଶ ।।

ଶୁଣି ପବନ ଚତୁର୍ମୁଖ ବଚନେ
ପଶିଲା କନ୍ୟା ଶରୀରେ
ସଞ୍ଜୀବନୀ ମନ୍ତ୍ର ପଢ଼ିଲା ମାତ୍ରକେ
ସୁନ୍ଦରୀ ଉଠିଲା ଖରେ ।।

ଦେଖିଣ ରାବଣ ହରଷିତ ହୋଇ
କୋଡ଼ରେ ଧଇଲା ନେଇ
ମୁଖେ ଚୁମ୍ବ ଦେଇ ପ୍ରଶଂସା କଲା ସେ
ଦେବତା ମାନଙ୍କୁ ଚାହିଁ ।।

ବ୍ରହ୍ମାଙ୍କ ମୁଖକୁ ଅନାଇ ବୋଇଲା
ଯାଅ ତୁମ୍ଭେ ପିତାମହ
ଏକନ୍ୟା ଗୋଟିକ କନାମ ଦେବାଟି
ବରୁଣ ଆମ୍ଭଙ୍କୁ କହ ।।

ବ୍ରହ୍ମା ବୋଲିଲେ ଯେ ଶୁଣ ଲଙ୍କପତି
ଯୁଗେ ଯୁଗେ କଥା ଥାଉ
ଅତି ମନ୍ଦ ଯୋଗେ ପ୍ରାପତ ହୋଇଲା
ମନ୍ଦୋଦରୀ ନାମ ହେଉ ।।

ହେଉ ହେଉ ବୋଲି ସମସ୍ତେ ବୋଇଲେ
ହରଷିତ ହେଲେ ବହେ
ମନ୍ଦୋଦରୀ କନ୍ୟା ଘେନିଣ ରାବଣ
ଲଙ୍କାରେ ପ୍ରବେଶ ହୁଏ ।।

ଦେବତାମାନଙ୍କୁ ମେଲାଣି ଦେଇଣ
ରହିଲେ ଆପଣା ବାସ
ଶ୍ରୀଜଗନ୍ନାଥଙ୍କ ଚରଣେ ଶରଣ
ଅରକ୍ଷିତ କୃଷ୍ଣଦାସ ।।



# ତୃତୀୟ ଅଧ୍ୟାୟ

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
ତୁ ଯାହା ପୃଚ୍ଛିଲୁ ପୂର୍ବେ
ଧେନୁକର ଚେତେ ବିସ୍ତାର କହିଲୁଁ
ପ୍ରତେ ପାଇଲୁ କି ଏବେ ॥

ଏକା କନ୍ୟାକୁ ବେନଖଣ୍ଡ କରିଣ
ନେଉଥିଲେ ବେନରାଜା
ଧେନୁକର ହାଡେ କେମନ୍ତ ପ୍ରକାରେ
ବଢ଼ାଇ ମାଇପ ସଙ୍ଖା ॥

ଶାସ୍ତ୍ରବାଣୀ ଶୁଣି ମୋହମାୟା ଜିଣି
ଅଙ୍ଗୁ ପାପ କର କ୍ଷୟ
ଏଧର୍ମ ଶାସ୍ତ୍ରର ଅପାର ମହିମା
ଶୁଣ ଚିତ୍ତ କରି ଥୟ ॥

ଶ୍ରୀକୃଷ୍ଣ ବଚନେ କୁବେର ବୋଇଲା
ସାହ୍ୟକର ମୋତେ ହରି
ସଂସାର ସିନ୍ଧୁକୁ ନଉକା ହେଲ ଯେ
ନିଶ୍ଚିନ୍ତେ ହୋଇଲେ ପାରି ॥

ଏବେ ତ ମୋହର ସଂଶୟ ଫିଟିଲା
ଶୁଣିମା ଦେବାଧି ରାଜା
ବିଧାତା କରଇ ଏମନ୍ତ ପ୍ରକାର
ବଢ଼ାଇ ମାଇପ ସଙ୍ଖା ॥

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
ବଢ଼ାଇ ମାଇପ ଗୁଣ
ଯୁଧିଷ୍ଠି ଦେବଙ୍କ କଥାକୁ ମୋହର
ଲୟକର ତୁହି ଶୁଣ ॥

ଯେହ୍ନି ମହାଧର୍ମ ଯେ ଅଟେ ଉତ୍ତମ
କରିବେ ଯଜ୍ଞ ସମ୍ଭାର
ଖୋଲ ହନଯାଏ ଭଣ୍ଡାର ମୁକୁଳା
କରିଥିବୁ ତୁ କୁବେର ॥

ମୋ ଆମ୍ଭର ଜ୍ୟେଷ୍ଠ ଅଟନ୍ତି ଗରିଷ୍ଠ
ନାମ ମୋ ଧର୍ମ ଯୁଧିଷ୍ଠି
ତେଣୁକରି ଆମ୍ଭେ ତାହାଙ୍କ ଚରଣେ
ଦଣ୍ଡବତ କରୁଁ ନଛଁ ॥

ପ୍ରଭୁଙ୍କ ବଚନେ କୁବେର ବୋଇଲା
ଶୁଣ ତୁ ନନ୍ଦର ବାସି
ଆଜ କାହାକୁ ସଂସାର ଭିତରେଯେ
ଦଣ୍ଡବତ ପ୍ରଭୁ ଅଛି ॥

ତେଣୁକରି ମୁଁ ଯେ ଅପ୍ରତେ ପାଇଲି
ଫେଡ଼ିବା ମନ ସଂଦେହ
କେଉଁମାନଙ୍କୁ ଦଣ୍ଡବତ ଆସଇ
ଏକଥା ତୁ ମୋତେ କହ ॥

ମୋର ଏହ୍ନବାଣୀ ଶ୍ରବଣରେ ଶୁଣି
ଆଶ୍ଚର୍ଯ୍ୟ ହୋଇଲେ ହରି
କେଉଁ ଭାବରେ କାହାକୁ ଦଣ୍ଡବତ
କେବଣ ପ୍ରକାରେ କରି ॥

ଏହ୍ନକଥା ମୋର ହୃଦୟ ପଦ୍ମରେ
ରହିବ ଯେ ସଦାହିନ
ତୁମ୍ଭ ଶ୍ରୀମୁଖରୁ ସଂଶୟ ଫିଟିବ
ପ୍ରତେ ଉପୁଜିବ ମନା ॥

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନଞ୍ଜ
ତୁମ୍ଭେ ପୁଚ୍ଛାକଲ ଯାହା
ଯେଉଁମାନଙ୍କୁ ଦଣ୍ଡବତ କରିବ
ତୋ ଆଗେ କହିବା ତାହା ॥

ରଣରେ ଶତ୍ରୁ ପଥରେ ନ ଚାଲିଣ
ସଂଗ୍ରାମ କରିବ ଯାଇ
ଶରଣ ଦେଖିଲେ ଯେମନ୍ତ ପ୍ରକାରେ
ବ୍ରହ୍ମଅଗ୍ନି ପଡ଼େ ଡେଇଁ ।।

ଶାନ୍ତ ପକ୍ଷ ବାଣ ହୃଦୟକେ ଟାଣ
ଲାଗିବେ ବାଜି ଫୁଟେ ଯେବେ
ତହିଁ ଯେଉଁ କ୍ଷତ୍ରୀ ବିମତ ନ ହୋଇ
ପଛକୁ ନଯୁଞ୍ଜେ ଲବେ ॥
ଶ୍ରାବଣର ପାଣି ଶାହାସ୍ତ ଯେ ଜାଣି
ବରଷିବ ଅଙ୍ଗ ଗାଢ଼
ତହିଁ ଯେଉଁ କ୍ଷତ୍ରୀ ପଛକୁ ନଯୁଞ୍ଜି
କରୁଥିବ ପ୍ରାଣ ଗାଢ଼ ॥

ଆତ୍ମାକୁ ଆସନ କରିଯେ ଆସନ୍ନ
ଯୁଦ୍ଧେ ଦେଖାଇବ ସତ
ଏମନ୍ତ ଭାବେ ଯେଉଁ କ୍ଷତ୍ରୀ ହୋଇବ
ତାଙ୍କୁ ମୋର ଦଣ୍ଡବତ ॥
ଯେଉଁ ସତୀ ନାରୀ ସ୍ୱାମୀସେବା ଯେ କରି
ପ୍ରଭୁପାଦେ ମନଦେଇ
ପର ପୁରୁଷରେ ଚିତ୍ତ ନବଳାଏ
କେବେହେଁ ବିମୁଖ ହୋଇ ॥

ପରର ଭର୍ତ୍ତାକୁ ନିଜ ପିତା ସମ
ମନ ମଧ୍ୟରେ ଯେ ଜାଣେ
ଧନ୍ୟ ଭକତା ବୋଲି ଯେ ଦଣ୍ଡବତ
ଯୋଗାଏ ବିଧି ପ୍ରମାଣେ ॥
ପ୍ରକୃତ କ୍ଷତ୍ରୀସ୍ତ୍ରୀ ପତିବ୍ରତା ନାରୀ
ସୁସାଧୁ ଶାତକ ସ୍ମୃତ
ଏମାନଙ୍କୁ ଦଣ୍ଡବତ ମୋହର
ହୃଦୟେ ଥିବୁ ବିସ୍ମୃତ ॥

ପ୍ରଭୁ ବଚନେ ଧନପତି ବୋଇଲା
ଶୁଣ ତୁମ୍ଭେ ଚନ୍ଦ୍ରଧର
ଆବର କେତେ ଲୋକଙ୍କୁ ମହାପ୍ରଭୁ
ଦଣ୍ଡବତ ତୁମ୍ଭେ କର ॥

କୁବେର ବଚନେ ଶ୍ରୀହରି ବୋଇଲେ
ଯାହା ପୁଚ୍ଛା କଲ୍ ମୋତେ
ଆଜ ଯାହାକୁ ଦଣ୍ଡବତ କରଇ
ସେକଥା କହିବ ତୋତେ ॥

ପୃଥ୍ୱୀ ପ୍ରଭୁଙ୍କ ବଷ୍ଟାର ଭାବ ଯେ
ଅପ୍ରମେୟ ଅସଂଖ୍ୟ ନିଧି
କେଉଁଠାରେ ହୀରା ମାଣିକ୍ୟ ଥୋଇଛି
କେଉଁଠାରେ ଅଛି ନିଧି ॥

ଶୁଦ୍ଧ ସୁବର୍ଣ୍ଣ ଯେ ପାଣି ଦ୍ରବ୍ୟମାନ
ସ୍ଥାବର ଜଙ୍ଗମ ମୂଳେ
ସର୍ପ ମଣ୍ଡୂକ ନାନା ଜୀବ ସହିତେ
ଧାରଣ କରିବ ତୁଳେ ॥

ଜଳରେ ଯେତେ ମିନା ନାନା କୁଛୁଣି
ସଂସାରେ ଉପୁଜୁ ଅଛି
ଯେତେ ପୀଡ଼ା କଲେ ସମସ୍ତ ସହଇ
ନବୋଲେ କାହାକୁ କିଛି ॥

ସାତ ଯେ ସାଗର ଦୁର୍ଗମ ଯେ ଘୋର
ଆବର ମେରୁ ପର୍ବତ
ଏତେ ମହାଭାର ଯେ ସହି ପାରିବ
ତାଙ୍କୁ ମୋର ଦଣ୍ଡବତ ॥

ଗଙ୍ଗାର ଜଳ ଯେ ଅତ୍ୟନ୍ତ ନିର୍ମଳ
ବୁଝାଇ କହିବା ଥୋକ
ତାହା ହୃଦରେ ବଗୁର ଆଉ ନାହିଁ
ତେଣୁ ଅଟେ ବଡ଼ଲୋକ ॥

ବିଷ୍ଠାର ସହିତେ ଆବର ଯେ ଯେତେ
ଅଖାଦ୍ୟ ଦ୍ରବ୍ୟମାନ ଭଲା
ଅମୃତ କୁଣ୍ଡଯେ ଏ ସୁରା ଭାଣ୍ଡଯେ
ସବୁତ ଏକତ୍ର କଲା ॥

ବ୍ରାହ୍ମଣର ପୁର ଚଣ୍ଡାଳର ଘର
ସମସ୍ତ ଏକତ୍ର କରି
ମୂର୍ତ୍ତିରେ ବସିଲେ ନାନାବି ପାତକ
ଡରେ ଯାନ୍ତି ପାପ ସରି ॥

ମ୍ଲାହାନ କର୍ମ ଯାବତ ବିଧି ଧର୍ମ
ପବିତ୍ର କରେ ଜଗତ
ଏମନ୍ତ ଭାବେ ଯେଉଁ ଲୋକ ହୋଇବ
ତାକୁ ମୋର ଦଣ୍ଡବତ ॥

ଏହି ଷଡ଼ଲୋକ ଯେ ଅତି ବିବେକ
ବିପ୍ରର ବୁଝି ତୁ ରହି
ଆବର ଯାହାକୁ ଦଣ୍ଡବତ କରେ
ତାହା ଦେବି ତୋତେ କହି ॥

କପିଳା ନନ୍ଦନ ଜଗତ ବନ୍ଦନ
ଗୁପତେ ଅଟଇ ଜ୍ୟେଷ୍ଠ
ସଚରାଚର ଜୀବଜନ୍ତୁ ସହିତେ
ସବୁରି ଉପରେ ଶ୍ରେଷ୍ଠ ॥

ବ୍ରହ୍ମାଣ୍ଡ ଯେ ଭର ଜଗତେ ଯେ ସାର
କାଇରେ ଅଛନ୍ତି ସେ ବହି
ପୁର ନରକୁ ଉପକାରୀ ଅଟଇ
ନର୍ମଳ ପବିତ୍ର ଦେହି ॥

ହଳରେ ଯୋଚ ମିନା ତାକୁ କ୍ଷୁନ୍ତି
ଦୁଃଖକୁ ନାହିଁ ତା ଭୟ
ମଳ ମୂତ୍ର ଦୁଇ ଦେହେ ବୋଳି ହୋଇ
ଅବକାର ବ୍ରହ୍ମମୟ ॥

ଦେହରେ ମାଡ଼ ବାଜଇ ଅନ୍ତଗାଡ଼
ସହ୍ୟ କରେ ସବୁ ତାହା
ନିଶ୍ୱାସ ଛାଡ଼ି ତୁଣ୍ଡ ନ ଫିଟଇ
କିଛି ନ ବୋଲଇ ଆହା ॥

ପିଠିରେ ତାହାର ବହନ୍ତ ସେ ଘର
ପଥର ଲଦିଲେ ବହେ
ଶକ୍ୟ ଅନୁନମେ ସେତେକ ଟାଣିବ
ତହିଁକି ନସତ ନୁହେ ॥

ଲଦନ ଗାଡ଼ିରେ ସେ ପଞ୍ଜରର ହାଡ଼େ
ଉଠଇ ରକତ ମାଳା
ପରପାଇଁ ସେ ଯେ କକଥନା ହୋଇ
ଦେହରେ ସହଇ ଜ୍ୱାଳା ॥

ଖୁଲନ୍ତେ ସେ ଯୋଗୀ ପଲାଣହିଁ ଲାଗି
ପିଠିରେ ଗୋଠା ବହିଲେ
ଖୁରରେ କାଟି ଖଣ୍ଡଖଣ୍ଡ କରନ୍ତି
ଅଂଶାଇ କୋପ ପଡ଼ିଲେ ॥

ଲବଣ ସେ ଗୋଳ ଘାଆ ମୁଖେ ବୋଳ
ଔଷଧ ଧୂରନ୍ତି ଗାଡେ
ଲହୁରୁଣୀ ଯେନ ପିଠ ଯାକ ଖାଉ
ଖାଉଦ୍ୟନ୍ତି ଗୃହଆଡେ ॥

ତପତ ସେ ଲୁହା କହିବ ସେ କାହା
ସୂର୍ଯ୍ୟ ତେଜ ପ୍ରାପ୍ତ ହୋଇ
ନିରଣ କରି ଦେହରେ ଦାଗଦ୍ୟନ୍ତି
କେ ପାରିବ ତାହା ସହି ॥

ଜୀବନରେ ନାଶି ଥାଇସେ ଭରସି
ନୁହଇ ନସତ ବୃତ୍ତି
ଏମନ୍ତ ଭାବେ ଯେଉଁ ଲୋକ ହୋଇବ
ତାଙ୍କୁ ମୋର ଦଣ୍ଡବତ ॥

ଏହା ଯେ ମୋହର ଯୁକ୍ତରେ ସାର
　　　　ତୋ ଆଗେ କହ୍ଲୁ ପିନା
ଆବର ଯାହାଙ୍କୁ ଦଣ୍ଡବତ ହେବା
　　　　ତାହା କହୁ ଶୁଣ କନା ।।

ଆବର ବୃକ୍ଷକୁ ଲକ୍ଷ୍ୟ ଯେକ ଦେବା
　　　　ଜଗତଙ୍କ ଉପକାଷ୍ଣ
ବିନା ଦୋଷରେ ମୂଳ କାଟି ପକାନ୍ତି
　　　　ଖଣ୍ଡ ଖଣ୍ଡ କଶ ଚଶ ।।

ବନକୁ ଯେ ଯାଇ ତାକୁ ଦିଏ ଗୁଇ
　　　　କାହାକୁ କ ଦୋଷ କଲ
ଧର୍ମକୁ ସେ ଯେ ଉପକାଷ୍ଣ ହୋଇଣ
　　　　ପର ହିତେ ପ୍ରାଣ ଦେଲ ।।

ରଜାର ଘର ଯେ ଜଗଣ୍ଣୀ ମନ୍ଦର
　　　　ସବୁଠାରୁ ତାଙ୍କୁ ଲୋଡ଼
ଜନ ପରଜା ଗୃହବାସ ସନ୍ଥେତେ
　　　　ଋଷିଙ୍କର ମଠବାଡ଼ ।।

ସେ ଯହିଁ ନାହିଁ ସୁନ୍ଦର ଅବା କାହିଁ
　　　　ଦିଶିବ ବ୍ରହ୍ମାଣ୍ଡ ଗୋଠା
ମେଡ ମଣ୍ଡପ ନାବ ରୂଷ ହୋଇଛୁ
　　　　ସମୁଦ୍ରେ ବହୁଛୁ ପଠା ।।

ଘାଟକୁ ଯେ ରୂଖା ସେହି ଅଟେ ଏକା
　　　　ଫରୂଆ କରାଠ ମୂଳେ
ଗୃହ ରୂଅ ଖମ୍ବ ଅତ ଯେ ଆରମ୍ଭ
　　　　ତେଣ୍ଡା କାଠ ହୋଇ ଜଳେ ।।

ମାଡକୁ ଅଡ଼ା ସେ ବସିବାକୁ ପୀଢ଼ା
　　　　ଦୁଆର ଖଟ କବାଟ
କୋଡ଼ କୁରାଢ଼ି ଖଣନ୍ତି ମୂଳେ ସବୁ
　　　　ଶସ୍ତ୍ର ମାନଙ୍କର ବେଣ୍ଟ ।।

ଲଙ୍ଗଳ ମଇ ଶକଟ ଆଦି ହୋଇ
ସଂସାର ଉତ୍ଥାନ ମେନେ
ଏକା ବୃକ୍ଷର ଅନନ୍ତ କାର୍ଯ୍ୟ ହୁଏ
ବିସ୍ତାର କହିବା କେତେ ।।

ଶିଶୁ ପିଲାଙ୍କ ଖେଳା ଦୋଳା ଆଦି ଯେ
ଯାହା କରଇ ତା ହୁଅଇ
ନାନା ପ୍ରକାରେ ଯେତେ ଦଣ୍ଡ ଦେଖିଲେ
ତହିଁକ ନମତ ନୋହି ।।

ଗ୍ରହଣର ଯୋଗ ଯାଗ ସଂଯୋଗରେ
ସର୍ବଠାରେ ତାଙ୍କ ଲୋଡ଼
ଯେଉଁଦିନ ତାର ପାଖଙ୍କୁ ନ ମିଳ
ସେ ଦିନ ଉଆସେ ପଡ଼ ।।

କାଟିଲେ ଡାଳ ତା କୁହଇଁ କିଛି
ବିମୁଖ ନୁହେଁ ତା ଚିତ୍ତ
ଏମନ୍ତ ଭାବେ ଯେଉଁ ଲୋକ ହୋଇବ
ତାକୁ ମୋର ଦଣ୍ଡବତ ।।

ଶୁଣହେ କୁବେର ଏସବୁ ପ୍ରକାର
କହିଲୁ ତଥ୍ୟ ବଚନ
ଆଉ ଯାହାକୁ ଦଣ୍ଡବତ ହୋଇବ
ସେ କଥା କର ଶ୍ରବଣ ।।

ଯେଉଁ ପୁରୁଷଟି ହୋଇବ ଉଦାସ
ବିଷୟୁ ବନ୍ଧନୁ ଫିଟି
ପରହିଂସକ ମାତା ପ୍ରାପ୍ତ ଦେଖିବ
କେବେ ନହୋଇ କପଟୀ ।।

ଖଳଜନ କଥା ମନର ବ୍ୟବସ୍ଥା
ଶ୍ରବଣେ ଶୁଣଇ ଯାହା
ଏକର କଥା ଆରକୁ ନ କହିଣ
ଗର୍ଭେ ସହାରଇ ତାହା ।।

ନକରଣ ଲୋଭ ସଂସାରର ଘର
ସବୁଠାରୁ ସେହୁଥାଇ
ଆପଣା କୋପ ଅନ୍ତର୍ଗତେ ସଂହାର
ଚତ୍ତେ ହରଷ ହୁଅଇ ।।

ଦୁଃଖର କଥା ହୁଦୟର ବ୍ୟବସ୍ଥା
ଅପଣା ଶରୀରେ ଯେନେ
ପର ଆପଣା ଏକ କରି ଦେଖଇ
ନ କରଇ ଭିନ୍ନେଭିନ୍ନେ ।।

ପିମ୍ପୁଡ଼ିହିଁ ଯେତେ ଗଜହିଁ ସେ ତେତେ
ବାସୁରୁ ଥାଇ ତା ଚିତ୍ତେ
ଦଶିପୋକକୁ ଗଜସମ ଦେଖଇ
ଭକତ ଲକ୍ଷଣ ଚିତ୍ତେ ।।

ରାଜାର ନବର ପରଜାର ଘର
ମଣଇ ଏକ ସମାନ
ସଂସାରର ଭାବ କବା ହାନିଲାଭ
ବୁଝିଥାଇ ସ୍ଥାନ ସ୍ଥାନ ।।

କୂପଜଳ ପୁଣି ସମୁଦ୍ରର ପାଣି
ଏକ ଭାବରେ ଦେଖିବ
ଚନ୍ଦ୍ର ସୂର୍ଯ୍ୟ ବେନି ଏକକରି ଯେଣି
ଆନ ଆନ ନ ପାଞ୍ଚିବ ।।

ଗରଳ ଅମୃତ ଗ୍ରାସ ଉପବାସ
ଦୁଃଖ ସୁଖ ମଣେ ସମ
ନିନ୍ଦିଲା ଲୋକକୁ ଦ୍ୱିଗୁଣେ ବନ୍ଦଇ
ମନରେ ନ ବାନ୍ଧି ତମ ।।

ଶାସ୍ତ୍ରରେ ଏ ବାଣୀ ନାହିଁ ବଖାଣି
ବଚନ ସଧୀରେ କହେ
ପ୍ରଶଂସା କଲେ ଗର୍ବର ଭାବେ ଥାଇ
ଲାଜକୁ ତା ବଡ଼ ଭୟେ ।।

ଅଗ୍ନିରେ ପୋଡ଼ିବା ଜଳରେ ବୁଡ଼ିବା
ଏ ଦୁଇ ସମାନ ମଣେ
ହିମ ଶିଶିର ବରଷା ଆଦିକରି
ବସନ୍ତ ଋତୁରେ ଗଣେ ।।

ସାଗରର ଘର ରତ୍ନର ମନ୍ଦିର
ଆବର ପର୍ବତ ଶିଖ
ଖାଲ ଟିକର ଲତା ବୁଦା ସମାନ
ମଣଇ ପରମ ସୁଖ ।।

କାକର ଖରାଯେ ଏକ ଭାବ ଯାର
ପ୍ରତେ ପାଉଥାଇ ମନ
କୁବେରର ପୁର ଦରିଦ୍ରର ଘର
ନ ମଣଇ ଭିନ୍ନଭିନ୍ନ ।।

କୋମଳ ବଚନ କହେ ଅନୁକ୍ଷଣ
ନ ବହଇ ଆନକଥା
ଦେଖି ପର କଳ ହୁଅଇ ସେ ଜଳ
ପାଉଥାଇ ମନେ ବ୍ୟଥା ।।

ଲୋଚନ ଦୁଇ ଯେ ନାସ୍ତିକରେ ଥାଇ
ଥାଇ ତା ଚେତନା ଘରେ
ନିର୍ବାତ ପ୍ରଦୀପ ଯେମନ୍ତ ଜଳଇ
ମନ ତା ସେଇ ପ୍ରକାରେ ।।

ପରଅପର ଭେଦ ନାହିଁ ତାହାର
ସବୁଠାରେ ଥାଇ ଝଳ
କଳକଟରି ମାଟିରୁ ବାହାରିଲେ
ନ ଲାଗେ ଯେସନେ ମଳ ।।

ଠିକରୁ ଦେଖିଲେ ସୁସ୍ଥ ପାଇଥାଇ
ଠାବ ତା ନିର୍ମଳ ସ୍ଥାନ
ପଙ୍କେ ପଶିଲେ ଗୁଞ୍ଜଫଳ ଯେମନ୍ତେ
ନ ଛାଡଇ ଜାତ ବର୍ଣ୍ଣ ।।

ନାନାଦ କୁରୁଷି କରୁଥାଇ ମିଶି
 ସଂସାରୁ ନୁହେଁ ବାହାର
ସ୍ୱଧର୍ମରେ ଥାଇ ଆନ ନଦେଖଇ
 ଧୀର ବୁଦ୍ଧି ଅଟେ ତାର ।।
ସ୍ୱର୍ଗମର୍ତ୍ତ୍ୟ ଦେନ ଏକ କର ଯେନ
 ଦୃଷ୍ଟିରେ କରଇ ତୁଲ୍ୟ
ପାଷାଣ ସୁବର୍ଣ୍ଣ ଦ୍ରବ୍ୟେ ସମପ୍ରୀତ
 ନ ବସ୍ତୁରେ ମନ୍ଦଭଲ ।।

ଅତହିଁ ନଦ୍ରା ଅତହିଁ ଉଜାଗର
 ଆନନ୍ଦେ ନାହିଁ ତା ଦୃଷ୍ଟି
ପାଦ ପଦ୍ମକୁ ତା ବହୁତ ଶରଧା
 ସୁଜନ ସଙ୍ଗତେ ଗୋଷ୍ଠି ।।

କାଚ କାଞ୍ଚନ ସମତୁଲ ଦେଖଇ
 ସାମନ୍ତ ସେବକ ଏକ
ବପ୍ର ଚଣ୍ଡାଳ ଯେ ଭିନ୍ନାଭିନ୍ନ ନାହିଁ
 ସମାନ ତାର ବିବେକ ।।

ଅଗ୍ନିର ଝାସ ଲାଗିଲେ ଶରୀରରେ
 ଶୀତଳ ପ୍ରାୟେକ ମଣେ
ସ୍ଥାବର ଜଙ୍ଗମ ଯେ କୀଟ ପତଙ୍ଗ
 ସମସ୍ତଙ୍କୁ ସମ ଗଣେ ।।

ବୃଦ୍ଧ ବାଳକ ବିବେକ ଅବିବେକ
 ସବୁଙ୍କୁ ସର ଗଣନା
ତଗ ମେଲଲେ ଜ୍ଞାନ ପ୍ରାଣ ମଣଇ
 ଯେନଇ ପର ବେଦନା ।।

ଲୋକ ଆଚାର ସେ ସବୁଁର ବିଷୟର
 ଯେଉଁ ଘଟେ ଯେଉଁ ମାନ୍ୟ
ଫେଡ଼ି କାହାକୁ ଦଣ୍ଡବତ ନୁହଇ
 ଅନ୍ତର୍ଗତେ ଚନ୍ତେ ଜାଣ ।।

ଅମୃତର ଫଳ ଔଷଧର ମୂଳ
ମମତା ଦୃଷ୍ଟିରେ ଦେଖେ
ଲଭ ହାନି ବେନି ଏକ କରି ଘେନି
ଭ୍ରାନ୍ତି କି ଦୂରୁ ଉପେକ୍ଷେ ।।

ଜନନୀ କି ପିତା ପୁତ୍ର ଯେ ଦୁହିତା
ଏହି ମଲେ ଶୋକ ନାହିଁ
ଥିଲା ନଥିଲା ଦୁଇ ଏକ କରିଣ
ପାଦପଦ୍ମେ ମନ ଦେଇ ।।

ଶଙ୍ଖର ଶବଦ ମହୁରୀର ନାଦ
ଟମକ ନିଶାଣ ଘାଏ
ଭେରୀ କାହାଳୀ ଟମକ ଆଦିକରି
ମଣଇ ଯେ ଏକପ୍ରାୟେ ।।

ଆମ୍ବ ଯେ ଜାଳମ୍ବ କଦଳୀ ଯେ ନିମ୍ବ
ବୃକ୍ଷଫଳ ଯେତେ ସହି
ତାଳ ତନ୍ତୁଳ ବରକୋଳି ସହିତେ
ଶ୍ରୀଫଳ ପ୍ରାୟ ମଣଇ ।।

କାକୁଡ଼ର ରସ ମୂଳାର ରସକୁ
ଆଖୁରସ ପ୍ରାୟ ମଣି
ଜାଇ ଯୁଇ ମଲ୍ଲୀ ସେବତୀ କରୁଣା
କମଳା ସଙ୍ଗତେ ଗଣି ।।

ଶୁଦ୍ଧ ଚଣ୍ଡାଳର ବ୍ରାହ୍ମଣର କୁଳ
ଏ ଦୁଇକି ଏକ ଦେଖି
ମଞ୍ଜାରର ସ୍ୱନ କାକର ବଚନ
କୋକିଳ ସଙ୍ଗତେ ଲେଖି ।।

ଘର ବାହାର ଭେଦ ନାହିଁ ତାହାର
ଶତ୍ରୁ ତା ଏମନ୍ତ ହିତ
ଖଡ଼ କୁଢ଼ରେ ଆସନ କରିଥିଲେ
ମଣଇ ସୁବର୍ଣ୍ଣ ପୀଢ଼ ।।

ପର ହିତ କଥା କେତେକ ବ୍ୟବସ୍ଥା
ଯାହାର ଯେଉଁ ବିଧାନ
ଜଗତ ଧନ ମୋହର ବୋଲକର
ବିରକ୍ତ ଥାଇ ତା ମନ ।।

ପାପକୁ ତାହାର ଭୟ ଯେ ଅପାର
ପୁଣ୍ୟକୁ ଆଦର ଥାଇ
ପରମାନନ୍ଦଙ୍କୁ ଚିତ୍ତରେ ଧରଣ
ପର ଦୁଃଖେ ଦୁଃଖୀ ହୋଇ ।।

ଶ୍ରୀପାଦପଦ୍ମ ବେନ ହୃଦେ ଥାଇ ଯେନ
ନିର୍ମଳ ଅଟେ ତା କାୟା
ପୋଷିଲା ଜନ୍ତୁକୁ କେବେହେଁ ନ ମାରେ
ପୀଡ଼ିତ ଲୋକକୁ ଦୟା ।।

କୁଟିଳ କଥାକୁ ଶୁଣିକରି ବ୍ୟଥା
ପାଉଥାଇ ମନେ ମନ
ଉଣ୍ଡାସି ଲୋକକୁ ଆନ ନ କହଇ
ଭକତ ଦେଖିଲେ ମାନ୍ୟ ।।

ଦେହକୁ ପ୍ରକୃତି କରଣ ନୃପତି
ନଜାଣଇ ଦୁଃଖ ସୁଖ
ପ୍ରଶୁଣା ହୋଇ ସେ ନିରନ୍ତରେ ଥାଇ
ପ୍ରସନ୍ନ ଦିଶେ ତା ମୁଖ ।।

ପଥରେ ଗମିଲେ ଦର୍ଶିଣ ଯେ ଥିଲେ
ଏକଭାବେ ତାହା ଜାଣେ
ପାଦପଦ୍ମ ବିନୁ ଯେତେ କଥା ମାନ
ହିତଯୋଗ ପ୍ରାପ୍ତି ମଣେ ।।

ହୃଦେ ଥାଇ ଦୟା ନଥାଇ ସେ ମାୟା
ପବନ ଚରଣ ଯାର
ଏମନ୍ତ ଭାବେ ଯେଉଁ ଲୋକ ହୋଇବ
ତାଙ୍କୁ ଦଣ୍ଡବତ ମୋର ।।

ଏ ସକଳ ଗିର ଶ୍ରବଣେ କୁବେର
ଶ୍ରୀହରି ମୁଖକୁ ଗ୍ଳହିଁ
କୋଟିଏ କୋଟି ଦଣ୍ଡବତ ହୋଇଲ
ପାଦ ପଦ୍ମ ତଳେ ଯାଇ ।।

ପ୍ରଭୁଙ୍କୁ ଗ୍ଳହିଁ ଧନପତି ବୋଇଲ
ଯାହା ଆଜ୍ଞା ଦେଲ ଭଲେ
ପ୍ରଭୁ ପଣରେ କେଉଁ ସୁଖ ରହିଲ
ଏମାନଙ୍କୁ ମାନ୍ୟ କଲେ ।।

ଅଶେଷ ବ୍ରହ୍ମାଣ୍ଡ ଠାକୁର ହୋଇ ଯେ
କହିଲ ଯେମନ୍ତ ବାଣୀ
ମନକୁ ମୋର ମହାଭୟ ଲଗୁଛି
ତୁମ୍ଭ ଶ୍ରୀମୁଖରୁ ଶୁଣି ।।

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
କହିବା ପ୍ରଭୁ ବଚନେ
ମୁନିମାନଙ୍କୁ ଦଣ୍ଡବତ କରଇ
ତାହା ନ ଜାଣୁ କ ମନେ ।।

ସତ ପାଳକଙ୍କୁ ଯୁଧିଷ୍ଠି ଦେବଙ୍କୁ
ଦଣ୍ଡବତ କଲି ମୁହିଁ
ଅନନ୍ତ ନାମେ ପଡିହାରି ହୋଇଲି
ଆସ୍ଥାନ ତଳରେ ଯାଇଁ ।।

ଅର୍ଜୁନର ଛଳେ ଶରବନ୍ଧ ତଳେ
ହନୁକଲ୍ମ ମୋତେ ଯାହା
ମୁଖ ପଦ୍ମ ଫୁଟି ରୁଧିର ବହିଲ
ସମସ୍ତେ ଜାଣନ୍ତି ତାହା ।।

ଆବର ଲକ୍ଷଣ ଶୁଣ ପ୍ରତ୍ୟକ୍ଷେଣ
ଚୋହ ଆଗେ ଦେବା କହି
ଭକତ ଭବକୁ ଶ୍ରୀବସ୍ତ ଚିହ୍ନି ଯେ
ହୃଦପଦ୍ମେ ଅଛି ବହି ।।

ପ୍ରହଲ୍ଲାଦକୁ ଇନ୍ଦ୍ରପଦ ଦେଲି ମୁଁ
ଜଗତେ କରନ୍ତି ଧନ୍ୟ
ରୁକ୍ମିଣୀ ହସ୍ତରେ ବିପ୍ରପାଦ ଧୋଇ
ତାହାକୁ କଲିଟି ମାନ୍ୟ ।।

ମୁହିଁ ଭଗବାନ ଭକତ ଜୀବନ
ମହିମା ଶରଣ ମେରୁ
ଶବରୀ ଚୁମ୍ବିଲା ଆମ୍ବକୁ ଭକ୍ଷିଲି
ଏହା କଥା ନ ବିସ୍ମରୁ ।।

ଜାତି ଅଜାତି ମୋ ଭିନ୍ନାଭିନ୍ନ ନାହିଁ
ସବୁ ଘଟରେ ମୁଁ ସତ
ବିଶ୍ୱ ସଂସାର ଖେଳଘର ନିମନ୍ତେ
ଶଙ୍ଖଚକ୍ର ଅଛି ଧୃତ ।।

ସୁର ଯେ ଅସୁର ନାଗ ଯେ କିନ୍ନର
ଯେତେକ ସଂସାର ମତ
ଜୀବ ଅଜୀବ ସଂସାରେ ଯେ ଅଛନ୍ତି
ସଭିଏଁ ମୋର ଭକତ ।।

ସ୍ଥାବର ଜଙ୍ଗମ ଏ କୀଟ ପତଙ୍ଗ
ସବୁଘଟେ ପୁଣ୍ୟମୟ
ଆମ୍ଭଙ୍କୁ ଆମ୍ଭେ ଦଣ୍ଡି ବଡ ହୋଇଲୁଁ
ତୁ କପାଁ କରୁଛୁ ଭୟ ।।

ଗୋଧନ ବତ୍ସାଙ୍କୁ ଦେବା କେଉଁ ଲକ୍ଷ୍ୟ
ତୋ ଆଗେ କହିଲୁଁ ଯାହା
ଏମାନେ ଯେଉଁ ଦଣ୍ଡ ସହି ପାରନ୍ତି
ମୋହ ବଳେ ନୁହେ ତାହା ।।

ତୁ ହୋ କୁବେର ମନକୁ ଥୟ କର
ଶ୍ରୀମୁଖେ କହୁଛି ଶୁଣ
ସହିଲ ଲୋକ ମହତ ହୋଦେ ବଡ଼
ଧ୍ରୁବ ଅଟେ ଏହା ଜାଣ ।।

ଶ୍ରୀକୃଷ୍ଣର ବାଣୀ ଧନପତ୍ତ ଶୁଣି
ଅନ୍ତର୍ଗତେ ଏକ କଣ
ମୋହର ଦ୍ରୋହକୁ ଦଣ୍ଡିବା ହେଉନ୍ତୁ
ଶଙ୍ଖ ଚକ୍ର ଗଦା ଧାରୀ ॥

ଶ୍ରୀକୃଷ୍ଣ ବୋଇଲେ ତୋତେ କାହିଁ ପାଇଁ
ଦ୍ରୋହଦଣ୍ଡ ଦେବ ମୁହିଁ
ଜ୍ଞାନେ ଅଜ୍ଞାନେ ଯେ ନଜାଣି ହୁଅଇ
ଏଥିରେ ଅପ୍ରାଧ ନାହିଁ ॥

ଭକତ ଶ୍ରବକୁ ସୁକତେ ଲମ୍ପଟ
ନାମ ମୋ କରୁଣା ସିନ୍ଧୁ
ଆମ୍ଭଙ୍କୁ ଆମ୍ଭେ ଦଣ୍ଡବତ ହୋଇଲୁଁ
ତୁ କିପାଁ ତାହାକୁ ନନ୍ଦୁ ॥

ମୋହର ନଥିଲା ଠାବ ଆଉ କାହିଁ
ବୁଝାଇ କହିବା ତୋତେ
ଦଶିଯୋକ ହୃଦେ ବଜେ କରଅଛୁ
ଶଙ୍ଖ ଚକ୍ର ଯେନ ହସ୍ତେ ॥

ଯେବଣ ଲୋକର ନାହିଁଟି ବିବେକ
ସଂଶୟ ନଥିବ ଫିଟି
ସେମାନେ ସିନା ପାନବଡ଼ ମଣନ୍ତି
ଶୁଣ ତୁ ହୋ ଧନପତି ॥

ବାହାର ଲୋକଙ୍କୁ ଭଣ୍ଡାଇବା ପାଇଁ
ଧରଇ ଆମ୍ଭର ଭେକ
ଭକତ ବୋଲି ସେମାନଙ୍କୁ ନ ବୋଲି
ପଶୁସଙ୍ଗେ ତାଙ୍କୁ ଲେଖ ॥

ମୁହିଁ ଅଛିଦ୍ର ପୁଣ୍ୟଜନ ପୁରୁଷ
ମୋତେ ଯେବେ ଛିଦ୍ର କଲା
ଜୀବ ସଙ୍ଗତେ ତାକୁ ଲେଖା ନକର
ଅଧମ ଗତିକି ଗଲା ॥

ଷଷ୍ଠୀ ଯତ ହୋଇ ସଂସାର ଭିତରେ
ଯେତେକ ଅଛନ୍ତି ପ୍ରାଣୀ
ଯେ ସତ୍ୟ ପାଳନ୍ତି ମୋ ତହୁଁ ଜଡ଼ ସେ
ଅନ୍ତର୍ଗତେ ଥିବୁ ଜାଣି ।।

ଯେବଣ ହରି ଅନନ୍ତ ରୂପଧରି
ସର୍ବ ଭୂତରେ ପ୍ରକାଶ
ସେ ପ୍ରଭୁ ଚରଣେ ଶରଣ ପଶଇ
ଅରକ୍ଷତ କୃଷ୍ଣ ଦାସ ।।

—*—

# ଚତୁର୍ଥ ଅଧ୍ୟାୟ

ଶ୍ରୀକୃଷ୍ଣଙ୍କ ବାଣୀ କୁବେର ଯେ ଶୁଣି
ପାଦେ ପ୍ରଣିପାତ କଲା
କେତେ କେତେ ଧନ ଯୁଧିର୍ଷ୍ଠିଙ୍କି ଦେବ
ଶ୍ରୀମୁଖେ କହ ବୋଇଲା ।।

ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
ପଚ୍ଛେ ବସୁରବ ତାହା
ଭକତ ମାନଙ୍କୁ ଦଣ୍ଡବତ କଥା
ଆମ୍ଭଙ୍କୁ ପୁଚ୍ଛିଲୁ ଯାହା ।।

ବାମ ପାଦ କାଣି ଅଙ୍ଗୁଷ୍ଠି ନଖରୁ
ଗଙ୍ଗାକୁ କରଚ୍ଛି ଜାତ
ସେହି ଜଳ ଆଣି ସ୍ନାନ କଲେ ମୁହିଁ
ତେବେ ହୋଇବ ପବିତ୍ର ।।

ତୁ ଯେ ବୋଇଲୁ ଏ ଯୁବତୀ ମାନଙ୍କୁ
ଦଣ୍ଡବତ କାହିଁ ପାଇଁ
ସ୍ତ୍ରୀମାନେ ଯେତେ ସଂସାରେ ଅଛନ୍ତି
ବୈଷ୍ଣବ ରୂପଟି ସେହି ।।

ଗୋ ମାତା ବତ୍ସଙ୍କୁ ଦେବା କେଉଁ ଲକ୍ଷ
ଅବତାର ବ୍ରହ୍ମ ମଧ୍ୟେ
ତାହା ମଳ ମୋର ଭବନେ ଲାଗିଲେ
ତେବେ ଯେ ପବିତ୍ର ହୁଏ ।।

ଆଉରି କଥାଏ ଶୁଣ ଶୁଦ୍ଧ ଚେତା
ଉତ୍ତମ ପୁର ଦୁର୍ଲଭ
ପଞ୍ଜୁରୀ ଭିତରେ ଶୁଆ ଯେସନ୍ତେ ଥାଇ
ଭାଷଇ ଅତି ସୁଲଭ ।।

ଭକତଙ୍କ ଗୁଣ କହିବା ଯେ ଶୁଣ
ସେ ମୋର ଅଟଇ ତାତ
ରାମ କୃଷ୍ଣ ହରି ଗୋବିନ୍ଦ ବୋଇଲେ
କହିବାରୁ ହୋଇଲ ଜାତ ॥

ଅଶେଷ କୋଟି ବ୍ରହ୍ମାଣ୍ଡ ମୋତେ ସେବି
ବସୁଧା ଅଛୁ ତା ବହି
ଏତେ ଉପରେ ସେ ନାସ୍ତି କରିବ
ମୁଁ କାହିଁ ଥାଆନ୍ତି ରହି ॥

ମୋର ମାୟା ମୁହିଁ ଛାଡ଼ି ନ ପାରଇ
କହିଲ ଧ୍ରୁବ ବଚନେ
ସାଧୁଠାରେ ଯେଉଁ ଖାତକ ନିର୍ମାୟା
ତେଣୁକରି ତାଙ୍କୁ ମାନେ ॥

ନଥିଲ ଖାତକ ଜୀବିକା ନିମନ୍ତେ
ଯେଉଁ ସାଧୁ ଧନଦେଲି
ଦୟାଳୁ ପୁରୁଷ ତାହାକୁ ବୋଲିବା
ଯେଣୁ ସେ ଦୟା ବହିଲି ॥

ମୁହିଁ ସେ ଖାତକ ମୁହିଁ ସିନା ସାଧୁ
ମୁହିଁ ସେ କପିଳା ବହି
ବିଶ୍ୱ ସଂସାରେ ଖେଳଘର ନିମନ୍ତେ
ନାନାରୂପ ହୋଇଅଛି ॥

ଏକାଚନ୍ଦ୍ରେ ଯେହ୍ନେ ଦିନମଣି ଉଦେ
ଏକାକଶୀ ଯେଉଁ ଘରେ
ଏକା ବସ୍ତୁ ସର୍ବଭୂତେ ପ୍ରକାଶିଛି
ବିଶ୍ୱର ବୃକ୍ଷ ତୁ ଏବେ ॥

ବସ୍ତୁଙ୍କୁ ବସ୍ତୁ ଧନଧାନ ଦେଉଛି
ବସ୍ତୁ ମୟଟି ଜଗତ
ବସ୍ତୁଙ୍କୁ ବସ୍ତୁ ଯେ ଭକ୍ଷ କରୁଅଛି
ଏହାଯେ ପରମ ତତ୍ତ୍ୱ ॥

ତୁ ଯେବେ ମୋତେ ନମସ୍କାର ହୋଇବୁ
ମୁକତ ହୋଇବା ପାଇଁ
ମୋହ ଲୋଚନ ଭିତରେ ତୋତେ ମୁହିଁ
ବେନ ହସ୍ତ ଯୋଡ଼ିଥାଇ ॥

ବସ୍ତୁକୁ ବସ୍ତୁ ଦଣ୍ଡବତ କରୁଛି
ନଜାଣେ ପାମର ମୂଢ
ସଂସାର ଯାକ ସମସ୍ତ ବସ୍ତୁ ମଧ୍ୟେ
ଏଥୁଁ ନାହିଁ ସାନବଡ଼ ॥

ଏକ ବୃକ୍ଷରୁ ଅନନ୍ତ ଶାଖା ଯେହ୍ନେ
ସେହିମନ୍ତ ବସ୍ତୁ ଲୀଳା
ନାନା ବର୍ଣ୍ଣ ଗାଈ ଦୂଇ କରି ଦେଖ
ସବୁରି ଗୋରସ ଧଳା ॥

ଏକା ଅଗ୍ନି ହାଦେ ଜଗତେ ବ୍ୟାପିଛି
ଏକାଜଳ ସବୁଠାଇଁ
ସହସ୍ର ଘଟରେ ଏକ ସୂର୍ଯ୍ୟ ଉଦେ
ତେସନ ଭାବେଟି ମୁହିଁ ॥

ଏକା ପବନ ସବୁଠାରେ ବହୁଛି
ଦିଶଯୁ ଅଛି କ ଭେଟ।
ଦର୍ପଣ ଭିତରେ ଗୃହିଁଲେ ଯେମନ୍ତେ
ଏକ ମୂର୍ତ୍ତୀ ବେନ ଗୋଟା ॥

ଏକାମେଘ ଯେହ୍ନେ ଅଶେଷ ବ୍ରହ୍ମାଣ୍ଡେ
ଜଳବୃଷ୍ଟି ଆଣି କରେ
ସ୍ୱର୍ଗମର୍ତ୍ତ୍ୟ ତିନ ଭୁବନ ଭିତରେ
ଏକ ବସ୍ତୁ ଅଛି ପୂରି ॥

ତୁ ଯେବେ ମନକୁ ଅପ୍ରତେ ପାଇଲୁ
ଆମ୍ଭଙ୍କୁ ଲଗିଲା ଦୁଃଖ
ତେଣୁ ତୋହ ଆଗେ ବସ୍ତୁରି କହିଲୁଁ
ଏବେ ତୁ ଭ୍ରାନ୍ତ ଉପେକ୍ଷ ॥

ଶୁଣିଣ କୁବେର ଶିରେ ଯୋଡ଼ି କର
ଭକ୍ତ ଘବେ ପ୍ରଣମିଲା
ବୋଇଲା ଶ୍ୱେପ୍ରଭୁ ନସ୍ତାର ପାଇଲ
ଜନ୍ମର ଦୁରିତ ଗଲା ॥
ଏବେ ଯେ ମୋହର ସଂଶୟ ଫିଟିଲା
ଛୁଟିଲା ହୃଦର ଭୟ
ଅଶେଷ ଜନ୍ମର ପାତକ ମୋହୋର
ଆଜଠାରୁ ଗଲା କ୍ଷୟ ॥
ଏବେ ଗୋସାଇଁ ପ୍ରସନ୍ନ ମୁଖ ହୋଇ
ଶୁଣ ତୁମ୍ଭେ ମହାବାହୁ
ଯୁଧିଷ୍ଠି ଦେବଙ୍କୁ କେତେ ଧନ ଦେବ
ଶ୍ରୀ ମୁଖରେ ଆଜ୍ଞା ହେଉ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଧନପତି
ପତ୍ରରେ ଲେଖି ତୁ ନିଅ
ଯେତେ ଧନ ଅମ୍ଭେ ଶ୍ରୀମୁଖେ କହିବା
ଯୁଧିଷ୍ଠି ଦେବଙ୍କୁ ଦିଅ ॥
କନକର ଚମ୍ପା ଲକ୍ଷମାତ୍ର ଦେବୁ
ଗୃନ୍ଦୁଆ ଲକ୍ଷେକ ଯିବ
ଶ୍ୱେତ ଚାମର ଲକ୍ଷ ଗୋଟି ସହିତେ
ସୁବର୍ଣ୍ଣ ଦର୍ପଣ ଥିବ ॥
ଉତ୍ତମ ଗଜ ମୁକୁତା ଲକ୍ଷେମାନ
ମାଣିକ୍ୟର ଲକ୍ଷେ ହାର
ସୁବର୍ଣ୍ଣର ପଦ୍ମ ଲକ୍ଷେକ ଦେବୁ ଯେ
ଯଜ୍ଞିଙ୍କୁ ଯେଉଁ ବେଗର ॥
ଯଜ୍ଞ ବଧି କାର୍ଯ୍ୟ ନିମନ୍ତେ ଏମାନ
ଭୀମସେନ ମୂଳେ ଦେବୁ
କାର୍ଯ୍ୟ ସରିଲେ ଯେ ତୋହର ପଦାର୍ଥ
ତୁ ତାହା ବୁଝିଣ ନେବୁ ॥

ଲକ୍ଷେ ବ୍ରାହ୍ମଣ ବନ୍ଧିବେ ଯେଉଁଧନ
କହିଲୁଁ କଥା ଯୁକତି
ଷୋଳ ଵନଯାଏ ଭଣ୍ଡାର ମୁକୁଳା
କରିବୁ ତୁ ଧନପତି ।।
ଏମନ୍ତେ ତହିଁ କୁବେରକୁ କହିଣ
ସନ୍ତୋଷେ କରୁଣା ସାଇଁ
ଯୁଧିଷ୍ଠିର ଦେବଙ୍କୁ ବୋଇଲେ ଗୋସାଇଁ
ଚାଲ ଯିବା ବେଗ ହୋଇ ।।
ଲକ୍ଷେ ନୃପତି ଯେ ଯଜ୍ଞରେ ଅଛନ୍ତି
ଅନେକ ଦଣ୍ଡ ସମ୍ଭାର
ଖନ୍ଦା ଯୋଗାଡ଼ ସାନ୍ଧଣା ବାଧ୍ୟ କରି
ଯାହାକୁ ଯେଉଁ ପ୍ରକାର ।।
ଅନ୍ନ ବ୍ୟଞ୍ଜନ ଭୁଞ୍ଜି କରି ରାଜନ
ନୃପତି ହୋଇବେ ଯେବେ
ତେବେ ସେ ପ୍ରଭୁ ଧର୍ମ ଉଦେ ହୋଇବ
ତୁମ୍ଭଙ୍କୁ କହୁଛୁ ଏବେ ।।
ଜଣ ଜଣକେ ଦଶଦଶ ଯୋଗାଡ଼
ଭିଆଣ କରିଣ ଥିବ
ଏକା ଜଣକର ଗର୍ଭ ନ ପୂରିଲେ
ସବୁହିଁ ନାଶକୁ ଯିବ ।।
ତେଣୁ କରି ମୁହିଁ ତୁମ୍ଭର ଗ୍ରାମରେ
ଵନଯେ କହୁଛୁ ଏବେ
ଶ୍ରୀମୁଖେ ଏବେ ଵରୁଣ ଆଜ୍ଞା ହେଉ
କୋପ ନ କରିବେ କେଭେ ।।
ଦ୍ରବ୍ୟ ଭୋଜନ ଭୁଞ୍ଜି କରି ରାଜନ
ସନ୍ତୋଷ କରିବେ ଚିତ୍ତ
ତେବେ ଯିନା ତୁମ୍ଭେ ପ୍ରଶଂସା ପାଇବ
ଶୁଣ ହୋ ଧର୍ମଙ୍କ ସୁତ ।।

ଶୁଣିଣ ଯୁଧିଷ୍ଠି ହୋଇଣ ତୃପତ
ଶ୍ରୀକୃଷ୍ଣଙ୍କୁ ଘେନ ସଙ୍ଗେ
ଆଗେ ଧର୍ମସୁତ ପଛରେ ଗୋବନ୍ଦ
ବଜେ କଲେ ହବ୍ୟରଙ୍ଗେ ॥

ଯଜ୍ଞଶାଳେ ଯାଇ ପ୍ରବେଶ ହୋଇଲେ
ହରଷ ହୋଇଲେ ବେଦ
ସର୍ବ ରାଜାମାନେ ଖଣ୍ଡ୍ରେ ଦୂରୁ ଦେଖ
ଚରଣେ କଲେ ଦସ୍ତିନ ॥

ଯୁଧିଷ୍ଠି ଦେବଙ୍କୁ ଆଗେ ଦଣ୍ଡବତ
ପଛେ ଗୋବନ୍ଦଙ୍କୁ ମାନ୍ୟ
ଆମ୍ଭ କଲ୍ୟାଣ ପ୍ରାପତ ହେଉବୋଲ
ପାଞ୍ଚିଲେ ଧର୍ମ ନନ୍ଦନ ॥

ଭୀମଙ୍କୁ ଗୃହିଁ ହରଷ ଚିତ୍ତ ହୋଇ
ବୋଇଲେ ହସ୍ତିନା ସାଇଁ
ଲକ୍ଷ ଭରଣ ଧାନ ଘେନ ଆସିବୁ
କୁବେର ପୁରକୁ ଯାଇ ॥

ଶ୍ୱେତ ଚାମର ଦର୍ପଣ ଆଦକର
କନକର ଚମ୍ପାମାନ
ହୀରା ମାଳା ଦ୍ରବ୍ୟ ମୁକୁତା ସହତେ
ଆଣିବୁ ନାନାଦ ବର୍ଣ୍ଣ ॥

ଯୁଧିଷ୍ଠିଙ୍କ ବାଣୀ ଭୀମସେନ ଶୁଣି
ଶିରରେ ଯୋଡ଼ିଲେ କର
ବୋଇଲେ ମୋତେ ଯେବଣ ଆଜ୍ଞା ଦେଲ
ଶୁଣିମା ଧର୍ମ କୁମର ॥

ପ୍ରଥମେ ନଜ ପାଇଣ ଦେବରାଜ
ଜଣାଇଲ ତୁମ୍ଭ ପାଶ
ଏବେ ପୁଣି ତୁମ୍ଭ ଆଜ୍ଞାରେ ଯିବ ମୁଁ
ନ ଦେଲେ କରିବ କସ ॥

ଯୁଧିଷ୍ଠି ବୋଇଲେ ଏ କଥାରେ ଆଜ
ସଂଶୟ ନାହିଁଟି ବାବୁ
ଶ୍ରୀଜଗନ୍ନାଥଙ୍କୁ ସଙ୍ଗତେ ଯେଣ ମୁଁ
ପ୍ରତ୍ୟିନ୍ନ କରଛୁ ସବୁ ।।
ତୁହି ଏବେ ଯାଇ କହବୁ ଯେ ତହିଁ
ଆଜ୍ଞା ଦେଲେ ଧର୍ମସୁତେ
ଲକ୍ଷ ଭରଣ ଧାନ ଋଣ ଦେବୁ ତୁ
ହୀରା ମାଣିକ୍ୟ ସହିତେ ।।

ତା ଶୁଣି ମାରୁତ ହୋଇ ହୃଷ୍ଟମନ
ଚଳିଲା ପବନୁ ବେଗେ
ଯୁଧିଷ୍ଠି ଦେବଙ୍କ ବଚନ ପ୍ରମାଣେ
ମିଳିଲା କୁବେର ଆଗେ ।।
ବୋଇଲା ହୋ ଭାଇ ବିଳମ୍ବ ନକର
ଧାଳ୍କାରେ ତୁମ୍ଭେ ଉଠ
ଧାନ ଅଷ୍ଟରନ୍ନ ନେବାପାଇଁ ମୋତେ
ପେଶିଲେ ପାଣ୍ଡବ ଜ୍ୟେଷ୍ଠ ।।
ପ୍ରଥମ ବନରେ ଯାଇ ଅପମାନ
ଯୁକତେ ବାହୁଡ଼ି ଗଲେ
ଶ୍ରୀଜଗନ୍ନାଥଙ୍କ ଯୁଧିଷ୍ଠି ଆଜ୍ଞାରେ
ଏଣୁ ତୋ ପାଶେ ଅଇଲି ।।
ଶୁଣି କୁବେର ଉଠିଣ ଧାଳ୍କାର
ଗଉଣି ହସ୍ତରେ ଧରି
ଲକ୍ଷେ ଭରଣ ଧାନ ମାପି ଥୋଇଲା
ଶଗଡରେ ଭାର କରି ।।
ହୀରାମାଳା ମୋତି ମାଣିକ୍ୟ ସହିତେ
ସୁବର୍ଣ୍ଣର ଚମ୍ପାମାନ
ଶ୍ୱେତ ଚାମର ଦର୍ପଣ ଆଦିକରି
ଦେଲା ସେ ଅନେକ ରତ୍ନ ।।

ଦେଖିଣ ମାରୁତ ହୋଇଣ ଭୃପତ
ବୋଇଲା ପବନ ସୂତ
ଆହେ ଧନପତି କେଉଁ ପଥେ ଯିବା
ବହନ କଢ଼ାଅ ବାଟ ।।

ଶୁଣିଣ କୁବେର ହୋଇଲା ବାହାର
ଚଳାଇକ ଧାଡିକାରେ
ଦେଖିଲେକ ନଦୀ ଗୋଟାଏ ହୋଇଛି
ମହା ବିସ୍ତାର କ୍ଷମରେ ।।

ଅଳପ ବାର ହୋଇଣ ସେହି ଦଣ୍ଡି
ପଙ୍କ ପାଣି ଗୋଳାଗୋଳ
ଶଗଡ଼ ବୁଡ଼ି ଠାବେ ଠାବେ ରହିଲା
ନପାରିଲା ଆଉ ଚଳ ।।

ଦେଖିଣ କୁବେର ମନରେ ତାହାର
ବଡ଼ିର କଲକ ଚର୍ଚ୍ଚି
କେଉଁ ବାଟେ ଆଉ ଶଗଡ଼ ଯିବଟି
ନଘୋଧ କରଛି ନଷ୍ଟ ।।

ଏଧାନ ଯେବେ ଯୁଧିଷ୍ଠି ନ ପାଇବେ
ସ୍ୱଭାବେ ଭାଙ୍ଗିବ ପ୍ରୀତ
ଶ୍ରୀଜଗନ୍ନାଥଙ୍କ ଶ୍ରୀ ମୁଖରେ ମୋର
ଉପୁଜିବ ଅପକୀର୍ତ୍ତି ।।

ବୋଲିବେ କୁବେର ଏଡ଼େ ଗର୍ବ ତାର
କସ ବଢ଼ିରଲା ଚଢ଼େ
ଯୁଧିଷ୍ଠି ଦେବଙ୍କୁ ଦ୍ରବ୍ୟ ଦେବା କହି
ଉପହାସ କଲା ମୋତେ ।।

ଏତେ ବିଚ୍ୟୁର କରିଣ ଧନପତି
ମନରୁ ଫେଡ଼ିଲା ଫାନ୍ଦ
ଲକ୍ଷ ଭରଣ ଧାନ ମେଲି ଦେଇଣ
ନଦୀରେ ବାନ୍ଧିଲା ବନ୍ଧ ।।

ପୃଣିହିଁ ଧାନ ଯେ ଲକ୍ଷେକ ଭରଣ
ଭଣ୍ଡାରୁ ଆଣିଲା ବହି
ନଦୀ ଭିତରେ ମହାବନ୍ଧ ପଡ଼ିଲା
ପର୍ବତ ଆକାର ହୋଇ ॥

ଏମନ୍ତ ଗଣ୍ଡ ଦେଖି କରି ମାରୁତି
ମନରେ ବହିଲା ତମ
କୁବେରକୁ ଗୃହିଁ କୋପେଣ ବୋଇଲା
ଅଟୁ ତୁ ଜାତ ଅଧମ ॥

ଦରିଦ୍ର ବେଶ ହୋଇଣ ତୁହି ପରା
ଧାନ ଖୁଣ୍ଟୁ ଥିଲୁ କାଲି
ଦେଖୁ ଦେଖୁ ଏବେ ଏତେ ଦ୍ରବ୍ୟ କମା
ନଦୀରେ ଦେଲୁକୁ ମେଲି ॥

ଭୀମ ବଚନେ ଧନପତି ବୋଇଲା
ଆଜ୍ଞାଦେଲ ତୁମ୍ଭେ ଯାହା
ମୁଁ ତୁମ୍ଭ ସ୍ଥମୁରେ ବୁଝାଇ କହିବି
ଏକମନେ ଶୁଣ ତାହା ॥

ଶଗଡ଼କ ଧାନ ଅକାରଣେ ଗଲା
ପ୍ରୟୋଜନ ଅଛି କସ
ଯେତେ ଧନ ଏବେ ନଦୀରେ ମେଲିଲି
ଅକାରଣେ ଗଲାନାଶ ॥

ଆବର ଯେବେ ଦଶଲକ୍ଷ ମେଲିବି
ହୃଦରେ ନଥିବ ବ୍ୟଥା
ଯୁଧିଷ୍ଠି ଦେବଙ୍କ କାର୍ଯ୍ୟରେ ଲଗିବ
ଯୁଗେ ଯୁଗେ ଥିବ କଥା ॥

କୁବେରର ବାଣୀ ଏସନକ ଶୁଣି
ମନେ ବିଗୃରିଲା ଭୀମ
ବୋଇଲା ବ୍ରହ୍ମାଣ୍ଡ ଭିତରେ ଏହାକୁ
କେହି ନାହିଁ ସରିସମ ॥

ଏତ ବଡ ଲୋକ ବୁଦ୍ଧିରେ ଅଧିକ
ସକଳ ଗୁଣେ ବକତା
ଶ୍ରୀ ଜଗନ୍ନାଥଙ୍କ ବଣ୍ଡାସୀ ସେବକ
କୋଠ ଭଣ୍ଡାର ବାରତା ।।
ମୁହିଁ ନ ଜାଣି ଇତର ପ୍ରାୟ ମଣି
ମନେ ମନେ କଲି ସାନ
ବେନି ଲୋଚନରେ ଏବେତ ଦେଖିଲି
ଏହାର ପ୍ରତିଜ୍ଞା ମାନ ।।
ଧନ୍ୟ ଜୀବନ ହୋ କୁବେର ତୋହର
ଧନ୍ୟ ତୋର ପିତା ମାତା
ଲକ୍ଷେ ରାଜାରେ ରାଜୁସି ଯାଗଠାରେ
ଅଛୁ ତୁହି ଅନ୍ନଦାତା ।।
ସ୍ୱର୍ଗମର୍ତ୍ତ୍ୟ ତିନ ଭୁବନେ ମହିମା
ବିକଶିଲ୍ ତୋର ଭଲେ
ପଞ୍ଚ ପାଣ୍ଡବଙ୍କ ମହିଁମା ରଖିବ
ଶ୍ରୀ ଜଗନାଥଙ୍କ ବୋଲେ ।।
ଏବେ ହୋ ବାବୁ ବହନ ହୋଇ ଯିବୁ
ମିଳବୁ ଆପଣା ବାସ
ଆବର ଲକ୍ଷେ ଭରଣ ଧାନ ଘେନ
ବହନ ହୋଇ ତୁ ଆସ ।।
ମାରୁତର ବାଣୀ ଏସନକ ଶୁଣି
ଧ'ଡକାରେ ଗଲ ଚଳି
ଲକ୍ଷେ ଭରଣ ଧାନ ଘେନ ଆସିଣ
ବୃକୋଦର ଆଗେ ମିଳ ।।
ଏଥୁ ଅନ୍ତେ ପୁଣ ମନଦେଇ ଶୁଣ
ରାଜୁସି ଯାଗର ବଧି
ରାଜାମାନଙ୍କୁ ସମାଦର କରନ୍ତି
ଯୁଧିଷ୍ଠି ନୃପତି ସୁଧି ।।

ଛପ୍ପା ଶୋଇ ସପ୍ତ ନୃପତି ତହିଁ ଯେ
ଗଣିତା ହୋଇବେ ଭଲ
ସୁବର୍ଣ୍ଣର ଗୃହ ସହସ୍ର ପ୍ରତିମା
ଗଢାଇଣ କଲେ ଭୁଲ ।।

ବିଶ୍ୱକର୍ମାକୁ ଗାଇଣ ପୀତବାସ
ବୋଇଲେ ଯାଅ ସତ୍ୱର
ସଭା ମଣ୍ଡପକୁ ଆଦେଶ ପ୍ରକାରେ
ନିର୍ମାଣ କର ସତ୍ୱର ।।

ସୁବର୍ଣ୍ଣର ପୀଢ଼ ରୂପାର ପାବଚ୍ଛ
ନିର୍ମାଣ କରିବୁ ଠିକେ
ହୀରାନୀଳା ମୁକ୍ତା ମାଣିକ୍ୟ ସଞ୍ଚତେ
ଲଗିଥିବ ଗୃହପାଖେ ।।

ଶୁଚଙ୍କ ମଧ୍ୟରେ ହୀରାମେଘୀ ପାଟ
ଉପରେ ଗୁନ୍ଦୁଆ ଖଞ୍ଜି
ଛତ୍ର ଗୃମର ଦର୍ପଣ ମାନଥିବ
ସହସ୍ରିକ ଯେମନ୍ତ ରଞ୍ଜି ।।

ପ୍ରଭୁଙ୍କ ବଚନ ଶୁଣି ବିଶ୍ୱକର୍ମା
ନିର୍ମାଣି ଲୋକ ସମସ୍ତେ
ଅଷ୍ଟରତ୍ନ ଲାଗି ସୁନ୍ଦର ଦିଶିଲା
ଚନ୍ଦ୍ରମା ଉଇଁଲା ପ୍ରାୟେ ।।

ଯଜ୍ଞଶାଳ ବେଢ଼ା ଲକ୍ଷେ ତାଳ ଭେଦ
ଉପରେଣ ଘୁମୁରିଆ
ଗୃହପାଖେ ଦ୍ରବ୍ୟ ବାସ ବେଢ଼ାଇଲେ
କେତେକ ପାଟ ଖଣ୍ଡୁଆ ।।

ସୁବର୍ଣ୍ଣର ଗୃହ ସହସ୍ର ପ୍ରତିମା
ଗଢ଼ାଇଣ କଲେ ବିଜେ
ଦେଖିକରି ମହାସନ୍ତୋଷ ହୋଇଲେ
ଦେବାଧି ଦେବଙ୍କ ରାଜେ ।

କାର୍ଯ୍ୟ ଶେଷକରି ଯାଇ ବିଶ୍ୱକର୍ମା
ଛାମୁରେ ଯୋଡ଼ିଲା ହସ୍ତ
ପଦ୍ମକରେ ତାଙ୍କୁ ଶାର୍ଙ୍ଗୀ ତୋଳିଦେଲେ
ଅଶେଷ ବ୍ରହ୍ମାଣ୍ଡ ନାଥ ।।
ଲକ୍ଷେ ନୃପତିଙ୍କୁ ଲକ୍ଷେକ ନବର
କ୍ଷଣକେ ନିର୍ମାଣ କରି
ଅନ୍ତର୍ଦ୍ଧାନ ହୋଇ ଶୂନ୍ୟରେ ରହିଲା
ବିଶ୍ୱକର୍ମା ଦଣ୍ଡଧାରୀ ।।
ଯୁଧିଷ୍ଠିର ରାୟ ପ୍ରଫୁଲ୍ଲ ଚିତ୍ତରେ
ଯଜ୍ଞଶାଳେ ବିଜେକଲେ
ଲକ୍ଷେ ବ୍ରାହ୍ମଣ ବେଦଧ୍ୱନି କରିଣ
ଅନଳରେ ଘୃତ ଦେଲେ ।।
ତିଳ ତଣ୍ଡୁଳ ଗୁଆ ଘୃତ ସହିତେ
ଭୋଗକଲେ ବୈଶ୍ୱାନର
ହରି ଶବଦେ ଏକଖଣ୍ଡ ହୋଇଲା
ସ୍ୱର୍ଗମର୍ତ୍ତ ତିନିପୁର ।।
ବାଦ୍ୟର ଚହଳେ ଲୋକଙ୍କ ଗହଳେ
କମ୍ପିଲା ଦେବୀ ଧରଣୀ
× × କରି ସ୍ୱର୍ଗରେ ଦେବତା
ପୁଷ୍ପବୃଷ୍ଟି କଲେ ଆଣି ।।
ଯଜ୍ଞର ବରଣେ ନୃପତିଙ୍କ ପଣେ
ବସିଲେ ଧର୍ମଙ୍କ ସୁତ
ଅନନ୍ତ ନାମେ ପଡ଼ିହାରୀ ହୋଇଲେ
ଆପଣେ ଶ୍ରୀ ଜଗନ୍ନାଥ ।।
ସୁବର୍ଣ୍ଣର ନେତ ଘେନି ପଦ୍ମମୁଖ
ଭକତ ବନ୍ଧୁ ଗୋସାଇଁ
ମହିମା ବୋଲି ଯୁଧିଷ୍ଠିଙ୍କି ଡାକଲେ
ଖଣ୍ଡେ ଦୂରେ ଉଭାହୋଇ ।।

ବୈଶ୍ୱାନର — ଅଗ୍ନି

ଜୟ ଜୟ ହରି ଶବଦ ଶୁଭିଲା
ବ୍ରାହ୍ମଣେ ଆଶୀଷ ଦେଲେ
ଲକ୍ଷେ ନରନାଥ ହୋଇ ଏକତ୍ରିତ
ପାଦେ ପ୍ରଣିପାତ କଲେ ।।

ସ୍ୱର୍ଗ ଗନ୍ଧର୍ବ ଖଟିଛନ୍ତି ସର୍ବ
ନୃତ୍ୟ କରୁଛନ୍ତି ଆଗେ
ବିବିଧ ଛନ୍ଦରେ ବାଜଣା ବାଜୁଛି
ମଙ୍ଗଳ ଗୃହସ୍ଥ ଧାଗେ ।।

ଶିବ ଭୂପତିଙ୍କୁ ଛାମୁକୁ ହକାରି
ଆଜ୍ଞାଦେଲେ ଜନ୍ତୁଧାସ୍ତୁ
ପଞ୍ଚୁ ନୃପତଙ୍କ ବ୍ରହ୍ମହତ୍ୟା ଦୋଷ
ଆଜଠାରୁ ଗଲା କ୍ଷୟ ।।

ଏମନ୍ତ ବୋଲି ଆପଣେ ଉଠିଆସି
ବହୁତ ପୃଷାର୍ଥ କଲା
କୋଳାଗ୍ରତ କରି ପଞ୍ଚୁ ନୃପତିଙ୍କି
ସଭା ଉପରକୁ ନେଲା ।।

ଏଥୁ ଅନନ୍ତରେ ରାଜର୍ଷି ଯାଗରେ
ବ୍ରାହ୍ମଣେ ଦଅନ୍ତି ଘୃତ
ସ୍ୱର୍ଗର ଗନ୍ଧର୍ବ ଅପସରା ମିଳି
ଛାମୁରେ କରନ୍ତି ନୃତ୍ୟ ।।

ଭାଟ କଏବାର ପଣ୍ଡିତ ଶ୍ଳୋକାର
ମୁଖରବ ଘୋରବାଦ୍ୟ
ଲକ୍ଷେ ନୃପତି ଏକଠାବେ ଅଛନ୍ତି
ବ୍ରହ୍ମାଣ୍ଡ କମ୍ପୁଛି ନାଦେ ।।

ଯୁଧିଷ୍ଠି ଦେବଙ୍କ ଛାମୁରେ ଉଭାଯେ
ହୋଇଣ କରୁଣାସାଇଁ
ହାହି ମହିମା ବୋଲି ଡାକୁ ଅଛନ୍ତି
ଆସ୍ଥାନ ତଳରେ ଥାଇ ।।

ଦେବ ଦାନବ ମିଶାମିଶି ହୋଇଣ
ସମୁଦ୍ର ଯେମନ୍ତେ ମନ୍ଥି
ଏକକୁ ଆରେକ ଦେହ ଯେ ଲାଗିଲା
ହେଉଛନ୍ତି ଯନ୍ତାଯନ୍ତି ।

ଖାଦ୍ୟ ଯୋଗାଡ଼ ରାନ୍ଧଣା ନିରନ୍ତର
ଅମୃତ ଉତ୍ତମ ପାକ
ସୁବର୍ଣ୍ଣ ଥାଳ ସୁବର୍ଣ୍ଣ କୁଣ୍ଡକାରେ
ପରଷନ୍ତି ଲାଗି ଲୋକ ।।

କୋଟିଏ ବାହ୍ମଣୀ ଘେନି ବିଶ୍ୱକର୍ମା
ନିରନ୍ତରେ ଛନ୍ତି ଖଟି
ଜଣେ ଜଣକେ ଭିନ୍ନ ଭିନ୍ନ ଯୋଗାଡ଼
ଯାହାକୁ ଯେମନ୍ତ ଖଟି ।।

ଲକ୍ଷେ ନୃପତି ମଣୋହି ବିଧିସାର
ସନ୍ତୋଷ କରନ୍ତି ଗାତ୍ର
ଅବଶେଷ ଖାଦ୍ୟ କୁଡ଼େ ପଡ଼ୁଥାଇ
ସକଳ ସୁବର୍ଣ୍ଣ ପାତ୍ର ।।

ଧନକୁ ଧନ ଭିଆଣ ଆନ ଆନ
କେ ତାହା ପାରିବ ଗଣି
ଭଣ୍ଡାର ଘରେ ଅଧିକାରୀ ହୋଇଛି
ଦୁର୍ଯ୍ୟୋଧନ ନୃପମଣି ।।

ଲକ୍ଷେ ରାଜାରେ ମଉଡ଼ ମଣି ପଣ
ଦେଇଛନ୍ତି ଆଦିକନ୍ଦ
କର ଲାଗିଲେ ପଥର ସୁନା ହୋଏ
ନାମ ତା ମାନ ଗୋବିନ୍ଦ ।।

ଏମନ୍ତ ସମୟେ ରାଜସୂୟ ଯାଗରେ
କେତେକେହିଁକ ଧନ ଗଲା
ଯୁଧିଷ୍ଠି ଦେବଙ୍କ କାର୍ଯ୍ୟ ବିଧାନରେ
ଭଣ୍ଡାର ଧନ ସରିଲା ।।

ଦୁର୍ଯ୍ୟୋଧନ ଗର୍ବ ଗଞ୍ଜିବା ନିମନ୍ତେ
ଆପଣେ ଶାରଙ୍ଗ ଧାରୀ
ସହସ୍ର କୋଟି ଭଣ୍ଡାର ଧନଯାକ
ମାୟାକରି ନେଲେ ହରି ।।

ବିଷ୍ଣୁ ମାୟାଧର ମହିମା ଅପାର
ଗରବ ଗଞ୍ଜନ ବାନା
ଭଣ୍ଡାର ଯାକ ସବୁ ଲୁଚ୍ଛା ହୋଇଲା
ଟିକେ ନ ଥୋଇଲେ ସୁନା ।।

ଯୁଧିଷ୍ଠି ଦେବଙ୍କ ଛାମୁରେ ଜଣାଇ
ଭଣ୍ଡାରେ ଧନ ତ ନାହିଁ
କୋଠ ଭଣ୍ଡାରୁ ଧନ ସବୁ ସରିଲା
କି ଆଜ୍ଞା ହେବ ଗୋସାଇଁ ।।

ଲକ୍ଷେ ନୃପତି ଦଣ୍ଡ ସୈନ୍ୟ ସହିତେ
କନକ ଯୋଗାଡ଼ ମାନ
ନିତି କି ନିତି ନବତନ ହୁଅଇ
କେତେହେଁ ଅଣିବ ଧନ ।।

ଜଣ ଜଣକେ ପ୍ରତିବଧି କରିଣ
କେତେ ଭିଆଇବା କାହିଁ
ତେଣୁକରି ପ୍ରଭୁ ଛାମୁରେ କହିଲି
ମୋହୋର ଅପ୍ରାଧ ନାହିଁ ।।

ଯୁଧିଷ୍ଠି ଦେବଙ୍କ ଛାମୁରେ ଶ୍ରୀକୃଷ୍ଣ
କହିଲେ ଏମନ୍ତ ବାଣୀ
କର୍ଣ୍ଣିକୁ ଡକାରି ଏକାନ୍ତେ କହିଲା
ଦୁର୍ଯ୍ୟୋଧନ ନୃପମଣି ।।

ଶୁଣ ଭୁହ କର୍ଣ୍ଣ ମୋହୋର ବଚନ
ମିଳିବୁ ଯୁଧିଷ୍ଠି ଆଗ
ଶତେ ରତି ସୁନା ଦାନ ଦେବୁ ବୋଲି
ଧର୍ମନନ୍ଦନଙ୍କୁ ମାଗ ।।

ଦାଇବେ ତ ଘର ଭୂଷା ଯେ ତାହାର
ଭଣ୍ଡାରେ ନାହିଁନା କଣ୍ଟ
ଏତେବେଳେ ତାଙ୍କୁ ସୁନା ଶତେ ରତ୍ତି
ମାଗିବୁ ସୂର୍ଯ୍ୟଙ୍କ ବହି ॥

ଲକ୍ଷେ ନୃପତିଙ୍କି ଯାଗକୁ ଆଣିଣ
ବଡ଼ିମା ବହିଛି ସେହୁ
କେମନ୍ତ ପ୍ରକାରେ କାହୁଁ ଭିଆଇବ
ଆମ୍ଭର ପ୍ରତିଜ୍ଞା ରହୁ ॥

ରାଜାମାନଙ୍କର ସ୍ତୁମୁରେ ତାହାର
ଉପୁଜିବ ଉପହାସ
ଯେମନ୍ତ ହୋଇ ଅପମାନ ପାଇବ
ତେମନ୍ତ କର ତୁ ଆସ ॥

ଦୁର୍ଯ୍ୟୋଧନ ବାଣୀ ଏସନକ ଶୁଣି
ଧାଇଁଲାରେ ଗଲ କର୍ଣ୍ଣ
ଯୁଧିଷ୍ଠି ଦେବଙ୍କୁ ବୋଇଲ ସ୍ୱବର୍ଣ୍ଣ
ଶତେ ରତ୍ତି ଦେବୁ ଦାନ ॥

ଦରିଦ୍ର ହୋଇ ଅଇଲ ମୁହିଁ ଧାଇଁ
ତୁ ଯେ ଅଟୁ ନୃପମଣି
ପିତୃକାର୍ଯ୍ୟ ଅର୍ଥେ ଯଜ୍ଞ କରୁଅଛୁ
ଲକ୍ଷେ ନୃପତିଙ୍କି ଆଣି ॥

ଏତେବେଳେ ମୋତେ ଦାନ ଦେଲେ ହାଦେ
ଦେଖିବେ ନୃପତି ଗଣେ
ନଦେଲେ ଯଜ୍ଞ ତୋ ପବଳ ନୋହିବ
ଧର୍ମଶାସ୍ତ୍ର ପରମାଣେ ॥

ଏତେବୋଲ କର୍ଣ୍ଣ ବନଯ୍ତୀ ହୋଇଣ
ତଳରେ ପାତିଲ ହସ୍ତ
ଦେଖିକରି ମନେ ମହାଚିନ୍ତା କଲେ
ଧର୍ମ ଦେବଙ୍କର ସୁତ ॥

ଅନ୍ତର୍ଗତେ ପୁଣି ଯୁଧିଷ୍ଠିର ଠାକୁରେ
ମନେ ଚନ୍ତାକଲେ ହରି
ଏ ଘୋର ସଂକଟୁ ପାରକର ମୋତେ
ଶଙ୍ଖ ଚକ୍ର ଗଦାଧାରି ॥

ଆହେ ଦୀନବନ୍ଧୁ ଭକତ ବତ୍ସଳ
ମହିମା ଶରଣ ମେରୁ
ପଞ୍ଚ ପାଣ୍ଡବଙ୍କ ସଖା ହୋଇ ତୁ ଯେ
ବେଳେବେଳେ ରକ୍ଷା କରୁ ॥

ଗରବ ଗଞ୍ଜନ ବାନା ଭଗବାନ
କ୍ଷଣେହେଁ ଦିଅହେ ଦେଖା
କୁନ୍ତୀ ବଣ୍ଡପୁଏ ଅନାଥ ହୋଇବେ
ତୁ ଯେବେ ନୋହିବୁ ସଖା ॥

ଯୁଧିଷ୍ଠିରଙ୍କ ବାଣୀ ଶ୍ରୀକୃଷ୍ଣ ଯେ ଶୁଣି
ଶିରରେ ଯୋଡ଼ିଲେ ହସ୍ତ
ବୋଇଲେ ଏ ଷ୍ଠୁର କଥାକୁ କମ୍ପାଇଁ
ଚିନ୍ତାକର ଧର୍ମସୁତ ॥

କର୍ଣ୍ଣେ ଯେ ଧନ ମାଗିଲ ଦିଅ ଦାନ
ତହିଁକ ପ୍ରସନ୍ନ ହୁଅ
ଶତେ ରତିକ ସହସ୍ର ରତ୍ନ ଦେବ
ତୁମ୍ଭେ ଏକା ଭଲେ ଥାଅ ॥

ଏତେ ବୋଲି ପ୍ରଭୁ ଯୁଧିଷ୍ଠିର ଦେବଙ୍କ
ପାଦେ ପ୍ରଣିପାତ ହୋଇ
ହନୁମନ୍ତକୁ ମନରେ ଚିନ୍ତାକଲେ
ଭକତ ବନ୍ଧୁ ଗୋସାଇଁ ॥

ତତକାଳେ ଆସି ପବନ ନନ୍ଦନ
ପ୍ରବେଶ ହୋଇଲ କତ
ଶ୍ରୀକୃଷ୍ଣ ବୋଇଲେ ବଳମ୍ବ ନକର
ବହନ ଚଳ ମାରୁତ ॥

ଆମ୍ଭେ ତୋତେ ଚିନ୍ତା କଲୁଁ ଅନ୍ତର୍ଗତେ
ମନେ ନପାଇବୁ ଦଢା
ପର୍ବତ ମାନ ମସ୍ତକରେ ବହିଆଣି
ଭଣ୍ଡାର ଘରେ ତୁ ପକା ।।
ଯୁଧିଷ୍ଠି ଦେବଙ୍କୁ ଦାନ ନିମନ୍ତେଣ
କଟାଳ କରନ୍ତି କର୍ଣ୍ଣ
ଶତେରଣ୍ଡ ସୁନା ଦେବାପାଇଁ ତାକୁ
ବୋଇଲେ ଧର୍ମ ନନ୍ଦନ ।।

ଏବେ ତୁ ପୁଣି ପର୍ବତ ବହିଆଣି
ଭଣ୍ଡାର ଘରେ ଯେ ଦେବୁ
ଦୁର୍ଯ୍ୟୋଧନ କର ଲାଗିଲା ମାନଙ୍କେ
ସୁବର୍ଣ୍ଣ ହୋଇବ ସବୁ ।।

ଶୁଣିଣ ହରଷ ପବନର ଶିଷ୍ୟ
ଶ୍ରୀକୃଷ୍ଣ ଚରଣେ ଲେଟି
ବୋଇଲା ଏକ ନିମିଷକେ ଆଣିବି
ଗିରିବର କେତେଗୋଟି ।।

ଶ୍ରୀକୃଷ୍ଣ ବୋଇଲେ ଅଧିକ କଥାରେ
ପ୍ରୟୋଜନ ନାହିଁ ବାବୁ
ଆମ୍ଭ କାର୍ଯ୍ୟରେ ଯେତେ ଧନ ଲାଗିବ
ତେତେକ ବହିଣ ଦେବୁ ।।

ପ୍ରଭୁଙ୍କର ବାଣୀ କପିବୀର ଶୁଣି
ଉଡ଼ିଲା ଗଗନ ମାର୍ଗେ
ବାମକରେ ସେହୁ ପର୍ବତ ଗୋଟିଏ
ଘେନିଣ ଅଇଲା ବେଗେ ।।

ସେ ଗିରିବର ଯୋଜନ ଦଶବାର
ଉତ୍ସର୍ଗ ତିନି ଯୋଜନ
ସ୍ୱର୍ଗ ପଥରେ ତାହା ଘେନି ଅଇଲା
ପବନ ସୁତ ବହନ ।।

ଯଜ୍ଞଶାଳକୁ ଖଣ୍ଡିଏ ଦୂର ଥାଉ
ରହିଲା ଅଞ୍ଜନା ସୂନୁ
ହୃଦପଦ୍ମେ ତାହାଁ ବିଚାର କରୁଛି
ଶ୍ରୀରାମ ସେବକ ହନୁ ।।
ମନେମନେ ଗୁଣି କପି କୁଳମଣି
ବିଚାର ପାଇଲା ବ୍ୟଥା
ଯଜ୍ଞ ନିକଟକୁ ପର୍ବତ ନେଲେ ଯେ
ଜଣା ହୋଇବ ଏ କଥା ।।
ତେଣୁକରି ମୁଁ ଯେ ଗୁପତ ପ୍ରକାରେ
ଏଠାରେ ଦଣ୍ଡେ ରହିବି
ପର୍ବତ ଭାଙ୍ଗି ଖଣ୍ଡ ଖଣ୍ଡ କରିଣ
ଭଣ୍ଡାରେ ନେଇ ଥୋଇବି ।।
ଏତେ ବୋଲି ବୀର ଶ୍ରୀ ଜଗନ୍ନାଥଙ୍କୁ
ଅନ୍ତର୍ଗତେ ଲୟ କଲା
ଯଜ୍ଞ ଶାଳକୁ ଖଣ୍ଡିଏ ଦୂର ଛଡା
ସାତଶ କୋଶେ ରହିଲା ।।
ହନୁମନ୍ତ ଯେ ଗୁପତରେ ରହିଲା
ଜାଣିଲେ କରୁଣା ସିନ୍ଧୁ
ତତକ୍ଷଣେ ପ୍ରଭୁ ବିଶ୍ୱମାୟା କଲେ
ଭକତଜନଙ୍କ ବନ୍ଧୁ ।।
ଶୂନ୍ୟମାର୍ଗେ ଉଡ଼ି ହନୁମନ୍ତ ବୀର
ଶୀଘ୍ରେଣ ତହୁଁ ଅଇଲା
ପର୍ବତ ଘେନି ଅଇଲି ବୋଲି କରି
ପ୍ରଭୁଙ୍କ ଆଗେ କହିଲା ।।
ଶ୍ରୀକୃଷ୍ଣ ବୋଇଲେ କେତେ ଦୂରେ ଅଛି
ଶୁଣ ତୁ ପବନ ବଳି
ହନୁ ବୋଇଲା ଏ ଠାବକୁ ନିକଟ
ସାତଶ କୋଶେ ରହିଛି ।।

ଯେବେ ଅଇଲେ ଯେ ସମସ୍ତେ ଜାଣିବେ
ବିସ୍ତାର ହୋଇବ କଥା
ତେଣୁକରି ମୁଁ ଯେ ଖଣ୍ଡେ ଦୂରେ ଥାଇ
ଗ୍ରାମୁରେ କହିଲି ଯଥା ।।

ଶ୍ରୀକୃଷ୍ଣ ବୋଇଲେ ଏଠାକୁ ହୋଇଲା
ସାତଶ କୋଶ ଯେ ବାଟ
ଆମ୍ଭେମାନେ ଯିବାକୁ ବିଳମ୍ବ ବହୁତ
ଲାଗିବ ପବନ ଗୃହ ।।

ହନୁ ବୋଇଲା ଯେ ଏକଥାକୁ ତୁମ୍ଭେ
ଚିନ୍ତା ନକର ଗୋସାଇଁ
ଏକା ନିମିଷକେ ଲକ୍ଷେ କୋଶ ଯିବି
ଏସ୍ଥାର କେତେକ ଭୂଇଁ ।।

ପ୍ରଭୁ ବୋଇଲେ ତୁ ବିଳମ୍ବ ନକରି
ଭଣ୍ଡାରେ ଆଣି ପକାଅ
ପର୍ବତଯାକ ଭାଙ୍ଗିକରି ନେଇଣ
ଭଣ୍ଡାରେ ନେଇଣ ଥୁଅ ।।

ଶ୍ରୀକୃଷ୍ଣ ବଚନ ଶୁଣି ହନୁମାନ
ସେଠାରୁ ଗଲା ତ୍ୱରିତେ
କୋପଭରେ ନେଇ ପର୍ବତ ଉପରେ
ପ୍ରହାର କଲାକ ନାତେ ।।

ହନୁମନ୍ତ ପାଦଘାତରେ କମ୍ପିଲା
ବାହୁଡ଼ିଲା ଅତି ବେଗେ
ଭଣ୍ଡାର ପିଢ଼ା କଣା କଲାଣ ହନୁ
ଫାଳଦେଲା ଶୂନ୍ୟମାର୍ଗେ ।।

ସହସ୍ର କୋଠା ଯେ ଭଣ୍ଡାର ଗୋଟିକ
ଉପରକୁ ତାଳେ ଉଚ
ବିଶ୍ୱକର୍ମା ଲାଗି ନିର୍ମାଣ କରିଛୁ
ପଚାଶର ନାହିଁ ମଞ୍ଚ ।।

ଅର୍ଘ୍ୟ ପ୍ରଭୃତି ଚାରି ବହୁତ ବିସ୍ତାର
ଭିନ୍ନଭିନ୍ନ ଦ୍ରବ୍ୟ ନାମ
ସ୍ୱର୍ଗମର୍ତ୍ତ୍ୟ ତିନି ଭୁବନ ଭିତରେ
ତହିଁକି କେବା ସମ ।।

ଯେତେ ଦ୍ରବ୍ୟ ସବୁ ରାଜସୂୟ ଯଜ୍ଞରେ
କାର୍ଯ୍ୟ ବେଳରେ ସରିଲା
ହନୁମନ୍ତର ପ୍ରସାଦରେ ଭଣ୍ଡାର
ଏକା କ୍ଷଣକେ ପୂରିଲା ।।

ଦୁର୍ଯ୍ୟୋଧନଙ୍କୁ ଅନାଇ ପଦ୍ମମୁଖ
ଆଜ୍ଞାଦେଲେ ବେଗେ ଯାଅ
ଯୁଧିଷ୍ଠିର ରାଜା କର୍ଣ୍ଣଙ୍କୁ ଦାନ ଦେବେ
ସୁବର୍ଣ୍ଣ ବେଗେ ତୁ ଦିଅ ।।

ପ୍ରଭୁଙ୍କର ବାଣୀ ଦୁର୍ଯ୍ୟୋଧନ ଶୁଣି
ବୋଇଲା ଅଛର ବସି
ଧନ ମାଗିଲେ ମୁଁ କାହୁଁ ଦେବ ଆଜ
ଭଣ୍ଡାରେ ନାହିଁଟି କିଛି ।।

ପୁଣି ତହୁଁ ଯାଇ କୁରୁ ନରସାଇଁ
ପଶିଲା ଭଣ୍ଡାର ଘର
ଦେଖିଲା ସହସ୍ର କୋଠାଧାଡ଼ି ହାଦେ
ପଡ଼ିଛି ଚକା ପଥର ।।

କିକି ଅଛି ବୋଲି ଦର୍ଶନ୍ତି ହୋଇଣ
ହସ୍ତରେ ଯାଇଁ ଧରିଲା
ବେନି କର ତାର ଲାଗିଲା ମାତ୍ରକେ
ସୁବର୍ଣ୍ଣ ସବୁ ହୋଇଲା ।।

ବିସ୍ତାର ଚକା ପଥର ମାନସବୁ
ହସ୍ତେ ଧରି ଦୁର୍ଯ୍ୟୋଧନ
ଭଣ୍ଡାର ଘରୁ ବାହାର କରି ଦେଲା
ଗାନ୍ଧାରୀ ଦେବୀ ନନ୍ଦନ ।।

ସଙ୍ଗି ଲଗାଇ ସୁବର୍ଣ୍ଣ ମାନ ସବୁ
ଯେନଗଲେ ଦେବହରି
ଯୁଧିଷ୍ଠି ଦେବଙ୍କ ଆଗେ କୁଢ଼ାଇଲେ
ପର୍ବତ ଆକାର କରି ।।

ଦେଖି ଧର୍ମସୂତ ହୋଇଲେ ଉଦ୍‌ଗତ
ଚିନ୍ତାକଲେ କୃଷ୍ଣନାମ
ତୁମ୍ଭେ ନ ରଖିଲେ କାହାବଳେ ପ୍ରଭୁ
କରିହବ ଏଡ଼େ କର୍ମ ।।

କର୍ଣ୍ଣ ମୁଖ ଚାହିଁ ଧର୍ମ ନରସାଇଁ
ଆଜ୍ଞାଦେଲେ ବେଗେ କହ
କେତେଧନ ତୋତେ ହାଦେ ତୋଳ ଦେବ
ଯେତେ ପାର ତେତେ ନଅ ।।

ଦରିଦ୍ର ଭାବେ ଅଇଲୁ ତୁମ୍ଭ ଯେବେ
ଶ୍ରୀକୃଷ୍ଣ ଫେଡ଼ିଲେ କଷ୍ଟ
ଦୁର୍ଯ୍ୟୋଧନ ଯେବେ ପୋଷି ନ ପାରିଲା
ଗୋବିନ୍ଦ ଚରଣେ ଖଣ୍ଟ ।।

ଆମ୍ଭେ ପଞ୍ଚଭାଇ ଦୁଃଖ ସୁଖ ପାଇ
ଆଶ୍ରେ କରିଅଛୁଁ ମେରୁ
ଶ୍ରୀ ଜଗନ୍ନାଥ ମୋ ଏକା ଭଲେଥାଉ
ଆନକୁ ଚିନ୍ତା ନକରୁ ।।

ଏବେ ତୁ ଯାଇ ବନ୍ଦନ ହୋଇ ଯେତୁଁ
କହ ଦୁର୍ଯ୍ୟୋଧନ ରାଣ
ପର୍ବତ ଆକାରେ ଧନ ପଡ଼ିଅଛି
ଯେତେପାରି ତେତେ ଆଣ ।।

ଶୁଣି ଦୁର୍ଯ୍ୟୋଧନ ହୋଇ କ୍ଷୁନ୍ନମନ
ବୋଇଲେ ହେ ବୀର କର୍ଣ୍ଣ
ଏ ସ୍ଥାନରେ ଆଉ ରହିଲେହେଁ ନରହି
ବସାକୁ କର ଗମନ ।।

ନରପତିମାନେ ଦେଖିଲେ ନୟନେ
କବୋଳ ବୋଲିବେ ଆଜ
ଯେଉଁ ବୁଦ୍ଧି କଲ କଷ୍ଟିତ ନୋହିଲା
ବୃଥାରେ ପାଇଲ ଲଜ ।।

ଏହି କଥା ଦୁର୍ଯ୍ୟୋଧନ ବସ୍ତ୍ରାଣ
ସ୍ତମ୍ଭୀଭୂତ ହୋଇ ରହି
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ
ଧନକୃଷ୍ଣ ଦାସ କହି ।।



# ପଞ୍ଚମ ଅଧ୍ୟାୟ

ଏଥୁ ଅନନ୍ତରେ ରାଜୂସି ଯଜ୍ଞରେ
ଯେତେ ରାଜା ଆସିଥିଲେ
ଜଣ ଜଣକେ ଅକ୍ଷତ ବଧି ମାନ
ଯୁଧିଷ୍ଠି ଠାକୁରେ ଦେଲେ ।।

ଜଗନ୍ନାଥ ମହାପ୍ରଭୁଙ୍କ ଚିତ୍ତରେ
ଅନୁଗ୍ରହ ଅଛି ଯାକୁ
ସ୍ୱର୍ଗମର୍ତ୍ତ୍ୟ ତିନି ଭୁବନ ଭିତରେ
ଅପୂର୍ବ କେବଣ ତାକୁ ।।

ଦେବ ମାନବ ମିଶାମିଶି ହୋଇଣ
ପୂରିଅଛି ନିରନ୍ତର
ସମୁଦ୍ର ପ୍ରାୟେକ ଶବଦ ହୋଉଛି
ଶୁଭୁଅଛି ମହାଘୋର ।।

ଆନନ୍ଦରେ ଆସି ଯଜ୍ଞଶାଳେ ବସି
କଲ୍ୟାଣ କରନ୍ତି ମୁନି
ଭାଟ କହୁଥିବାର ପଣ୍ଡିତ ଓଁକାର
ବ୍ରାହ୍ମଣଙ୍କ ବେଦଧ୍ୱନି ।।

ଶଙ୍ଖ କାହାଳୀ ନିଶାଣ ଆଦିକରି
ବାଜୁଅଛି ଘୋରତର
ପାଦ ଭରରେ ନବଖଣ୍ଡ ମେଦିନୀ
କମ୍ପୁଅଛି ଟଳମଳ ।।

ହନୁମନ୍ତକୁ ଶ୍ରୀମୁଖରେ ହକାରିଣ
ଆଜ୍ଞାଦେଲେ ପଦ୍ମମୁଖ
ଆମ୍ଭ କାର୍ଯ୍ୟ ଅର୍ଥେ ପବନ ନନ୍ଦନ
ପାଇଲୁ ଅନେକ ଦୁଃଖ ।।

ବହୁତ ଦୂର ଗମିଣ କପିବୀର
ଆଣିଲୁ ପର୍ବତ ଭାଙ୍ଗି
ଯୁଧିଷ୍ଠି ଦେବଙ୍କ ବଡ଼ିମା ରଖିଲୁ
ଦୁର୍ଯ୍ୟୋଧନ ଗର୍ବ ଗଞ୍ଜି ।।

ଏବେ ତୁ ବାବୁ ଆମ୍ଭର କାର୍ଯ୍ୟେ ଥିବୁ
ଆପଣା ସ୍ଥାନକୁ ଯାଅ
କପିବଳ ତୋର ସଙ୍ଗତେ ଘେନିଣ
କଦଳୀ ବନରେ ରହ ।।

ଶୁଣି ହନୁମନ୍ତ ପାଦପଦ୍ମେ ଚିତ୍ତ
ଦେଇ ପ୍ରଣିପାତ କରି
ବୋଇଲା ଗୁପତ କଥାଏ ତୁମ୍ଭଙ୍କୁ
ପୁଚ୍ଛିବି ସାରଙ୍ଗ ଧାରୀ ।।

ତୁମ୍ଭେ ଶ୍ରୀହରି ହୃଦୟେ ଦୟାକରି
ଅନୁଗ୍ରହ କର ମୋତେ
କେଉଁ ଭାବନାରେ କେବଣ ପ୍ରକାରେ
କେବେ ଭେଟ ପାନ୍ତି ତୋତେ ।।

ପ୍ରଭୁ ବୋଇଲେ ଯେ ଯାହା ବଡ଼ାଇରେ
ରହିଛନ୍ତି ସବୁ ପ୍ରାଣୀ
କେହିତ ମୋର ଭାବନା ନଯାଣନ୍ତି
କେମନ୍ତେ ଭେଟିବି ପୁଣି ।।

ଥୋକାଏ ଲୋକ ଆମ୍ଭର ଭେକ ନେଇ
ଗଳାରେ ପୂରାନ୍ତି ମାଳ
ନାମ ଧରିଣ ପରସ୍ତ୍ରୀ ହରନ୍ତି
ବଞ୍ଚି ନ ପାରନ୍ତି କାଳ ।।
ଶୋଳକ ଗୀତ ଯେ ଅତି ଅପ୍ରମିତ
ଶରଧା ଯୁକତେ ଶିକ୍ଷ
ଉର୍ଦ୍ଧ୍ୱମା କରିଣ ଲୋକ୍ଷଏ କୁହନ୍ତି
ଯୁବତୀମାନଙ୍କୁ ଦେକ୍ଷ ।।

ମନେ ବିଚ୍ଚରନ୍ତି ଏ ଦ୍ରବ୍ୟ ସ୍ତ୍ରିୟଙ୍କି
କେମନ୍ତେ ହରିବ ମୂର୍ଚ୍ଛି
ଶାଖା ଶବଦରୁ ଲୋତୃଏ ପଡ଼ନ୍ତି
ଉଚ୍ଚାଟ କରିବା ପାଇଁ ॥

ଭଙ୍ଗିମା ଯେ କରି ଲୋଚନରେ ଠାରି
ଚେରଛ ଭାବରେ ଗୃହେଁ
ମନକୁ ମନ ଯେମନ୍ତ ପ୍ରତେ ପାଇଁ
ସେହ୍ନମନ୍ତ ଫୁସୁଲାଏ ॥

ଯେବଣ ସ୍ତ୍ରିୟ ଜାତରେ ଦୋଗୃଷା
ଛନ୍ଦକ ପାବନ୍ତି ସୁଖ
ମନ ବୃଦ୍ଧିରେ ଏକକରି ଧେନନ୍ତି
ଦେଖୁଥାନ୍ତି ତାର ମୁଖ ॥

ହୃଦରେ ବସ୍ତୁର ନଧି ପର ଧରି
କ୍ରୀଡ଼ା କରୁଥାଇ ନତ୍ୟେ
କୋଟିଏ ନଧି ପ୍ରାପତ ହେଲପ୍ରାୟ
ମଣୁଥାଇ ତାହାଚତ୍ତେ ॥

ଯେଉଁ ବୈଷ୍ଣବ ପରସ୍ତ୍ରିୟ ଦେଖଣ
ମଦନେ ହୁଅନ୍ତେ ଭ୍ରୋଳ
ଇହ ପରଲୋକେ ମୁକତି ନପାନ୍ତି
ସେମାନେ ତାହାଙ୍କ କାଳ ॥

ଥୋକାଏକ ପ୍ରାଣୀ ନଟଘଟ ପୁଣି
ରସ କଉତୁକେ ମତ୍ତ
ତଗଡମାଳ ଭାବନା କରୁଥାନ୍ତି
ବୋଲନ୍ତି ଗୋପାଳ ପୁତ୍ର ॥

ମପୁରର ପକ୍ଷୀ ମଥାରେଣ ଖଞ୍ଜି
ଗଉଡ଼ ଛନ୍ଦେଣ କାଛି
ପର ଯୁବତୀଙ୍କ ମୋହିବା ନିମନ୍ତେ
ଭଙ୍ଗିମା ପ୍ରକାଶ ନାଚି ॥

ବାହାରେ ହର ଭିତରେ ପରସ୍ତି
ବଗୃର କରନ୍ତି ମନ
ଏମନ୍ତ ଭାବେ କୀର୍ତ୍ତନ କରେ ହାଦେ
ମୋହିବା ଜଗତ ଜନ ।।

ବେଣୁର ଶବଦ ଶଙ୍ଖର ଯେ ନାଦ
ଉଚ୍ଚାଟ କରଣ ଦ୍ୟନ୍ତି
ଘର ବାହାର ସ୍ତ୍ରୀ ପୁରୁଷ ସହିତେ
ଦେଖିବାକୁ ଧାଇଁଯାନ୍ତି ।।
ସେହି ମୂଢ଼ ଜାତ କୀର୍ତ୍ତନେ ଯେ ମାତ
ହୋଇଥାନ୍ତି ଦିବ୍ୟବେଶ
ଲୋଚନ ଦୁଇ ବନ୍ଦ କରି ପକାନ୍ତି
ଲଗାଇ ମୋହନ ପାଶ ।।
ସନ୍ତିଲେହେଁ ନାହିଁ ପଚ୍ଛନ୍ତେହେଁ ଭେଟ
ତାହା ମୁଖେ ଶୁଣି ହୋଇ
ଯାହାର ମନ ଯାହାକୁ ଖଟିଥାଇ
ତାହାଠାବକୁ ସେ ଯାଇ ।।

ଶୁଣହେ ମାରୁତ ଏସନକ ଗତ
ବୈଷ୍ଣବ ବୋଲନ୍ତି ସେହୁ ।।
କାମ କ୍ରୋଧ ବହି ନରକେ ପଡ଼ନ୍ତି
ମୋତେ ନଜାଣନ୍ତି ସେହୁ ।।
ଗୁଞ୍ଜର ମାଳ ଯେ ବାନ୍ଧଣ କପାଳ
ପ୍ରତଜ୍ଞ କରନ୍ତି ଦର୍ପେ
ବୋଲନ୍ତି ଆମ୍ଭେ ଯେ ପୂର୍ବେ ଜନ୍ମିଥିଲୁଁ
ଶ୍ରୀକୃଷ୍ଣ ସଙ୍ଗତେ ଗୋପେ ।।
ଏବେହେଁ ଗତ ବାସନା ଯୋଗୁ ଆମ୍ଭେ
ମର୍ତ୍ତ୍ୟେ ଜନମିଲୁ ଆସି
ଜଗଡ଼ମାଳରେ ବସାକଲୁଁ ଆମ୍ଭେ
କରୁଣା ଜଳଧି ରାଶି ।।

ଚେଣୁକର ଆମ୍ଭେ ସଂସାର ଭିତରେ
ଯୁକତେ ଅଛୁ ଯେ ବଡ଼
ଏମନ୍ତ ବୋଲି ପ୍ରତିଜ୍ଞା ମାନ ହାଦେ
କରନ୍ତି ପାମର ମୂଢ଼ ॥

ମୁଁ କାର ପଦ ମୁଁ ଦଣ୍ଡେ ନ ସହଇ
ଶୁଣ ତୁ ପବନ ବହ୍ନି
ଚେଣୁକର ହାଦେ ତାହାଙ୍କ ସଙ୍ଗତେ
ମୋହୋର କବଷେ ଅଛୁ ॥

ପରସ୍ତିରି ହର ନାନା ପାପ କର
ନିନ୍ଦା କରନ୍ତି ମୋ ନାମ
ସେ ପ୍ରାଣୀମାନଙ୍କୁ ଦଣ୍ଡିବା ନିମନ୍ତେ
ବସିଅଛୁ ହାଦେ ଯମ ॥

ପାପୀମାନଙ୍କୁ କୁମ୍ଭୀପାକ ଦେଇଛୁ
ପୁଣ୍ୟକୁ ସର୍ବ ସମ୍ପଦ
ମୁନିମାନଙ୍କୁ ଭକ୍ତିପଦ ଦେଇଛୁ
ବ୍ରହ୍ମାଙ୍କୁ ଦେଇଛୁ ବେଦ ॥

ଅଷ୍ଟାଦଶ ଜାତି ପାତକ ଭିତରେ
ଯାହାକୁ ସମ୍ପଦ ଯେହୁ
ଯେ ଯାହା କଥାରେ ସମସ୍ତେ ଅଛନ୍ତି
ମୋ ଭାବ ଜାଣିବ କେହୁ ॥

ଶୁଦ୍ର ବ୍ରାହ୍ମଣ ଯେ ଏହି ବେନି ଜଣ
ସକଳ ଜନ୍ମରେ ଶ୍ରେଷ୍ଠ
ଏମାନେ କେହି ମୋ ଭାବ ନଜାଣନ୍ତି
ଶୁଣ ତୁ ପବନ ଶ୍ରେଷ୍ଠ ॥

ଯେତେକ ବ୍ରାହ୍ମଣ କରୁଥାନ୍ତି ଠାଣ
ପାଠରେ ହୋଇ ଶକତା
ବେଦ ଶାହାସ୍ତ୍ର ଲେଖିଏ ପଢ଼ିକରି
ବୋଲନ୍ତି ଆମ୍ଭେ ବକତା ॥

ଆପଣାକୁ ବଡ ମନରେ କରଣ
ଗୀତ ପ୍ରତିଜ୍ଞା କରନ୍ତି
ମୋହୋର ଭାବକୁ ଠାବ ନକରଣ
ବଣାହୋଇ ମରୁଥାନ୍ତି ॥

ଜ୍ଞାନରେ ଭେଦ ଯେ ନଜାଣିଣ ବାଦ
ଆରମ୍ଭ କରନ୍ତି ଦ୍ୱନ୍ଦ
ଚଞ୍ଚୁ ଯେସନକ ଚଉଣ ସ୍ୱାଦ
ନଜାଣଇ ଭଲମନ୍ଦ ॥

ଶାସ୍ତ୍ର ପାଠକର ଭ୍ରମ ହେଉଥାନ୍ତି
ଭ୍ରମ ଉପୁଜଇ ଯହିଁ
ମୋର ମହିମା ଦେବଙ୍କୁ ଅଗୋଚର
ସେ ଅବା ଜାଣିବେ କାହିଁ ॥

ନାନାରଙ୍ଗ କର ମଥାକୁ ଝୁଙ୍ଗାର
ପ୍ରତିଜ୍ଞା କରନ୍ତି କେତେ
ସମସ୍ତେ ବଡ଼ ହେବାକୁ ବାଞ୍ଛୁଥାନ୍ତି
ନଜାଣନ୍ତି ସେ ଯେ ମୋତେ ॥

ଶୁଣ ତୁ ମାରୁତ ଏସନକ ଗତ
ଅଧିକ କହିବା ନକ
ବ୍ରାହ୍ମଣ ଯେବେ ମୋ ଭାବ ନଜାଣିଲ
ଋଷି ହିଁ ଜାଣିବ ଠିକ ॥

ତାହାର କଥା ବାରତା ଯେତେଯେତେ
ତୋ ଆଗେ କହିବା ଶୁଣ
କରେ ଖଣ୍ଡାଧର ପ୍ରତିଜ୍ଞା କରନ୍ତି
ଦେଖାବନ୍ତି ଶୂରପଣ ॥

ଯୁଦ୍ଧରଙ୍ଗେ ପଶି ବଡ଼ିମା ପ୍ରକାଶି
ବୋଲନ୍ତି ଏ ଦେହ ଯିବ
ଋଷି ବୋଲି ମୋତେ ଜଗତେ ବୋଲିବେ
ଯୁଗେ ଯୁଗେ କଥା ଥିବ ॥

ଏମନ୍ତ କହ୍ନ ସୁନ୍ଦ୍ରୃଶା ହୋଇ ସେହ୍ନ
ବହୁତ ପ୍ରଭଙ୍କା ଯେନ
ଆପଣା ବଡ଼ପଣକୁ ଧାଇଁଛନ୍ତି
ମୋତେ ନପାରନ୍ତି ଚହ୍ନି ॥

ଷଷ୍ଠୀ ଅବା ମୋର ଭାବ ନଜାଣିଲ
ଆଉ କେ ଜାଣିବ ମୋତେ
ଉଲଗ୍ନ ହୋଇ ଯେଉଁମାନେ ବୁଲନ୍ତି
ସେହୁ ନଜାଣନ୍ତି ଚତ୍ତ୍ୱେ ॥

ଯେ ଯେବେ ଧ୍ୟାନଜ୍ଞାନ ସବୁ ଜାଣନ୍ତା
ଦେଶଫେର କମ୍ପା ଯାନ୍ତା
ଆସନରେ ବସି ଲୋଭମୋହ ନାଶି
ଧୀରେ ଭାବକୁ ଧରନ୍ତା ॥

ଲୋଚନ ପଥରେ କିଛୁ ନଦେଖିବ
କର୍ଣ୍ଣେ ନ ଶୁଣିବ ବାଣୀ
ପାଷାଣ ପ୍ରାପ୍ତ ଦେହ ଯେବେ କରିବ
ତେବେ ସେ ମୋ ଭାବ ଜାଣି ॥

ଏକଥା ଯେ ଗୁଡ଼ ମାୟାରେ ଯେ ପଡ଼
ଧଇଲା ଆମ୍ଭର ଭେକ
ମୋହ ଭାବନା ସେ କିଛୁ ନଜାଣଇ
ପଶୁସଙ୍ଗେ ତାକୁ ଲେଖ ॥

ଇନ୍ଦ୍ରିକ ଦେଖାଇ ବାଇପ୍ରାପ୍ତ ହୋଇ
ବୁଲୁଥାଇ ଅନୁବ୍ରତେ
ଆପଣା ବଡ଼ ପଣକୁ ଧାଇଁଥାଇ
ସେ କାହୁଁ ଜାଣିବ ମୋତେ ॥

ଶୁଣ ଆହେ ହନୁ ପବନଙ୍କ ସୂନୁ
କହିଲ ନକର ବାଣୀ
ସମାଧି ଯୋଗେ ଯେଉଁମାନେ ବସନ୍ତି
ସେହୁତ ମୋତେ ନଜାଣି ॥

ଚକ୍ଷୁକୁ ତରଳି ବନ୍ଦକରି ତୋଳି
ଉପରକୁ ଦୃଷ୍ଟି ଦେଇ
ମଳଦ୍ୱାର ଚୁପି ଆରମ୍ଭେ ରହିଲେ
ଲୋକଙ୍କୁ ଭଣ୍ଡିବା ପାଇଁ ॥

ପୂର୍ବର କଥା ଯେତେଯେତେ ବ୍ୟବସ୍ଥା
ଭିତରେ ନୁହଇ ଦୃଢ଼
ମନକୁ ଯୋଗଣ ପଚାଶ ପ୍ରକୃତ
ଭ୍ରମୁଥାଇ ଗୃହଆଡ ॥

ଇନ୍ଦ୍ରିୟ ମାଳ ଆରମ୍ଭ ହାତେ କରି
ନାସାରେ ତୋଳନ୍ତି ବାଇ
ଆହାର ନିମନ୍ତେ ମୀନକୁ ଯେମନ୍ତେ
ବକ ଜଗି ବସିଥାଇ ॥

ମଉନ ଭାବରେ ବସିବା ଠାବରେ
ବସନ୍ତି ଆସନ ଯୋଗ
ଆପଣା ବଡ଼ ପଣକୁ ଧରିଥାନ୍ତି
ମୋତେ ନ ପାରନ୍ତି ଚହ୍ନି ॥

ସମାଧି କଥା ଯେତେ ଯେତେ ବ୍ୟବସ୍ଥା
ବିସ୍ତାରି କହିଲୁ ତୋତେ
କୋଟି ତୀର୍ଥରେ ସେ ସ୍ନାହାନ କରନ୍ତି
ଯେହ୍ନେ ନ ଜାଣନ୍ତି ମୋତେ ॥

ଉଦାସ ହୋଇ ଜ୍ଞାନୀପଣ ଦେଖାଇ
ବୁଲୁଥାଇ ରାଜ୍ୟଯାକ
ଦେହେଁ ଛାପା ଯୋଗ ଲୋକଙ୍କୁ ବୋଲନ୍ତି
ଏତେ ତୀର୍ଥ କଲି ଦେଖ ॥

ଗଙ୍ଗା ଗୋଦାବରୀ ବାରାଣସୀ ସାକ୍ଷୀ
ହେଙ୍ଗୁଳା ଦେଖିଲି ଯାଇ
ଶଙ୍ଖ ଚକ୍ର ଚିହ୍ନ ହୃଦରେ ବହିଲି
ଦ୍ୱାରିକା ପୁରକୁ ଯାଇ ॥

କୋଟି ତୀର୍ଥ ମୋର ପାଦେ ରହିଅଛି
ଏଥକୁ ନଲାଗେ ପ୍ରତେ
ବଡ଼ାଇ କରି ପରଆଗେ କହନ୍ତି
ସେ କାହୁଁ ଜାଣିବେ ମୋତେ ॥

ତୀର୍ଥର ବିଧାନ ଏ ପ୍ରକାରେ ଜାଣ
ଶୁଣ ତୁ ପବନ ବହ୍ନି
ନିରାଶ ହୋଇ ଯେଉଁମାନେ ଅଛନ୍ତି
ସେହି ନ ଜାଣନ୍ତି କିଛି ॥

ଅନ୍ନ ନପାଇ ପ୍ରତିଜ୍ଞମାନ କହି
ହୋଇଥାଇ ଭେକଧାରୀ
ଚାତକ ପକ୍ଷୀ ଯେସନେ ଆକାଶକୁ
ବସିଥାଇ ଆଶାକରି ॥

ନିରାଶ ହୋଇଣ ବସିଥାଇ ପୁଣ
ବାଟରୁ ଥାଇ ତା ଚିତ୍ତେ
ବ୍ରହ୍ମଜ୍ଞାନୀ ବୋଲି ସମସ୍ତେ ବୋଲିବେ
ଏ ଭେକ ଦେଖିଲେ ମୋତେ ॥

ଯୋଗୀ ବୋଲାଇ ଯେଉଁମାନେ ଅଛନ୍ତି
ସେହି ନ ଜାଣନ୍ତି ମୋତେ
ତୁମ୍ଭେ ନ ମାନିଲେ ଆଉ କେ ମାନିବ
ତୁମ୍ଭେ ଜାଣ କଥା ମୋତେ ॥

ଶ୍ରବଣେ ଯେ ଚାରି ମୁଦ୍ରା ଯେ ଭରି
ଭିକ ମାଗିବାକୁ ଯାଇ
ଶ୍ୱାନ ଯେସନେ ଖତ କୁଢ଼େ ବସଇ
ସବୁ ଦ୍ୱାରେ ବୁଲୁଥାଇ ॥

ହସ୍ତରେ ଝୁଲି ବିଭୂତି ହୋଇ ବୋଳ
ଯେମାନେ ବୋଲନ୍ତି ଯୋଗୀ
ବୋଲନ୍ତି ଆମ୍ଭେ ଯେ ଭିକ୍ଷା ମାଗିବାକୁ
ଅଇଲୁ ଏଠାକୁ ବେଗି ॥

ବହନ ହୋଇ ମଧବା-କଚ୍ଛି ଖାଇ
ଲୋଚନ କରନ୍ତି ରଙ୍ଗ
ଥିଲାର ଘରଜ ସୁଖବେ ଦଅଇ
ନଥିଲା ଘରକୁ ଠେଙ୍ଗ ।।

ଯା ଘରେ ନାହିଁ ମାଗିବା ନ ଯୋଗାଇ
କଟାଳ କରନ୍ତି ଯହୁଁ
ମାୟା ମୋହ ତାଙ୍କ ଜାଗ୍ରତ ହୁଅଇ
ସେ ମୋତେ ଚହ୍ନିବ କାହୁଁ ।।

ଯୋଗୀଙ୍କର କଥା ଏମନ୍ତ ବ୍ୟବସ୍ଥା
ଶୁଣ ଭୁ ପବନ ଗୃଷ୍ଟ
ଗୁମ୍ଫା ଭିତରେ ଯେ ସିଦ୍ଧ ବୋଲାଇଣ
ସାଧୁଥାନ୍ତି ଜ୍ଞାନ ବାଟ ।।

ସେ ମୋହୋର ଭାବ ନକଲଣ ଠାବ
ପର୍ବତ ଶିଖକୁ ଯାନ୍ତି
ଲୋକ ଭଣ୍ଡିବାର ଆରମ୍ଭ ଦେଖାଇ
ମଣ୍ଡନ ଭବେଣ ଥାନ୍ତି ।।

ଇନ୍ଦୁର ମାନେ ଯେ ମାଟିର ଭିତରେ
କରନ୍ତି ଯେହ୍ନେ ବବର
ସେମାନେତ ବ୍ରହ୍ମଜ୍ଞାନ ନଜାଣନ୍ତି
ଏହା କେମନ୍ତ ପ୍ରକାର ।।

ଯେ ମୋର ଭାବକୁ ନକରବ ଠାବ
ସେ କର୍ମା ତହିଁକ ଗଲା
ନଘ ବନ ଗିରି ସବୁତ ଏକତ୍ର
ଯେଉଁ ଠାରେ ଥିଲେ ଥିଲା ।।

ମହିମା ଯେ ତାର ଅନ୍ତହିଁ ଅପାର
ବଚନେ ନୁହଇ କହ୍ବ
ସ୍ଥାବର ଜଙ୍ଗମ ଏ କୀଟ ପତଙ୍ଗ
ସବୁରୂପ ଧାରେ ହୋଇ ।।

ସୂର୍ଯ୍ୟ ସଙ୍ଗତେ ସୂର୍ଯ୍ୟ ହୋଇ ପାରଇ
ଅଗ୍ନି ସଙ୍ଗେ ଥାଇଁ ମିଶି
ଜଳ ସଙ୍ଗତେ ଜଳ ହୋଇ ପାରଇ
ଚନ୍ଦ୍ର ସଙ୍ଗେ ହୋଇ ଶଶୀ ।।

ପବନ ତୁଲେ ପବନ ଯେ ହୁଅଇ
ଶୂନ୍ୟ ତୁଲେ ଶୂନ୍ୟ ଘୋଟି
ପାଷାଣ ତୁଲେ ପାଷାଣ ହୋଏ ପୁଣ
ମାଟି ସଙ୍ଗେ ହୋଏ ମାଟି ।।

ଇନ୍ଦ୍ର ତୁଲେ ଇନ୍ଦ୍ର ହୋଇମୁଁ ପାରଇଁ
ଯମତୁଲେ ହୋଇ ଯମ
ଈଶ୍ୱର ତୁଲେ ଈଶ୍ୱର ମୁଁ ହୁଅଇ
ବ୍ରହ୍ମ ତୁଲେ ହୋଇ ବ୍ରହ୍ମ ।।

ସାଧୁ ସଙ୍ଗତେ ସାଧୁ ହୋଇ ପାରଇ
ସୁଖୀ ସଙ୍ଗେ ହୋଇ ସୁଖୀ
କୁବେର ତୁଲେ କୁବେର ମୁଁ ହୁଅଇ
ନିର୍ଦ୍ଧନ ସଙ୍ଗତେ ଦୁଃଖୀ ।।

ରାଜା ସଙ୍ଗତେ ରାଜା ହୋଇ ପାରଇ
ପାତ୍ରତୁଲେ ପାତ୍ରପୁଣ
ଲକ୍ଷ ସଙ୍ଗତେ ଲକ୍ଷ ହୋଇ ପାରଇ
ମନ୍ତ୍ରୀ ସଙ୍ଗେ ମନ୍ତ୍ରୀଗଣ ।।

ନଦୀ ସଙ୍ଗତେ ନଦୀ ହୋଇ ପାରଇ
ବନ୍ଧୁ ସଙ୍ଗେ ହୋଇ ବନ୍ଧୁ
ମେରୁ ସଙ୍ଗତେ ମେରୁ ହୋଇ ପାରଇ
ସମୁଦ୍ର ସଙ୍ଗତେ ସିନ୍ଧୁ ।।

ଅଜାତ ତୁଲେ ଅଜାତ ହୋଇ ପାରେ
ଜାତ ତୁଲେ ହୋଇ ଜାତ
ରାଜା ସଙ୍ଗତେ ରାଜା ହୋଇ ପାରଇ
ସିଂହ ସଙ୍ଗେ ମୃଗ ପତ ।।

ସ୍ୱର୍ଗ ଭୁଲେ ସ୍ୱର୍ଗ ହୋଇ ମୁଁ ପାରଇ
ମର୍ତ୍ତ୍ୟ ଭୁଲେ ହୋଇ ମର୍ତ୍ତ୍ୟ
ପାତାଳ ଭୁଲେ ପାତାଳ ହୋଇପାରେ
ତିନ ଭୁବନକୁ ପର୍ତ୍ତ୍ୟ ॥

ତାହା ଭାବନା ମୁଁ ଏକାହିଁ ଜାଣଇ
ମୋହଭାବ ଜାଣେ ସେହି
ନୀରକ୍ଷୀର ଯେସ୍ନେ ଅଭେଦ ପୀରତ
ବାଛ ନ ପାରନ୍ତି କେହି ॥

କାଠରୁ ବହ୍ନି ଯେସନେକ ପ୍ରକାରେ
ପୁଷ୍ପରୁ ବାସନା ବାସି
ଜୀବରେ ଜୀବ ପରମରେ ପରମ
ଯେଉଁ ଭାବେ ମିଶାମିଶି ॥

ସଂସାର ଭିତରେ ଯେତେକ ପଦାର୍ଥ
ସବୁ ଠାବକୁ ସେ ଭୁଲ
ତାହାଙ୍କୁ ସମ ଦେବାକୁ ଭୁଲ କାହିଁ
ତିନପୁରେ ସମତୁଲ ।

ମନରେ ଯାହା ସେ କଳ୍ପନା କରଇ
ସେହିକ୍ଷଣି ହୁଏ ପ୍ରାପତ
ଇନ୍ଦୁବନ୍ଧ ଯେବେ ଦୂରକୁ ସେ ଯାନ୍ତି
ବୋଲନ୍ତି ଆମ୍ଭେ ପଣ୍ଡିତ ॥

ସ୍ଥାବର ଜଙ୍ଗମ ଏ କୀଟ ପତଙ୍ଗ
ମୋ ଭକ୍ତକୁ ସାନକର
ସାତ ବରଷ ପୁଅ ମୋତେ ଭାବନ୍ତି
ଦେଲି ତାକୁ ସ୍ୱର୍ଗପୁର ॥

ମୁଁ ହାଦେ ଯାହାକୁ ପ୍ରସନ୍ନ ହୋଇଲି
ସେହି ସେ ଜାଣଇ ମୋତେ
ଧ୍ରୁବ ବଚନ ବୋଲି ଏହା ଜାଣିବ
ଶୁଣ ତୁ ପବନ ସୁତେ ॥

କାଠର ଗ୍ରାବକୁ ଷଣେନ୍ତେଁ ପ୍ରସନ୍ନ
ନାମ ମୋ ଶରଣ ମେରୁ
କଷଟି ସୁନା ପ୍ରାପ୍ତ କରି କଷଇ
ମନ୍ତ୍ରମା କେ ଅନ୍ତ କରୁ ॥

ପ୍ରଭୁ ପରିମଳ କେମନ୍ତେ ଜାଣିବା
ଭୃତ୍ୟକୁ ଯେବେ କଷିଲା
ଭୃତ୍ୟ ପରିମଳ କେମନ୍ତେ ଜାଣିବା
କଷଣୁ ଯେ ଉତୁରିଲା ॥

ରାଜା ପରିମଳ କେମନ୍ତେ ଜାଣିବା
ବଗୁଣ କରିବା ଧର୍ମ
ମନ୍ତ୍ରୀ ପରିମଳ କେମନ୍ତେ ଜାଣିବା
କ୍ଷତ୍ରୀ ସଙ୍ଗେ ସରିସମ ।

କୃଷୀ ପରିମଳ କେମନ୍ତେ ଜାଣିବା
ଚହ୍ଲି ପାରେ ଯେବେ ବୃଷ୍ଟି
ଦାନୀ ପରିମଳ କେମନ୍ତେ ଜାଣିବା
ଢଅଇ ଯେମନ୍ତ କ୍ଷତ୍ରୀ ॥

କ୍ଷତ୍ରୀ ପରିମଳ କେମନ୍ତେ ଜାଣିବା
ଯୁଦ୍ଧେ ଆଗଭର ହୋଇ
ପତ୍ନୀ ପରିମଳ କେମନ୍ତେ ଜାଣିବା
ଶିଶିରରେ ହତ ହୋଇ ॥

ବନ୍ଧୁ ପରିମଳ କେମନ୍ତେ ଜାଣିବା
ସବୁଦିନେ ପ୍ରୀତିପାଇ
ଅଶ୍ୱ ପରିମଳ କେମନ୍ତେ ଜାଣିବା
ନ ଭାଜିବ କାଣ୍ଡ ଦୁଇ ॥

ମିତ୍ର ପରିମଳ କେମନ୍ତେ ଜାଣିବା
ହୃଦୟରେ ଥିବ ଦୟା
ସନ୍ଥ ପରିମଳ କେମନ୍ତେ ଜାଣିବା
ଜନ୍ତୁରେ କରିବ ଦୟା ॥

ମାତା ପରମଳ କେମନ୍ତେ ଜାଣିବା
ପୁତ୍ରକୁ ନଥିବ ମାନ
ଧର୍ମ ପରମଳ କେମନ୍ତେ ଜାଣିବା
ଦରିଦ୍ର ଲୋକକୁ ଦାନ ॥

ଗ୍ରାମ ପରମଳ କେମନ୍ତେ ଜାଣିବା
ଯାହା ଲୋଡ଼ ତାହା ପାଇ
ଘର ପରମଳ କେମନ୍ତେ ଜାଣିବା
ଥିଲା ନଥିଲାହିଁ ଯାଇ ॥

ଶାଠ ପରମଳ କେମନ୍ତେ ଜାଣିବା
ଦେଶକୁ ନକରେ ଛାଠ
ସିଦ୍ଧ ପରମଳ କେମନ୍ତେ ଜାଣିବା
କୁହାକୁହି ନାହିଁ ଭେଟ ॥

ବନ ପରମଳ କେମନ୍ତେ ଜାଣିବା
ନଥାଇ ସହିଁରେ ବାଇ
ବଳ ପରମଳ କେମନ୍ତେ ଜାଣିବା
ନଥାଇ ମରୁଡ଼ ଧୋଇ ॥

ସ୍ଥାନ ପରମଳ କେମନ୍ତେ ଜାଣିବା
ଯେଣେ ଯିବ ତେଣେ ଲଭ
ଶତ୍ରୁ ପରମଳ କେମନ୍ତେ ଜାଣିବା
ଥାଇ ଯେବେ ହଟିଯିବ ॥

ମନ ପରମଳ କେମନ୍ତେ ଜାଣିବା
ସୁଜନ ଗୋଷ୍ଠିକି ଯାଇ
ଶିଷ୍ୟ ପରମଳ କେମନ୍ତେ ଜାଣିବା
ଗୁରୁପାଦେ ମନ ଦେଇ ॥

ଯୁବା ପରମଳ କେମନ୍ତେ ଜାଣିବା
ଯେ ବୁଢ଼ାଇ କାମେ ବାଇ
ସ୍ତ୍ରିରି ପରମଳ କେମନ୍ତେ ଜାଣିବା
ଗେରସ୍ତ ସେବାରେ ଥାଇ ॥

କଳ ପରମଳ କେମନ୍ତେ ଜାଣିବା
ଅପ୍ରାଧ ଯହିଁ ନଥାଇ
ରୋଗ ପରମଳ କେମନ୍ତେ ଜାଣିବା
କ୍ଷୁଧା ରକ୍ଷ ଯେବେ ଖାଇ ॥
ବାଘ ପରମଳ କେମନ୍ତେ ଜାଣିବା
ଡରକ ନଥିବ ପେଟ
ଧ୍ବଜ ପରମଳ କେମନ୍ତେ ଜାଣିବା
ଭୁଲ ପବନର ପୂଠ ॥
ପାଦ ପରମଳ କେମନ୍ତେ ଜାଣିବା
ଯହିଁ ଇଚ୍ଛା ତହିଁ ଯାଇ
ଗାଈ ପରମଳ କେମନ୍ତେ ଜାଣିବା
ନଛାଡ ଯେ ଦୁହିଁଯାଇ ॥
ସନ୍ଥ ପରମଳ କେମନ୍ତେ ଜାଣିବା
ଦୟାରେ ହୋଇବ ଟାଣ
ପ୍ରଜା ପରମଳ କେମନ୍ତେ ଜାଣିବା
ନ ଲଙ୍ଘିବ ରାଜାରାଣ ॥
ସନ୍ଥ ପରମଳ କେମନ୍ତେ ଜାଣିବା
ଦେବତା ସ୍ଥାନକୁ ଯାଇ
ମୂର୍ଖ ପରମଳ କେମନ୍ତେ ଜାଣିବା
କୃଷ୍ଣ ନାମ ଯେବେ ଗାଇ ॥
ଚକ୍ଷୁ ପରମଳ କେମନ୍ତେ ଜାଣିବା
ଚକ୍ରଧର ହୁଏ ଦୃଶ୍ୟ
କର୍ଣ୍ଣ ପରମଳ କେମନ୍ତ ଜାଣିବା
ଶୁଣୁଥାଇ ହରି ରସ ॥
କଥା ପରମଳ କେମନ୍ତ ଜାଣିବା
ହରିହରି ହେଉଥାଏ
ମଥା ପରମଳ କେମନ୍ତେ ଜାଣିବା
ନତ ଦଣ୍ଡବତ ହୁଏ ॥

ହୃଦ ପରିମଳ କେମନ୍ତେ ଜାଣିବା
ଭାବୁଥିବା ଏକା ହରି
ବ୍ରତ ପରିମଳ କେମନ୍ତେ ଜାଣିବା
ଏକାଦଶୀ ଯେବେ କରି ॥

ବୈଦ୍ୟ ପରିମଳ କେମନ୍ତେ ଜାଣିବା
ବ୍ୟାଧି ଛିଣ୍ଡି ଯେ ପାରିବ
କରଣ ନିର୍ମଳ କେମନ୍ତେ ଜାଣିବା
ହସ୍ତାହୁଏ ଯେବେ ଦମ୍ଭ ॥

ସାଧୁ ପରିମଳ କେମନ୍ତେ ଜାଣିବା
ସଭାରେ କହିବ ସତ
ଯୋଗୀ ପରିମଳ କେମନ୍ତେ ଜାଣିବା
ପାପରୁ ଥିବ ବିରତ ॥

ଗୁଣ ପରିମଳ କେମନ୍ତେ ଜାଣିବା
ବହୁତ ଦୂରକୁ ଯାଇ
ଦେଶ ପରିମଳ କେମନ୍ତେ ଜାଣିବା
ବାଦ ବିସମ୍ବାଦ ନାହିଁ ॥

ଭକ୍ତ ପରିମଳ କେମନ୍ତେ ଜାଣିବା
ସବୁଠାରେ ଥାଇ ଝଳ
ଭଣେ କୃଷ୍ଣ ଦାସ ଏ ଭବ ସାଗରୁ
ତାରିକର ବନମାଳ ॥



# ଷଷ୍ଠ ଅଧ୍ୟାୟ

ହନୁମନ୍ତ ମୁଖ ଚାହିଁ ପଦ୍ମମୁଖ
ବୋଇଲେ କରୁଣା ବନ୍ଧୁ
ଅନେକ ପ୍ରକାରେ ମୋହର ମହିମା
କେ ଅନ୍ତ କରିବ କାହିଁ ॥

ମୋହର ଭାବ ଯେ ମୁହିଁ ସେ ଜାଣଇ
ଆବର ଯାହାର ଦୟା
ଗଙ୍ଗା ବାଲି ଗଣି କେ ଅନ୍ତ କରିବ
ସେହିମତି ମୋର ମାୟା ।

ଶୁଣି ହନୁମନ୍ତ ପାଦପଦ୍ମେ ଚିତ୍ତ
ଦେଇ ପ୍ରଣିପାତ କଲା
ଶ୍ରୀ ଜଗନ୍ନାଥଙ୍କୁ ମେଲାଣି ମାଗିଣ
ଆପଣା ସ୍ଥାନକୁ ଗଲା ॥

ଏଥୁ ଅନନ୍ତରେ ଯୁଧିଷ୍ଠି ଦେବଙ୍କ
ଯଜ୍ଞହିଁ ହୋଇଲା ଶେଷ
ଆଜ୍ଞା ପ୍ରମାଣେ ନୃପତିମାନେ ଗଲେ
ସେ ଯାହାର ନିଜ ଦେଶ ॥

ଦୁର୍ଯ୍ୟୋଧନ ରାଜା ଅପମାନ ପାଇ
ହସ୍ତିନା ପୁରକୁ ଗଲା
ସମଦନ୍ତ୍ର ହେନ ଜରାସନ୍ଧ ସୁତ
ମଘଦେଶେ ବିଜେକଲା ॥

ନିଜ ଦେଶକୁ ଯେ ବିରାଟ ନୃପତି
ଶୁଭ ଯୋଗେ ଗଲେ ଚଳି
ନିଜ ସଦନେ ଯାଇଣ ପରବେଶ
ଦମଘୋଷ ମହାବଳୀ ॥

ବାଣ ବକ୍ର ନାଭ ଗୋସିଂହ ସହିତେ
ଯେ ଯାହା ପୁରକୁ ଯାଇ
କାଶୀ ଦେଶରେ କାଶୀନାମେ ନୃପତି
ବହନ ପ୍ରବେଶ ହୋଇ ॥

ବୃହସ୍ପତି ହେନ ଇନ୍ଦ୍ର ଦେବତା ଯେ
ସ୍ୱର୍ଗରେ ବିଜୟ କଲେ
ଯମ ବରୁଣ ପବନ ବୈଶ୍ୱାନର
ଯେ ଯାହା ପୁରକୁ ଗଲେ ॥

ମରାଳ ପିଠିରେ ଯଶୋବନ୍ତ ପୁରେ
ବ୍ରହ୍ମା ବିଜେକଲେ ଯାଇ
ସପତ ସିନ୍ଧୁରେ ପ୍ରବେଶ ହୋଇଲେ
ରତ୍ନାକର ନୃପସାଇଁ ॥
ତେତିଶ କୋଟି ଦେବତାମାନେ ତହୁଁ
ଯେ ଯାହା ପୁରକୁ ଗଲେ
ବୃଷଭ ପିଠିରେ ସଦାନନ୍ଦ ପ୍ରଭୁ
କପିଳାସେ ବିଜେକଲେ ॥

ଅଗସ୍ତି ଅଙ୍ଗିର ଭୃଗୁ ପରାଶର
ପଉଲସ୍ତି ବ୍ରହ୍ମବେତ୍ତା
ନାରଦ ମୁନି କଶ୍ୟପ ମହାଯତି
ବ୍ରହ୍ମାଣ୍ଡେ କେ ଅପ୍ରଚେତା ॥

ସମସ୍ତ ମୁନି ଯେ ଯାହା ମାନ୍ୟ ହେନ
ପ୍ରବେଶ ହୋଇଲେ ଆସି
କୁବେର ମୁଖକୁ ଅନାଇ ବୋଇଲେ
କରୁଣା ଜଳଧି ରାଶି ॥

ତୁହେ ଧନପତି ହୋଇ ତୋଷମତି
ଆମ୍ଭର ବଚନ ଶୁଣ
ଯେତେକ ପଦାର୍ଥ ଯୁଧିଷ୍ଠି ଦେବଙ୍କୁ
ଯଜ୍ଞରେ ଦେଇଛ ରୃଣ ॥

ସେ ଧନ ଆମ୍ଭର କୋଠ ଭଣ୍ଡାରରୁ
ସମସ୍ତ ପାଇଲୁଁ ଆମ୍ଭେ
ପଣ୍ଡୁ ନୃପତିଙ୍କ ଯଜ୍ଞରେ ଲାଗିଲା
କିଛି ନ ବଗୃର ତୁମ୍ଭେ ॥
ଯୁଧିଷ୍ଠି ଆମ୍ଭର ମାଡ୍ରୀ କୁମର
ପରାପର ନାହିଁ କିଛି
ଆମ୍ଭେ ତ ତାହାଙ୍କୁ ଦେବା ଯେବଣକୁ
ବର୍ତ୍ତମାନ ନୋହୁ କିଛି ॥
କେବଳ ପିତାଙ୍କ କଷ୍ଟ ଫେଡ଼ିବାକୁ
ଯଜ୍ଞକୁ ଆରମ୍ଭ କଲେ
ଲକ୍ଷେ ନୃପତିଙ୍କି ବରଣ କରଣ
ରତ୍ନ ଅଳଙ୍କାର ଦେଲେ ॥
ସେ ଧନ ତାହାଙ୍କୁ ଦେବାକୁ ଆମ୍ଭେ ତ
ବର୍ତ୍ତମାନ ନୋହୁଁ ବାବୁ
ଆମ୍ଭର ଯେତେକ ଦ୍ରବ୍ୟ ଅଛି ଜାଣ
ତାହାଙ୍କର ସିନା ସବୁ ॥
ଯେତେକ ଦ୍ରବ୍ୟ ଦେଇଥିଲୁ ସେ ସବ
ଭଣ୍ଡାର ଠାବକୁ ଯାଅ
ଗୁଣକେ ସହସ୍ରେ ଗୁଣେ ପୂରିଅଛି
ଦେଖି ତୁ ପରତେ ପାଅ ॥
ଶୁଣି କୁବେର ଶିରରେ ଦେଇ କର
ଯୋଡ଼ଣ ପ୍ରଣାମ କଲା
ଶ୍ରୀ ଜଗନାଥଙ୍କୁ ମେଲାଣି ମାଗିଣ
ଆପଣା ପୁରକୁ ଗଲା ॥
ଯୁଧିଷ୍ଠି ଦେବଙ୍କୁ ଦଣ୍ଡବତ କରି
ଆପଣେ ଭକତ ବନ୍ଧୁ
ଦ୍ୱାରକା ଭୁବନେ ପ୍ରବେଶ ହୋଇଲେ
କୃପା କରି କୃପାସିନ୍ଧୁ ॥

ଏଥୁ ଅନନ୍ତରେ ଅମର ସ୍ୱର୍ଗରେ
ନିରଞ୍ଜନ ଧର୍ମରାୟେ
ପଞ୍ଚ ପାଣ୍ଡବଙ୍କୁ ଦେଖିବା ନିମନ୍ତେ
ମର୍ତ୍ତ୍ୟ ଭୁବନେ ବିଜୟେ ॥

ମନେମନେ ଗୁଣି ଅନ୍ତର୍ଗତେ ପୁଣି
ବିଚାର କଲେ ଏମନ୍ତ
ପୁତ୍ର ମୋର ଯେବେ ଯଜ୍ଞ କରିଅଛି
ବଡ଼ବା ତାହାର ସତ ॥

ମର୍ତ୍ତ୍ୟର ଲୋକଙ୍କୁ ବଡ଼ବା ବୋଲି ଯେ
ମନରେ ପାଇଲେ ଶଙ୍କା
ରକ୍ତ ପଦ୍ମ ପ୍ରାୟ ଲୋଚନ ଦିଶିଲା
ବେନିପାଦ କଲେ ବଙ୍କା ॥

ନିଜ ରୂପଯେ ଲୁଚାଇ ନିରଞ୍ଜନ
ଦିଶିଲେ ବିରୂପ ଭାବ
ଧର୍ମ ଯୁଧିଷ୍ଠି କେଉଁଠାରେ ଅଛନ୍ତି
ପଚାରନ୍ତି ଠାବଠାବ ॥

ଜଣ ଜଣକେ ନିରଞ୍ଜନ ଗୋସାଇଁ
ପଚାରି ଯାଆନ୍ତେ ବାଟେ
ଲୋକେ ବୋଇଲେ ଯାଗଶାଳେ ଅଛନ୍ତି
ଭେଟିବ ଏହି ନିକଟେ ॥

ଏମନ୍ତେ ତହିଁ ଥୋକାଏ ଦୂର ଯାଇ
ଆଜ୍ଞା ଦେଲେ ଦ୍ୱାରସ୍ଥିତେ
ଯୁଧିଷ୍ଠି ଦେବଙ୍କ ଛାମୁରେ ଜଣାଇ
ଅନ୍ନଦାନ ଦିଅ ମୋତେ ॥

ତାହାଶୁଣି ଭୀମ ହୃଦଶୂନ୍ୟ ତମ
ବହିଲା ପଣ୍ଡୁ ତନୁଜ
ମନେ ବିଚାରିଲା ଚଣ୍ଡାଳ ମୁଖକୁ
ପ୍ରଭାତେ ଚାହିଁଲି ଆଜ ॥

ଏମନ୍ତେ ତହିଁ ସେ କୋପଭର ହୋଇ
ବଦନ ସେ ଚଳଗଲା
ପାପିଷ୍ଠ ଚଣ୍ଡାଳ ଅନ୍ନ ମାଗୁଅଛୁ
ଯୁଧିଷ୍ଠି ଆଗେ କହିଲା ।।

ଭୀମସେନ ବାଣୀ ଏସନକ ଶୁଣି
ବୋଇଲେ ପଣ୍ଡୁ ନନ୍ଦନ
ଯଜ୍ଞଶାଳ ଅନ୍ନ ସରିଲାଣି ଏବେ
ଆଉ କାହିଁ ଅନ୍ନଦାନ ।।

ତା ଶୁଣି ମାରୁତ ହୋଇ ଦୁଷ୍ଟ ମତ
ବାହୁଡ଼ି ଅଇଲା ବେଗେ
ତତକ୍ଷଣେ ଯାଇ ପ୍ରବେଶ ହୋଇଲା
ଧର୍ମ ନିରଞ୍ଜନ ଆଗେ ।।

ଗୃହରେ ଜଣାଇ ବନସ୍ତି ହୋଇଣ
କହିଲା ପବନ ସୁତ
ଯାଗ ସରିଲେ ଏତେବେଳେ ଆଉ
ଲୋଡ଼ିଲେ କାହିଁ ଅଛି ଭାତ ।।

ତାହା ଶୁଣି ଧର୍ମ ବୋଇଲେ ହେ ଭୀମ
କହୁଛି ସୁଖ ନୋହିଲା
ଯୁଧିଷ୍ଠି ରାଜନ ନଦେଇ ଯେ ଅନ୍ନ
କପଟା ମୋତାକୁ ନଇଲା ।।

ସେ ଯେବେ ଆସି ଆପଣେ ଏଥି ବସି
ପରଶିବ ଯଜ୍ଞଅନ୍ନ
ତେବେ ଆମ୍ଭ କ୍ଷୁଧା ନିବୃତ୍ତ ହୋଇବ
ଏକଥା ଧ୍ରୁବ ବଚନ ।।

ନୋହିଲେ ମୁହିଁ ନିରାଶ ଯେବେ ହୋଇ
ବାହୁଡ଼ି ଯିବଟି ଆଜ
ଯେତେ ଧର୍ମ କଲା ବଅର୍ଥ ହୋଇଲା
ଲୋକାନ୍ତେ ପାଇବ ଲଜ ।।

ତାଶୁଣି ମାରୁତ ହୋଇ ଦୁଃଖ ମତି
ସେଠାରୁ ଚଳଲେ ଖରେ
ବାହୁଡ଼ ଯାଇଣ ବାରତା କହିଲେ
ଯୁଧିଷ୍ଠି ଦେବ ଗ୍ରାମୁରେ ।।
କର୍ମେ ଚଣ୍ଡାଳ ଯୁକତେ ହୋଇ ଭେଳ
ଦେଖିବାକୁ ଅତି ହୀନ
ବୋଇଲା ଯୁଧିଷ୍ଠି ଆଗରେ କହ ସେ
ଦେଉ ମୋତେ ଅନ୍ନଦାନ ।।
ତାଙ୍କ ମୁଖ ଦେଖି ହୋଇବ ମୁଁ ମୁକ୍ତି
କାହିଁପାଇଁ ଏଥିଥିବ
କଥା ଦୁଇଗୁଣ ସଂକ୍ଷେପେ କହିଣ
ମୋହ ସୁଖେ ମୁହିଁ ଯିବ ।।
ନୋହିଲେ ତାହାର ଯଜ୍ଞର ବେଭାର
ବଅର୍ଥ ହୋଇବ ଏଣେ
ତନପୁରେ ଅପକୀର୍ତ୍ତି ଅରଜିବ
ଧର୍ମ ଶାସ୍ତ୍ର ପରମାଣେ ।।
ଭୀମସେନ ବାଣୀ ଏସନକ ଶୁଣି
ବୋଇଲେ ଦ୍ରୌପଦୀ ପାଇଁ
କାହିଁପାଇଁ ଏଡ଼େ କଟାଳ କରୁଛୁ
ଦେଖିବା ତାହାକୁ ଯାଇଁ ।।
ବଚନ ଗୁଲ କରୁହିଁ ନାହିଁ ଭଲ
ନୋହିଲା ଆମ୍ଭଙ୍କୁ ବାପ
ଚଣ୍ଡାଳ ବଚନ ଶୁଣି ମୋ ମନକୁ
ଲାଗୁଅଛି ବଡ ତାପ ।।
ଏତେବୋଲି ପ୍ରଭୁ ଆଶ୍ଚର୍ଯ୍ୟ ତେତକଣ
ଉଠିଲେ ଧର୍ମଙ୍କ ଗୃହ
ଯଜ୍ଞଶାଳ ଦ୍ୱାରେ ପ୍ରବେଶ ହୋଇଲେ
ଧରିଲେ ଅନ୍ନ ପାତ୍ର ।।

ଯୁଧିଷ୍ଠି ଦେବଙ୍କ ଅନ୍ନପାଟ ଦେଖି
ଆଜ୍ଞାଦେଲେ ନିରଞ୍ଜନ
ଏଡ଼େ ବାତୁଳ ତୁ କେମନ୍ତେ ହୋଇଲୁ
ଶୁଣ ହୋ ପଣ୍ଡୁ ନନ୍ଦନ ।।

ଆମ୍ଭେ ଯେ ତୋତେ ଦେଖିବାର ନିମନ୍ତେ
ଅଇଲୁ ଶରଧା କରି
କିପାଁ ଏ କଥାକୁ ବିଚାର ନ କରୁ
ଅନ୍ନପାଟ ଅଛୁ ଧରି ।।

ଧର୍ମଙ୍କ ବଚନେ ଯୁଧିଷ୍ଠି ବୋଇଲେ
ମନକୁ ମୋ ବଡ଼ ଦୁଃଖ
ଦଇବେ ତୁ ଯେ ଚଣ୍ଡାଳ ଜାତି ଅଟୁ
କେମନ୍ତେ ଚାହିଁବ ମୁଖ ।।

ଯେଉଁଦିନେ ହାଦେ ଚଣ୍ଡାଳ ବଦନ
ଗତି ପ୍ରଭାତେଣ ଚାହିଁ
ରବି ଅସ୍ତଯାଏ ଅନ୍ନ ନଖାଇଲେ
ତେବେ ସେ ଏ ପାପ ଯାଇ ।।

ଯେବେ ତାହାସଙ୍ଗେ କଥା ପରସଙ୍ଗେ
ଦେବ କହୁହିଁ ଉତ୍ତର
ସେ ଦିନରେ ଷଡ଼ ସ୍ନାନ କଲେ ସେହୁ
ଏ ପାପ ହୁଅଇ ଦୂର ।।

ଯୁଧିଷ୍ଠିଙ୍କ ବାଣୀ ଏସନକ ଶୁଣି
ବୋଇଲେ ଧର୍ମ ଗୋସାଇଁ
ଚଣ୍ଡାଳ ମତି ଯାହାକୁ ବୋଲି ରାଜା
ତୁ ତାହା ଜାଣିବୁ କାହିଁ ।।

ଏ ମୋର ବଚନ ଧେଖିବର ହୀନ
ତେଣୁ ତୁ କହିଲୁ ଏହା
ଭଲମନ୍ଦ ଆଉ ବିଚାର ନକଲୁ
ଅନ୍ତର୍ଗତେ ଅଛି ଯାହା ।।

ସଂସାର ଭିତରେ ରଜା ହୋଇ ତୁ ଯେ
ବୋଲାଉ ଧର୍ମ ନନ୍ଦନ
ଚଣ୍ଡାଳ ବୋଲି ଯାହାକୁ ବୋଲି ରଜା
ଓମାହ ଚନ୍ଦ୍ର ଏବେ ଶୁଣ ॥

ବିପ୍ର ହୋଇ ଯେବେ ବସ୍ତ୍ରରେ ଭିକନ୍ତି
ନକରେ ସନ୍ଧ୍ୟା ଦୁକାଳ
ନିଯ୍ୟାହୀନ ହୋଇ ଯେବଣ ବ୍ରାହ୍ମଣ
ତାହାକୁ ବୋଲି ଚଣ୍ଡାଳ ॥

ଦାନ୍ତକୁ ନ ଘଷି ଯେଉଁ ପ୍ରାଣୀମାନେ
କରନ୍ତି ଆହାର ପାନ
ସେହି ସେ ଚଣ୍ଡାଳ ଶାସ୍ତ୍ର ପରମାଣେ
ଯୁଧିଷ୍ଠିର ଧୀରେ ଶୁଣ ॥

ଆଉର ତୋତେ ବଚନେକ କହିବା
ଶୁଣସି ହେ ମହୀପାଳ
ପାଦ ନଧୋଇ ଯେ ଭୋଜନ କରନ୍ତି
ତାଙ୍କୁଟି ବୋଲି ଚଣ୍ଡାଳ ॥

ଆଉର ଏକ ଚଣ୍ଡାଳ କଥା ତୋତେ
କହିବା ଯୁଧିଷ୍ଠି ରାୟେ
ତୃଷାରେ ଆରତ ହୋଇ ଯେ ଗୋଧନ
ଜଳ ଭକ୍ଷିବାକୁ ଯାଏ ॥

ତାକୁ ଯେଉଁଲୋକ ବୃଥାରେ ଧମକ
ଦେଇ ଘଉଡ଼ି ଦିଅଇ
ଧର୍ମ ଶାସ୍ତ୍ର ପରମାଣେ ବିଗୃଚଲେ
ଚଣ୍ଡାଳ ହାଦେଟି ସେହି ॥

ଶତ୍ରୁଠାରେ ଯାଇଁ ଶରଣ ପଶିଲେ
ଯେବେ ସେ କରଇ ନାଶ
ତାହାକୁ ହାଦେ ଚଣ୍ଡାଳ ବୋଲିକରି
ଶୁଣ ତୁ ପାଣ୍ଡୁର ଶିଷ ॥

ଆବର ଚଣ୍ଡାଳ ତୋତେ କହୁଦେବା
ଶୁଣ ତୁ ଯୁଧିଷ୍ଠି ରାୟେ
ଯେଉଁ ଯୁବତୀର ଗର୍ଭବାସ ଅଷ୍ଟ
ନବମାସ ହୋଇଥାଏ ॥

କାମ ଆରତେ ସେହି ସ୍ତ୍ରୀ ସଙ୍ଗତେ
ଅଙ୍ଗସଙ୍ଗ ହୋନ୍ତି ଯେହୁ
ବାଳହତ୍ୟା ଦୋଷ ତାହାକୁ ଲାଗଇ
ଆରେକ ଚଣ୍ଡାଳ ସେହୁ ॥

ପାପପୂଣ୍ୟ ବେନି ବଗୃର ନକରି
ବନକୁ ଯେ ପୋଡ଼ିଦେଇ
ନିଶି ପ୍ରଭାତେ ତା ବଦନ ନରୃହିଁ
ଜାଣ ଚଣ୍ଡାଳଟି ସେହି ॥

ଦୁଃଖୀ ଲୋକଙ୍କୁ ଯେ ଦେବା ବୋଲି କହୁ
ଆଶା ଦେଇଥାଇ ଯେହୁ
ନାହିଁ ବୋଲି ପଛେ ନିରାଶ କରଇ
ଆରେକ ଚଣ୍ଡାଳ ସେହୁ ॥

ପଶୁମାନଙ୍କରେ ଗଧ ଯେ ଚଣ୍ଡାଳ
ପକ୍ଷୀରେ ଚଣ୍ଡାଳ କାକ
ସନ୍ତ ହୋଇ ଯେବେ ହୃଦେ କୋପଥାଇ
ସେହୁଟି ଚଣ୍ଡାଳ ଲେଖ ॥

ଆବର ତୋତେ ବଚନେକ କହିବା
ଶୁଣ ତୁ ଦ୍ରୌପଦୀ ସାଇଁ
ଗୁରୁ ଚରଣେ ତତପର ହୋଇଣ
ସେବାଭକ୍ତି ଯାର ନାହିଁ ॥

ଅନ୍ତରୁ ଯାଇ ଦୁଆରେ ଛିଡ଼ାହୋଇ
ନପାଇ ବାହୁଡ଼ି ଯିବ
ପିତୃ ଲୋକମାନେ ନିରାଶ ହୁଅନ୍ତି
ବ୍ରହ୍ମହତ୍ୟାଟି ଲାଗିବ ॥

ଅତିଥି ଆସି ଦୁଆରେ ଥିବ ବସି
କାଷ୍ଟାକଲେ ନୁହେଁ ଭଲ
ନଦେଇ ତାଙ୍କୁ ଭୋଜନରେ ବସିଲେ
ଅନ୍ନ ଗୋମାଂସର ତୁଲ୍ୟ ॥

ପିତୃ ଲୋକମାନେ ତା ନକର ମନେ
ବିମୁଖେ ବାହୁଡ଼ି ଯାନ୍ତି
ଅଲ୍ପକ ନୟନେ କୋଟି ମୂଜାମାନ
ହୁଅଇଟି ବନଶ୍ୟତ ॥
ଦେବାର୍ଚ୍ଚନ ପୂଜା ବେଗରେ ତ୍ରୁଟଇ
ଶତଧର୍ମ ଯାଏ କ୍ଷୟେ
ଅତିଥି ଅର୍ଚ୍ଚନା ବିନା ଯଜ୍ଞଧର୍ମ
ସକଳ ନିଷ୍ଫଳ ହୁଏ ॥

ଘୋର ଚଣ୍ଡାଳ ପିତା ଶତ୍ରୁ ସହିତେ
ଅତିଥି ରୂପ ଯେ ଧରି
ବାସୁଦେବ ପ୍ରାୟେ ତାହାଙ୍କୁ ଦେଖିବ
ପାଦପୂଜା ବିଧି କରି ॥

ନବଗ୍ରହ ଦାନ ପୁଷ୍କରିଣୀ ମାନ
ଯେତେ ଧର୍ମ ଏଥି ହୁଏ
ଅତିଥି ପୂଜା ଯେଉଁ ପ୍ରାଣୀ କରନ୍ତି
ଏତେ ଧର୍ମ ସେହୁ ପାଏ ॥

ନିରଞ୍ଜନ ବାଣୀ ଏସନକ ଶୁଣି
ବୋଇଲେ ସେ ନରନାଥ
କେମନ୍ତ ପ୍ରକାରେ ଧର୍ମ ଉଦେ ହୋଇ
ଏ କଥା କହ ଯଥାର୍ଥ ॥

ଯୁଧିଷ୍ଠି ବଚନେ ଧର୍ମ ଆଜ୍ଞା ଦେଲେ
ଶୁଣ ତୁ ହୋ ଧର୍ମସୁତ
ଟୟାରୁ ଧର୍ମ ଉତପତ୍ତି ହୁଅଇ
ଦୟାରୁ ଧର୍ମ ପ୍ରାପତ ॥

କ୍ଷମା କଲେ ଧର୍ମ ସ୍ଥାପନା ହୁଅଇ
କ୍ରୋଧ କଲେ ଯାଇ ନାଶ
ଧ୍ରୁବ ବଚନ ଏହା ବୋଲ ଯାଣିବୁ
ଶୁଣ ତୁ ପଣ୍ଡୁର ଶିଷ ॥

ଧର୍ମଙ୍କର ବାଣୀ ଏସନକ ଶୁଣି
ବୋଇଲେ ଯୁଧିଷ୍ଠି ରାୟ
ପ୍ରଦେଶେ କଏ ମିତ୍ର ପଣ କରଇ
ଏକଥା କହିବା ହୁଅ ॥

ଗୃହଧର୍ମେ କେ ମିତ୍ରପଣ କରଇ
ବିପତ୍ତି କାଳେ କେ ସଖା
ମରିବା ବେଳେ ମିତ୍ରପଣ କେ କରେ
ବିସ୍ତାରି କହିବା ଏକା ॥

ଯୁଧିଷ୍ଠି ବଚନେ ଧର୍ମ ଆଜ୍ଞା ଦେଲେ
ଯାହା ପୃଚ୍ଛା କଲ ମୋରେ
ବିଦ୍ୟା ମିତ୍ରପଣ ବିଦେଶେ କରଇ
ଭାରିଯା ମଇତ୍ର ଘରେ ॥

ପାପପୁଣ୍ୟ ବେନ ଶୁଭାଶୁଭ ଯେନ
କରୁଥାଇ ନିଜ କର୍ମ
ବିପତ୍ତି କାଳେ ଧନ ମିତ୍ର ହୁଅଇ
ମରିବା କାଳକୁ ଧର୍ମ ॥

ନିରଞ୍ଜନ ବାଣୀ ଏସନକ ଶୁଣି
ବୋଇଲେ ଦ୍ରୌପଦୀ ସାଇଁ
ତୀର୍ଥ ଜଳରେ ସ୍ନାନ ଦାନ କଲେ ସେ
କେତେକେତେ ଧର୍ମ ପାଇ ॥

ଧର୍ମ ଯେ କହନ୍ତି ଶୁଣ ହୋ ଯୁଧିଷ୍ଠି
ତୁ ଯାହା ବୋଇଲୁ ଭଲେ
କୋଟି ତୀର୍ଥଫଳ ପ୍ରାପତ ହୁଅଇ
ମନକୁ ନିର୍ମଳ କଲେ ॥

ବସ୍ତୁ ମାୟାଧର ଜଗତ ରଚନ୍ତି
ଯୋଗୀଜନ ଜ୍ଞାନଭଙ୍ଗା
ଚିତ୍ତକୁ ହାଦେ ଶୁଦ୍ଧକର ପାରିଲେ
ଗାଡ଼ୁଆ ଜଳଟି ଗଙ୍ଗା ॥

ଧର୍ମଙ୍କ ବଚନେ ଯୁଧିଷ୍ଠି ବୋଇଲେ
କଏ ସେ ଅଟେ ଅର୍ଥାର୍ଥ
ଆବର କଥାଏ ତୁମ୍ଭଙ୍କୁ ପୁଚ୍ଛିଲି
କହ ବଚନ ଯଥାର୍ଥ ॥

ମନକୁ ମୋର ଅପ୍ରତେ ଲଗୁଅଛି
ତେଣୁ ପୁଚ୍ଛା କରେ ଠିକେ
ମାତା ପିତା ଭଗ୍ନି ପୁତ୍ର ଭ୍ରାତାମାନେ
ଏମାନେ ହୋଇଲେ କେ କେ ॥

ଯୁଧିଷ୍ଠି ବଚନେ ଧର୍ମ ନିରଞ୍ଜନ
ବୋଇଲେ କହିବା ଶୁଣ
ଧଇର୍ଯ୍ୟ ପଣେ ଦେହରେ ଯାର ଥାଇ
ପିତା ବୋଲି ସତ ଜାଣ ॥

ଶାନ୍ତି ଭାରିଯା କ୍ଷମା ଅଟେ ଜନନୀ
ପୁତ୍ର ବୋଲ ତାଙ୍କୁ ସତ
ଦୟା ବନ୍ଧୁ ବୋଲି ଶାସ୍ତ୍ରରେ କହନ୍ତି
ମନକୁ କହନ୍ତି ଭ୍ରାତା ॥

ଧର୍ମଙ୍କ ବଚନେ ଯୁଧିଷ୍ଠି ବୋଇଲେ
ଆବର ପଚ୍ଛରେ ଏହା
ସଂସାର ଭିତରେ ପଞ୍ଚରତ୍ନ କଏ
ବିସ୍ତାରି କହିବା ତାହା ॥

ଧର୍ମ ବୋଇଲେ ତୁ ଯାହା ପୁଚ୍ଛାକଲୁ
ଶୁଣ ହୋ ଧର୍ମ ନୃପତି
ପୁତ୍ର ହୋଇ ଯେବେ ବିବେକୀ ହୋଇବ
ତାହାକୁ ରତ୍ନ ବୋଲନ୍ତି ॥

ଓହୋ ବଳର ସଂଗ୍ରାମ ଭୂଇଁକ ଯେ
ଯେଉଁ ଘୋଟକ ଚମଇ
ବାଣ ବାଜଲେ ଧଇର୍ଯ୍ୟବନ୍ତ ହୋଇ
ରଉତକୁ ଘେନଥାଇ ।।

ସ୍ତିରି ହୋଇ ଦମ୍ଭପଣ ନ କରବ
ଜନ୍ମରେ ହେବ ସଦୟ
ପଞ୍ଚରତ୍ନ ବୋଲି ଏମାନଙ୍କୁ କହି
ଶୁଣହୋ ଯୁଧିଷ୍ଠି ରାୟ ।।

ଧର୍ମଙ୍କର ବାଣୀ ଏସନକ ଶୁଣି
ବୋଇଲେ ଦ୍ରୌପଦୀ ନାଥ
କେତେ ପୁଷ୍ପ ଦେଇ ବିଷ୍ଣୁଙ୍କୁ ପୂଜନ୍ତି
ଏକଥା କହ ଯଥାର୍ଥ ।।

ଧର୍ମ ବୋଇଲେ ଅହିଂସା ଆଦି ପୁଷ୍ପ
ଦେଇକରି ତଥିମୂଳେ
ସାଧୁ ସୁଖ ସତ ଆଚାର କରିଲେ
ଅଷ୍ଟପୁଷ୍ପ ହୋଇ ମୂଳେ ।।

ଯୁଧିଷ୍ଠି ବୋଇଲେ ବହୁତ ଶାସ୍ତ୍ର ମୁଁ
ଶୁଣିଲି ଯେ ତୁମ୍ଭମୁଖ
କେଉଁ ଭାବେ ପ୍ରାଣୀ ଦୁଃଖ ପାଉଥାନ୍ତି
କେଉଁ ଭାବେ ପାନ୍ତି ସୁଖ ।।

କି ଭାବ କଲେ ସ୍ୱର୍ଗ ମର୍ତ୍ତ ପାତାଳ
ଭୁବନେ ଭଲ ବୋଲନ୍ତି
କେଉଁ ଭାବ କଲେ ଏ ସଂସାରେ ପୁଣି
ମର ଭକ୍ତ ଜନ୍ମ ହୋନ୍ତି ।।

ଧର୍ମ ବୋଇଲେ ତୁ ଯାହା ପୃଚ୍ଛା କଲୁ
ଏକଥା ପ୍ରମାଣ ସିନା
କେଉଁ ଭାବେ ଦୁଃଖ କେଉଁ ଭାବେ ସୁଖ
ତାହା ତୋତେ କହୁଁ କନା ।।

ଯେବଣ ପୂଜା କରଲେ ଫଳ ହାବେ
ଦୁଃଖ ଭଗୀ ହୁଏ କର୍ମ
ଅନ୍ନଦାନ କେଉଁ ପ୍ରାଣୀ ନ ଦଅନ୍ତି
ପୁଣି ପୁଣି ହୋନ୍ତି ଜନ୍ମ ॥

ପରସ୍ତ୍ରି ସ୍ତ୍ରୀ କ ଦେଖଣ ଯେଉଁମାନେ
ମଦନେ ଆରତ ହୋନ୍ତି
ସେ ପ୍ରାଣୀମାନେଟି କୁମ୍ଭୀପାକ ନର୍କେ
ପୁଣି ପୁଣି ଜନ୍ମପାନ୍ତି ॥

ଏସନକ ବାଣୀ ଯୁଧିଷ୍ଠି ଦେବ ଶୁଣି
ମନରେ ସନ୍ତୋଷ ହୋଇ
ବୋଇଲେ ଆବର ବଚନେକ ମୋତେ
ପରସନ୍ନେ ଦଅ କହି ॥

କେତେ ଆଙ୍ଗୁଳ ଆକାଶ ପଥ ଅଟେ
ଗଗନରେ କେତେ ତାରା
କେତେ ଧାରରେ ବରଷୁ ଅଛି ଜଳ
କେତେହାତ ବସୁନ୍ଧରା ॥

ଧର୍ମ ବୋଇଲେ ବଗୁରଣ କହିବା
ମନେ କମ୍ପା ଚନ୍ତା କରୁ
ଏତେ ସନ୍ଧକଥା ହୃଦରେ ବଗୁର
ଭୁଞ୍ଜ ସେ ପଗୁର ପାରୁ ॥

ଆକାଶ ଗୁର ଆଙ୍ଗୁଳ ଶୁଣ ଭୁଞ୍ଜ
ଗଗନରେ ବେନ ତାରା
ଆହୁଠ ହାତ ବସୁନ୍ଧରା ଅଟଇ
ଜଳ ବୃଷ୍ଟି ଦଶଧାରା ॥

ଧର୍ମଙ୍କ ବଚନ ଶ୍ରବଣରେ ଶୁଣି
ବୋଇଲେ ପଣ୍ଡୁ କୁମର
କେତେ ଅକ୍ଷରରେ ବ୍ରହ୍ମାଣ୍ଡ ହୋଇଛି
କେତେ ଚନ୍ଦ କେଉଁ ପାର ॥

କେଉଁ ଚକ୍ରେ କେଉଁ ଦେବତା ବସଇ
ଶିବଶକ୍ତି କାହିଁ କେତେ
କେଉଁ ଦେଉଳର ପବନ ଫେରଇ
ବିସ୍ତାରି କହ୍ବା ମୋତେ ॥

ଧର୍ମ ବୋଇଲେ ବାରଗୋଟି ମାତ୍ରା ଯେ
ପଗୃଶ ଅକ୍ଷରେ ଠୁଳେ
ଷଡ଼ଚକ୍ର ଯେନ ବ୍ରହ୍ମାଣ୍ଡ ହୋଇଛି
ଅଣଗୃଶ ବାୟୁମୂଳେ ॥

ମୂଳ କମଳେ ଗଣେଶ୍ୱର ଦେବତା
ଶକୁମାକ ଯେନରହ୍ବ
କଅଠାରୁ ଲଅ ଅକ୍ଷର ପର୍ଯ୍ୟନ୍ତେ
ଏ ଗୃର ପାଖୁଡ଼ା ତହ୍ବ ॥

ଲିଙ୍ଗ କମଳେ କାମେଶ୍ୱର ଦେବତା
କାମାକ୍ଷୀକ ଯେନକୋଳେ
ବଅଠାରୁ ଯେ ଲଅ ପରଯନ୍ତେ
ଷଡ଼ ପାଖୁଡ଼ାର ମୂଳେ ॥

ନାଭି କମଳେ ବେଦବର ଦେବତା
ମାବଶୀ ସନ୍ନତେ ବେନ
ଏଐ ଓଔଠାରୁ ଶିଶ ପରଯନ୍ତେ
ଏ ଦଶ ପାଖୁଡ଼ା ଯେନ ॥

ହୃଦ କମଳେ ନାରାୟଣ ଦେବତା
ମହାଲକ୍ଷ୍ମୀ ଯେନ କୋଳେ
କ ବର୍ଣ୍ଣଠାରୁ ଠଅ ପରଯନ୍ତେ
ଦ୍ୱାଦଶ ପାଖୁଡ଼ା ମୂଳେ ॥

କଣ୍ଠ ଚକ୍ରରେ ଉମାକୁ କୋଳେ ଯେନ
ବଜେ ମାଳ କଣ୍ଠେଶ୍ୱର
ଏଐଓଔ ଠାରୁ ଅଃବର୍ଣ୍ଣ ପର୍ଯ୍ୟନ୍ତ
ଷୋଳ ପାଖୁଡ଼ାରେ ଘର ॥

ଲଲାଟ ଚକେ ନିରଞ୍ଜନ ଦେବତା
ଆଦ୍ୟ ଅପର୍ଣ୍ଣାଙ୍କୁ ଧେନ
ଲଳ ଲଟୁଡ଼ ବେନପାଖେ ବସଇ
ଦ୍ୱିସ୍ତ ଦଳ ବୋଲି କହ ॥

ଏଥୁଁ ବାହାର ହୋଇ ଗୁପ୍ତ ଅକ୍ଷର
ମିଧରସ୍ଥ ବୋଲି କହ
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣରେ
ଏମାନେ ଅଛନ୍ତି ରହ ॥

କହହୋ ଯୁଧିଷ୍ଠି ଲକ୍ଷଣ କି ଭୂଷ୍ଟି
ପ୍ରତେ ପାଇଲ କି ଚିତ୍ତ
ଚଣ୍ଡାଳ ବୋଲି ଆମ୍ଭଙ୍କୁ କାହିଁ ପାଇଁ
ନିନ୍ଦାକଲୁ କୁନ୍ତୀସୁତ ॥

ଧର୍ମଙ୍କ ବଚନେ ଯୁଧିଷ୍ଠି ବୋଇଲେ
ନଜାଣି ହୁଡ଼ିଲୁ ବାବା
କେଉଁ ଦେବତା ତୁ ମୋତେ ଛଡ଼ିବାକୁ
କପଟେ ଅଇଲୁ ଅବା ॥

ସ୍ୱରୂପ କହ ନୋହିଲେ ଦେବଦେହ
ବିନାଶ କରିବି ଏଣେ
ମହାପାତକ ଯେ ତୁମ୍ଭଙ୍କୁ ଲାଗିବ
ବେଦଶାସ୍ତ୍ର ପରମାଣେ ॥

ଯୁଧିଷ୍ଠିଙ୍କ ବାଣୀ ଧର୍ମଦେବ ଶୁଣି
ବୋଇଲେ ଆମ୍ଭେ ତୋ ପିତା
ତୁ ଯେ ଆମ୍ଭପୁତ୍ର ସତଫଳୁଁ ହାଦେ
ଜଗତେ ହୋଇଲୁ ଜେଠା ॥

ଲକ୍ଷେ ରାଜାଙ୍କୁ ବରଣ କରି ଆଣି
ରଚିଲୁ ରାଜୁସୀ ଯାଗ
ତେଣୁ କରି ତୋତେ ଦେଖିଣ ଅଇଲୁ
ଆମ୍ଭର ବହୁତ ଭାଗ୍ୟ ॥

ଶୁଣିଣ ଯୁଧିଷ୍ଠି ଲକ୍ଷଣ ଯେ କୃଷ୍ଣି
ପାଦେ ପ୍ରଣିପାତ କଲେ
କୋଟି ଦଣ୍ଡବତ କରିଣ ପିତାଙ୍କୁ
ଆପଣା ପୁରକୁ ନେଲେ ॥

ଚଣ୍ଡାଳ ରୂପକୁ ଗୁପତ କରିଣ
ବିଜେକଲେ ଦେବଧର୍ମ
ଯୁଧିଷ୍ଠି ବୋଇଲେ ନିସ୍ତାର ପାଇଲି
ଆଜ ମୋ ସୁଫଳ କର୍ମ ॥

ପିତା ପୁତ୍ରେ ହସି ଏକଠାବେ ବସି
କହନ୍ତି ସକଳ କଥା
ପଞ୍ଚଅନ୍ନ ଭୁଞ୍ଜି ସନ୍ତୋଷ ହୋଇଲେ
ଆପଣେ ଧର୍ମ ଦେବତା ॥

ସେଦିନ ତହିଁ ହରଷ ଚିତ୍ତ ହୋଇ
ରହିଲେ ଧର୍ମ ଗୋସାଇଁ
ଆରଦିନ ନିଶି ପ୍ରଭାତେ ଚଳିଲେ
ଯୁଧିଷ୍ଠି ଦେବଙ୍କୁ କହି ॥

ସ୍ୱର୍ଗ ଭୁବନରେ ଅମର ପୁରରେ
ପ୍ରବେଶ ହୋଇଲେ ପୁଣି
ଶ୍ରୀ ଜଗନ୍ନାଥଙ୍କ ଚରଣେ ଶରଣ
ଦୀନକୃଷ୍ଣ ଦାସ ଭଣି ॥

ସୁଜନେ ମୋହର ଦୋଷ ନ ଧରିବ
ଶ୍ରବଣ ପଥରେ ଶୁଣ
ଧର୍ମ ଶାସ୍ତ୍ର ଏହି ବୋଲିବ ମହିମା
ଅନୁଭବ ଥିଲେ ଜାଣ ॥

ସାତ୍ତ୍ୱ ଶାତକ ବଧମତ ଯେତେକ
ପ୍ରଳାପ ବଚନ ଯଥା
ପ୍ରତିବଧ କରି ଧର୍ମ ଯେ ଅଧର୍ମ
ପାପ ପୁଣ୍ୟ ଦୁଇ କଥା ॥

ଶ୍ରୀକୃଷ୍ଣ ଚରିତ ଅତ୍ୟନ୍ତ ପବିତ୍ର
ମୋ ଛାର କହିବ କାହିଁ
ଆଦିଅନ୍ତ କରି ଲେଖି ସରସ୍ୱତୀ
ଅନ୍ତ ନପାଇଲେ ଯହିଁ ॥

ମୁହିଁ ପାମର ମୂର୍ଖମତି ମୋହୋର
ମୁଁ ଛାର କହିବ କାହିଁ
ପଦ ଯୋଡ଼ିବାକୁ ଆପଣା ଶ୍ରୀମୁଖେ
ଆଜ୍ଞାଦେଲେ ଲକ୍ଷ୍ମୀସାଇଁ ॥

ସେହି ଆମ୍ଭ ମୋର ହୃଦପୁରେ ପଶି
କହନ୍ତି ସକଳ କଥା
ତେଣୁକରି ମୁହିଁ ଲେଖନ୍ କରଇ
ପୁରାଣ ଆଦି ବାରତା ॥

ସୁଜନ ଜନେ ହୃଦପୁରେ ଗୁଣି ଯେ
ନ ଧରିବ ମୋର ଦୋଷ
ଶ୍ରୀ ଜଗନ୍ନାଥଙ୍କ ଶରଣ ପଶିଲ
ଅରକ୍ଷିତ କୃଷ୍ଣ ଦାସ ॥



# ଆରତ ବାଣୀ ଚଉତିଶା

କୃପାସିନ୍ଧୁ ବଦନ କର ଅବଲୋକନ
କେଉଁ କରମ ହୀନ ଜନ
କାକୁସ୍ଥ ତର ହୋଇ କରଯୋଡ଼ି ଜଣାଇଁ
ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ
ମହାପ୍ରଭୁ
କୃପା ସରିତ ପତି ହୋଇ, କରମ ହୀନ ଜନ ତହିଁ
କରୁଣା କଲ ନାହିଁ କିମ୍ପାହେ ଭାବଗ୍ରାହୀ
କହ ମୁଁ ବଚନ ମଣଇଁ ହେ ମହାପ୍ରଭୁ ।। ୧ ।।

ଖିଳ ବ୍ରହ୍ମାଣ୍ଡୋଦରେ କର୍ମହୀନ ଜନରେ
ଯେଣୁ ମୋ ସମ ଆନ ନାହିଁ
ଖଗତିଳକ କାନ୍ତ ସେ କାରଣୁ ଏମନ୍ତ
ଖେଦ ଆରତ କହିଲଇଁ ହେ
ମହାପ୍ରଭୁ
ଖଣ୍ଡିବ ନାହିଁ ଯେଣୁ ମୋର ଖେଦ କରୁଣା ରତ୍ନାକର
ଖଣ୍ଡ ବ୍ରହ୍ମାଣ୍ଡଧର ଖଣ୍ଡି ନାହିଁ କାହାର
ଯେଉଁ ବିପତ୍ତି ବିଶ୍ୱମ୍ଭର ହେ ମହାପ୍ରଭୁ ॥ ୨ ॥

ଗଜ ରାଜକୁ ଜଳେ ଗ୍ରାହା ଗ୍ରାସିବା କାଳେ
ଡାକିଲା ରଖ ଆଦିମୂଳ
ଗୁରୁତର ଆତଙ୍କ ଜାଣିଣ ତା ଶ୍ରୀଅଙ୍ଗ
ରଥାଙ୍ଗ ପେଷିଲ ତତ୍କାଳ ହେ
ମହାପ୍ରଭୁ
ଗ୍ରାହ ଜୀବନେ ନିବାରିଲ, ଗଜ ବିପତ୍ତିରୁ ତାରିଲ
ଗରୁତ୍ମାନ କେତନ ମମ କର୍ମକୁ ଯେନ
ନିରଖ ନିରବଧି ହେଲ ହେ ମହାପ୍ରଭୁ ॥ ୩ ॥

---

କୃପାସରିତ ପତି — କୃପାସିନ୍ଧୁ
ଖଗତିଳକ କାନ୍ତ — ଖଗପତି ଗରୁଡ଼ପତି
ଗ୍ରାସ — କୁମ୍ଭୀର

ଘନଶ୍ୟାମ ହେ ବିପଦ ବିନାଶନ
ବିଗ୍ରହ ଥାଇଁ ମନେ ମୋର
ଓଘୋର ବିପତ୍ତି ସ୍ଥିର କେତେ ମାତ୍ର ଯାହାର
ପ୍ରଭୁ ମହିମା ଅକୂପାର ହେ
ମହାପ୍ରଭୁ
ଯେନ ଏ କଥା ମନେଥିଲ ଘୃଣା କି କାରଣେ ନୋହିଲ
ଘୋର ବିପତ୍ତି ମୋର ହୋଇ ଘଟ କୁମର
ମହିମା ବାରିଧି ଶୋଷିଲ ହେ ମହାପ୍ରଭୁ ॥ ୪ ॥

ନିରକ୍ଷ ନିସ୍ତାରଣ କରଣେ ପ୍ରହରଣ
କର କମଳରେ ବହିଛ
ନିଧନ ସମୟରେ ନୀରକ୍ଷ ଜନଠାରେ
ନିର୍ଦ୍ଦୟ ହୃଦୟ ହେଉଛ ହେ
ମହାପ୍ରଭୁ
ନୀଳାଚଳରେ ତୁମ୍ଭେଥିବ ନିରକ୍ଷ ଜନ ନାଶ ଯିବ
ନିଖିଳ ନିକେତନ ନବପଞ୍ଚ ଭୁବନ
ମଧ୍ୟରେ କେମନ୍ତ ଶୁଭିବ ହେ ମହାପ୍ରଭୁ ॥ ୫ ॥

ଚତୁର୍ବର୍ଗ ଯାହାର ଚରଣେ ପଶରୁର
ଚଞ୍ଚଳା ଯାର ଆଜ୍ଞାକାରୀ
ଚାହିଁ ଯାହା ଶ୍ରୀମୁଖ ଖଣ୍ଡେ ଦୁରନ୍ତ ଦୁଃଖ
ସେ ପ୍ରଭୁ ଭୃତ୍ୟହିଁ ଭିକାରୀ ହେ
ମହାପ୍ରଭୁ
ଚତୁର୍ଦ୍ଦଶ ଭୁବନ ପ୍ରାଣୀ ଚକିତ ହେବେ ଏହା ଶୁଣି
ଛଳ ନୋହେ କି ଏହୁ କଥାରେ ମହାବାହୁ
ନୀଳ ଶଇଳ ଚୂଡ଼ାମଣି ହେ ମହାପ୍ରଭୁ ॥ ୬ ॥

---

ଚତୁର୍ବର୍ଗ — ଧର୍ମ ଅର୍ଥ କାମ ମୋକ୍ଷ

ଘୁଡ଼ ସକଳ ଆଶ ତୁମ୍ଭ ପାଦ ସାରସ
ଭରସା କରିଛୁ ସନ୍ତତେ
ଘୋର ସାଗରେ ପଡ଼ି ମରିବା କାଳେ ବୁଡ଼ି
ଘୁଡ଼ ତ ଦେଉଅଛୁ ମୋତେ ହେ
ମହାପ୍ରଭୁ
ଙ୍ଗିତ ମଣ୍ଡଳେ ତୁମ୍ଭବିନା ଙ୍ଗଣେ ହେଁ ନାହିଁ ବନ୍ଧୁ ସେହ୍ନା
ଛନ୍ଦ ନୁହେ ଉଚିତ କହୁଛୁ ପ୍ରଭୁ ସତ୍ୟ
ନଷ୍ଟେ ଏତେବେଳକୁ ସିନା ହେ ମହାପ୍ରଭୁ ॥ ୭ ॥

ଜଗତ ଅନୁରାଗେ ଜାତ ଅବନୀ ଭାଗେ
ହୋଇବେ ଜଗତର ନାଥ
ଜଗତ ଜନଙ୍କର ଭିତରୁ କିଁ ବାହାର
ମୁହିଁକ କାରଣେ ଅନାଥ ହେ
ମହାପ୍ରଭୁ
ଜଗନ୍ନାଥ ନାମ ବହିବ ଜନ ଆରତ ନ ସହିବ
ଜଗତ ପତି ହୋଇ ଅନାଥ କଲାଠାଇଁ
ଆଉ କେ ବା ଆଗେ କହିବ ହେ ମହାପ୍ରଭୁ ॥ ୮ ॥

ଝୁଣିଲୁ ଏ ବଚନ ନବପଞ୍ଚ ଭୁବନ
ଆରତ ଭଞ୍ଜନ ଶ୍ରୀହରି
ଝଞ୍ଜିକା ମଣୁଅଛ କଥା ମୋ ବିଷୟରେ
ବିନାଶ କାଳେ ଦଇତ୍ୟାରି ହେ
ମହାପ୍ରଭୁ
ଝାଡ଼େ ଡାକିଲା ଗର୍ଭିଣୀ ଝଟତିରେ ତା ଡାକ ଶୁଣି
ଝିମିଟେ ସେ ବିପତ୍ତି ହରିଲ ହେ ଶ୍ରୀପତି
ମୋରେ କର୍ଦ୍ଦପୁ କଥା ପୁଣି ହେ ମହାପ୍ରଭୁ ॥ ୯ ॥

---

ନବପଞ୍ଚ ଭୁବନ — ଚଉଦ ବ୍ରହ୍ମାଣ୍ଡ

ନଥିଲେ ଧଯ୍ୟା ଚିତ୍ତେ କହ ହେ ପ୍ରଭୁ ମୋତେ
ମୋ ଜୀବ ପ୍ରାଣଆଣ ଫିଟୁ
ନିଶ୍ଚେ କରୁଣାନିଧି ହେଲେ ନିର୍ଦ୍ଦୟ ନିଧି
ବୋଲି ତ୍ରିଭୁବନେ ପ୍ରକଟ ହେ
ମହାପ୍ରଭୁ
ନିଶ୍ଚେ ନିର୍ଦ୍ଦୟ ହେବେ ଯେବେ    ଅଷ୍ଟଲେ ଆଉ ନକଥିବେ
ନାଗ ନୃପତି ପୁର ସମ୍ଭାର ନିଧିଧର
ଯେ ଯାହା ସତ୍ୟକୁ ଲଙ୍ଘିବେ ହେ ମହାପ୍ରଭୁ ।। ୧୦ ।।

ଟିକାଏ ବିଲମ୍ବିତ ନକର ପାଣ୍ଡୁସୁତ
ଯୋଚିତ ସଙ୍କଟ ତାରିଲ
ଟେକ ଦୁଃସହ ଘୋର ଦାରିଦ୍ର୍ୟ ସୁଦାମାର
ଦର୍ଶନ ମାତ୍ରକେ ହରିଲ ହେ
ମହାପ୍ରଭୁ
ଟେକ କରୁଣା କଟାକ୍ଷରେ    ଟିକିଏ ବିଲୋକିଲେ ମୋରେ
ଟଳିବ କି ମହିମା ସାଗର ସୁଖସୀମା
ଏମନ୍ତ ବିଗ୍ରହରେ ମନଟରେ'ହେ ମହାପ୍ରଭୁ ।। ୧୧ ।।

ଠାବ ନ କଲି ଚିତ୍ତ କେଉଁ ଦୋଷକୁ ମୋତେ
ନିଘଣ କରୁଛ ଗୋସାଇଁ
ଠାକୁର ହୋଇ ଭୃତ୍ୟଠାରେ କଲେ ଏମନ୍ତ
ଆଉବା ଆଗେ କହିବଇଁ ହେ
ମହାପ୍ରଭୁ
ଠୁଳ ବିପତ୍ତି ଦେଖି ମୋର    ଠିକେ ନକରୁଛ ଅନ୍ତର
ଠଣି ପଦ୍ମ ଚରଣ ବିନୁ ପ୍ରତି କାରଣ
ଅଛୁକେ ବ୍ରହ୍ମାଣ୍ଡ ଭିତରହେ ମହାପ୍ରଭୁ ।। ୧୨ ।।

ଡେରିଥିଲ ଶ୍ରବଣ ଗଜ ଆଦି ବ୍ରାହ୍ମଣ
ଡାକିଲା ମାତ୍ରକେ ଶୁଣିଲ
ଡୋଳା ଗୋଚରେ ଥାଇ ଡାକଲେ ନ ଶୁଭଇ
କର୍ଣ୍ଣକୁହର କି ମୁଦିଲ ହେ
ମହାପ୍ରଭୁ
ଡାକ ପଡ଼ୁଛି ଜଗତରେ    ଡାକିଲେ ନଶୁଣ କର୍ଣ୍ଣରେ
ଡରିଲ କି ମୋହର ବିପଦ ଦେଖି ଘୋର
ତେଣୁ ବା ନ ଶୁଣୁଛ ବାରେ ହେ ମହାପ୍ରଭୁ ।। ୧୩ ।।

ଢାଳେ ତୁମ୍ଭ ବାହାରେ ଅଛୁକେ ଜଗତରେ
କା ଆଗେ ଜଣାଇବି ଆଉ
ଢାଳେ ବିପଦାର୍ଣ୍ଣବେ ଭାସୁଛି ଭୃତ୍ୟ ଏବେ
ତୁମ୍ଭ ପରସ୍ତେ ପ୍ରଭୁ ଥାଉଁ ହେ
ମହାପ୍ରଭୁ
ତମାଳ ପ୍ରାୟେ ମୋ ଉପର    ଢାଳେ ନମଣ ଚକ୍ରଧର
ତଳ ନଯାଉ ଜୀବ ଦେଇ କରୁଣା ନାବ
ଉଦ୍ଧରି ଧର ବିଶ୍ୱମ୍ଭରହେ ମହାପ୍ରଭୁ ।। ୧୪ ।।

ଆହେ ହେ ମହାବାହୁ ବିପଦ ଚନ୍ଦ୍ର ରାହୁ
ଆଜ୍ଞା ଯେ ଦେଇଛ ଶ୍ରୀମୁଖେ
ଆରତଜନ ହେଲେ ଆରତରେ ଡାକିଲେ
ମୁଁ ତାହା ନସହଇ ରେଖେ ହେ
ମହାପ୍ରଭୁ
ଆଉ ଆରତ ମୋହପୁରେ    ଅଛୁକେ ବ୍ରହ୍ମାଣ୍ଡ ଭିତରେ
ଆରତ ତ୍ରାଣ ତାହା ଜାଣ ହେ ଚଉବାହା
ପ୍ରତ୍ୟୟ ନାହିଁ ମୋ ମନରେ ହେ ମହାପ୍ରଭୁ ।। ୧୫ ।।

ତୁମ୍ଭେ ତ୍ରିତାପହର ତ୍ରିଭୁବନ ଈଶ୍ୱର
ଆରତ ଜନ ନିସ୍ତାରଣ
ତେଣୁକରି ମୋହର ଭରସା ନିରନ୍ତର
ଯେଣୁ ମୁଁ ପତିତ ଭୂଷଣ ହେ
ମହାପ୍ରଭୁ
ତଥାପି କରୁଣା ନିଧନ ଚାହିଁ ନକଲେ ଦୀନଜନ
ତେଣୁ ତୁମ୍ଭର ଦୀନବନ୍ଧୁ ନାମ କେତନ
ତେଜ ଏଣିକି ତ୍ରିଭୁବନ ହେ ମହାପ୍ରଭୁ ।। ୧୬ ।।

ଅସ୍ଥି ହୋଇଛି ମନ ଯେହ୍ନେ ବିଜୁଳି ଘନ
ନଳମାଦଳ ବନ ପ୍ରାୟ
ଥିଲି ଯେଉଁ ପ୍ରଭୁଙ୍କୁ ଆଶା ଉଦ୍ଧରିବାକୁ
ଦେଖିଣ ପ୍ରଭୁଙ୍କୁ ନିର୍ଦ୍ଦୟ ହେ
ମହାପ୍ରଭୁ
ସ୍ଥଳେ କେ ଅଛି ଜଗତରେ ଅଥବା କେ କରିବ ମୋରେ
ସୃଷ୍ଟି ଆଦି ପ୍ରଳୟେ ଯାହା ଆଜ୍ଞାରେ ହୁଏ
ସେ ପ୍ରଭୁ ନରଖିଲେ ଟାଳେହେ ମହାପ୍ରଭୁ ।। ୧୭ ।।

ଦୟା ସାଗର ବୋଲି ଦମ୍ଭ ଚିତ୍ତେ ଭଜିଲି
ଅମ୍ବୁଜ ଚରଣେ ତୁମ୍ଭର
ଦେଲନାହିଁ ବିବୁଧ ପତି ପଦ ବିଶୁଦ୍ଧ
ମୋ କର୍ମେ ଦୟାହିଁ ଦୁସ୍ତର ହେ
ମହାପ୍ରଭୁ
ଦୀନବନ୍ଧୁ ନାମ ତୁମ୍ଭର ଦ୍ୱିସପ୍ତ ଲୋକରେ ବିସ୍ତାର
ଦେଖୁ ଦେଖୁ ଦୁର୍ଗତି ହେଉଛି ଦଣ୍ଡ ଅତି
ଏ କଳଙ୍କ ଧୋଇବ କାହାର ହେ ମହାପ୍ରଭୁ ।। ୧୮ ।।

---

ତ୍ରିତାପ — ଆଧିଦୈବିକ ଆଧିଭୌତିକ ଆଧ୍ୟାତ୍ମିକ
ଅମ୍ବୁଜ — ପଦ୍ମ

ଧରିଛୁ ଏହି ସୁଖ ମନେ ହେ ପଦ୍ମମୁଖ
ଅଭୟ ପଞ୍ଜରେ ପଶିଲେ
ଧରି ଦାରୁଣ ମୂର୍ତ୍ତି ହୋଇ ସନ୍ତୋଷ ଅତି
ବିସମ ବିପଦ ଗ୍ରାସିଲେ ହେ
ମହାପ୍ରଭୁ
ଧରି ଯାହା ନାମ ମନରେ, ଧ୍ରୁବ ପ୍ରହ୍ଲାଦ ନିସ୍ତରିଲେ
ଧରି ଏହୁ ଭରସା ପତିତ ପ୍ରତି ଆଶା
କରିଛୁ ଉଜନା ବାସରେ ହେ ମହାପ୍ରଭୁ ॥ ୧୯ ॥

ନିଗୃଢ଼ ସଙ୍କଟକୁ ପେଶି ମୁଁ ଦର୍ଶନକୁ
ଏବେ କି କାରଣେ ନପେଶ
ନିଶ୍ଚେ ମୋରଷ ନାଶ ଗଲେହେ ହୃଷୀକେଶ
ଏଥିକି ହୋଇବ ପୌରୁଷ ହେ
ମହାପ୍ରଭୁ
ନ ସହି ଆରତ 'ବିଳମ୍ବ ନିସ୍ତାରିଛ 'ନୃପ କଦମ୍ବ
ନିଧନ ସମୟରେ ମୋରକ୍ଷ ଜନଠାରେ
ଏବେ କି କାରଣେ ବିଳମ୍ବ ହେ ମହାପ୍ରଭୁ ॥ ୨୦ ॥

ପରିହର ସକଳ ଆଶା ହେ ଆଦିମୂଳ
ପଶିଛୁ ଶରଣ ତୁମ୍ଭଲେ
ପ୍ରଭୂତ ଅବଗୁଣ କରି ଦେଉଛ ଘୋର
ବିପଦ ସଙ୍କଟ ମୁଖରେ ହେ
ମହାପ୍ରଭୁ
ପରାପର ତୁମ୍ଭର ନାହିଁ ପରମ ଦୟାଳୁ ଗୋସାଇଁ
ପତିତ ଗତିହୋଇ ପତିତ ଜନଠାଇଁ
ଏଡ଼େ ନିର୍ଦ୍ଦୟ କାହିଁପାଇଁ ହେ ମହାପ୍ରଭୁ ॥ ୨୧ ॥

ଫେଡ଼ କହିବ କେତେ ଭରସା ଅଛି ଯେତେ
ତୁମ୍ଭ ଶ୍ରୀଚରଣେ ମୋହର
ଫୁଲ୍ଲେନ୍ଦୀବରେକ୍ଷଣ ତୁମ୍ଭେତ ଚାହାଁଜାଣ
ଜାଣି କରୁଛ କମା ଦୂର ହେ
ମହାପ୍ରଭୁ
ଫନ୍ଦା ମୁଁ କରୁଛି ତୁମ୍ଭଙ୍କୁ ଫାନ୍ଦ ଦୁଷ୍ଟରୁ ତରିବାକୁ
ଫଣୀ ଶୟନ ଧନ ବାନ୍ଧବ ହୋଇ ଭିନ୍ନ
ନକର ମୀରକ୍ଷ ଜନକୁ ହେ ମହାପ୍ରଭୁ ॥ ୨୨ ॥

ବନଜକର ଯାନଚରଣ ବିଲୋକନ
କରି ପ୍ରମୋଦ ହୋଇଥାଇଁ
ବିଷମ ସମୟରେ ମୋହ ପକ୍ଷ ପାତରେ
ପ୍ରତିକାର କରିବା ପାଇଁ ହେ
ମହାପ୍ରଭୁ
ବିଷମ ସଙ୍କଟ ପଡ଼ିଲା ବାରେ କି ଚକ୍ର ନ ଭେଦିଲା
ବିନାଶିବାରୁ ଗାଢ଼ ବିପତ୍ତି ମାନ ଦାଢ଼
ଚକ୍ର କି ବକ୍ଷକୁ ଭେଦିଲା ହେ ମହାପ୍ରଭୁ ॥ ୨୩ ॥

ଭୂମିଶ୍ୱର ହରଣେ ପଞ୍ଚ ନସ୍ତାରଣେ
ଭକ୍ତଙ୍କୁ ଉଦ୍ଧାରିବା ପାଇଁ
ଶିବେ ମୀଳ କନ୍ଦରେ ବଜେ କରିଛ କରେ
କମ୍ବୁ ଚକ୍ର ଭୂଷିତ ହୋଇ ହେ
ମହାପ୍ରଭୁ
ଭକ୍ତ ବତ୍ସଳ ତୁମ୍ଭ ବାନା ଭବଭୟକୁ ବଜ୍ରସେନ୍ଧ।
ଭବ ସାଗରେ ଯେବେ ଭକ୍ତ ଭାସିବ ଏବେ
ସେ କନ୍ଦା ତୁମ୍ଭଙ୍କୁହିଁ ସିନାହେ ମହାପ୍ରଭୁ ॥ ୨୪ ॥

---

ଫୁଲେନ୍ଦୀବରେକ୍ଷଣ—ପ୍ରସ୍ଫୁଟିତ ନୀଳକଇଁଭଳି ଆଖି ଯାହାଙ୍କର
ଫଣୀଶୟନ—ଅନନ୍ତ ଶୟନ ଏପରି କୃଷ୍ଣ
ବନଜ କର ଯାନ ଚରଣ —ପଦ୍ମପାଦ ବିଶିଷ୍ଟ ପ୍ରଭୁ ଭଗବାନ ବିଷ୍ଣୁ

ମହାପ୍ରଭୁ ଅନ୍ତର କରିଲେ ହେ ମୋହର
ତୁମ୍ଭ ବହିନେ ଅନ୍ୟ ନାହିଁ
ମୃଗଧୃତ ଚକୋର ଗ୍ଲତକ ଜଳଧର
ମୀନ ଜୀବନ ପ୍ରାପ୍ତ ହୋଇହେ
ମହାପ୍ରଭୁ
ମୋରେ ଯେବେ ଦୟା ନୋହିବ ମୋ ଜୀବ କ୍ଷଣେ ନ ରହିବ
ସତ କରି କହୁଅଛୁହେ ମହାବାହୁ
ସବୁରି ସଂଶୟ ରହିବହେ ମହାପ୍ରଭୁ ॥ ୨୫ ॥

ଯାହାନାମ ସ୍ମରଣେ ମରଣ ଭୟ କ୍ଷଣେ
ନୋହେ ଦଣ୍ଡଧର ଦଣ୍ଡକୁ
ଜଗତ ନିସ୍ତାରଣ ଥାଇଁ ଏଡେ ଦାରୁଣ
ହୋଇଲ ବିପତ୍ତି କାଳକୁ ହେ
ମହାପ୍ରଭୁ
ଜୀବ ଥିବାର ବଡ଼ସୁଖ ଜୀଇଁବା ସମ ନାହିଁ ଦୁଃଖ
ଯାହା ସାମନ୍ତ ଗୃହବର୍ଗରେ ଅଧିକାଶ
ତାହା ସେବକର ଦୁଃଖ ହେ ମହାପ୍ରଭୁ ॥ ୨୬ ॥

ରାଜୀବ ପଦଯାର ପାଷାଣ କରେ ନର
ଶୋକ କଳଶ ନିବାରଣ
ରଙ୍କପ୍ରାପ୍ତ ତାହାର ପରିଗ୍ରହହେ ବର
ଏ ନିକ ପ୍ରଭୁଙ୍କୁ ଭୂଷଣ ହେ
ମହାପ୍ରଭୁ
ରମା ଯାହାର ପ୍ରିୟବନ୍ତି ରସାଦ୍ଧ ତ୍ରୈଲୋକ୍ୟର ପତି
ରତିଏ ତ ସୁନ୍ଦର ନୋହିଲ ମୋ ଉତ୍ତର
ଏମନ୍ତ ପ୍ରଭୁର ଏ ରୀତି ହେ ମହାପ୍ରଭୁ ॥ ୨୭ ॥

---

ଜୀବନ — ଜଳ
ରାଜୀବ — ପଦ୍ମ

ଲଲାଟର ଲିଖନ କେ କରିପାରେ ଆନ
ଏମନ୍ତ ଆଜ୍ଞାଦେଉ ଅବା
ଲଭି ତୁମ୍ଭଙ୍କୁ ପତି ପଣେ ହେ ରମାପତି
କର୍ମକୁ କାହିଁ ଆଦରିବା ହେ
ମହାପ୍ରଭୁ
ଲୀଳା ମାତ୍ରକେ ଏ ସଂସାର   ଲୂତାପ୍ରାୟେ କର ସଂହାର
ଲୋକ କର୍ମକୁ ଏତୁ କଥା ହେ ମହାବାହୁ
ଏହାକୁ ପଚାର ମନରହେ ମହାପ୍ରଭୁ ॥ ୨୮ ॥

ବିଚାର କରି ଗୁରୁ ପୁତ୍ର ଶମନ ପୁରୁ
ଇଚ୍ଛିତ ମାତ୍ରକେ ଆଣିଲ
ବଂଶକର ଅମର ବର କରଣ ଦୂର
ବିନାଶି ବାଧକ କରିଲହେ
ମହାପ୍ରଭୁ
ବିଷମ ସଙ୍କଟ ଉଦ୍ଧାର   ବିଶ୍ୱ ସଂସାରୁ ପାରକର
ବିଶେଷେ ବାଞ୍ଛାନିଧି ବାଞ୍ଛାକର ପ୍ରସିଦ୍ଧି
ବୋଲି ଅନେକ ବାଞ୍ଛା ମୋର ହେ ମହାପ୍ରଭୁ ॥ ୨୯ ॥

ସେବକ ହୋଇକରି ପ୍ରଭୁ କୋପକୁ ଡରି
ଭରସା ସେବେ ନକରିବି
ଶୁଣି ମହିମା ମେରୁ ଏ ଦୁଃଖ ଜଳଧିରୁ
କେମନ୍ତ ପ୍ରକାରେ ତରିବି ହେ
ମହାପ୍ରଭୁ
ସର୍ବଜ୍ଞ ପୁରୁଷ ଗୋସାଇଁ,   ସକଳ ଜୀବ ହୃଦେ ଥାଇ
ସେବକ ଦୁଃଖ ନଜାଣି ଦୟା କଲେ ପୁଣି
ଆଉ ଜାଣନ୍ତା ଅଛିକେହି ହେ ମହାପ୍ରଭୁ ॥ ୩୦ ॥

---

ଲୂତା — ବୁଢ଼ିଆଣି
ବଂଶକର — ରାବଣ
ଅମର — ଦେବତା

ଶେଷେ ବିରଞ୍ଚି ଶିବ ସୁରଆଦି ବାସବ
ଶୁକ ସନକ ସନାତନ
ସେବା ଯେଉଁ ପଦ୍ମରେ କୋଟି ଅଂଶ ମୁଁ ଲକ୍ଷରେ
ଦାସପଣେ କି ଭଜନ ହେ
ମହାପ୍ରଭୁ
ସବୁ ଭରସା ଅଛି ଏଣୁ, ଶରଣ ନିସ୍ତାରଣ ଯେଣୁ
ଶୁଣୁଅଛି ଆହୁରି କଥାଏ ଚିନ୍ତ କରି
ସୁମେରୁ ସମ କରି ରେଣୁହେ ମହାପ୍ରଭୁ ॥ ୩୧ ॥

ଶୁଣି ତୁମ୍ଭ ଭରସା ବିଶ୍ୱାସ ନାବେ ଆଶା
ନିବେଶି ତବ ଶ୍ରୀଚରଣେ
ସୁଖ ସାଗର ହୋଇ ଦୁଃଖ ସାଗରେ ନେଇ
ଖେଳ ଦେଉଛ ଅକାରଣେ ହେ
ମହାପ୍ରଭୁ
ସେବୁଛି ତୁମ୍ଭ ପାଦ ଦୁଇ, ଶୋକ ସିନ୍ଧୁ ତରିବା ପାଇଁ
ଶ୍ରୀବତ୍ସ ହେ ଲାଞ୍ଛନ କର ପ୍ରୀତି କାରଣ
କରୁଣା କଟାକ୍ଷେ ଅନାଇହେ ମହାପ୍ରଭୁ ॥ ୩୨ ॥

ହୃଦୟେ ଅଛି ମୋର ଏ ସଂସାର ସାଗର
ତରିବ ତୁମ୍ଭ 'ମହିମାରୁ
ହେଉଅଛି ସଂଶୟେ ଯେଣୁ ମୋର ବିଷୟେ
ଅକରୁଣା ମହିମା ମେରୁ ହେ
ମହାପ୍ରଭୁ
ହୋଇଲା କର୍ମ ମୋ ବଇରି, ହୃଦୟ ଦହଇ ମୋହରି
ହେତୁ କର୍ମ ତୁମ୍ଭର ତେଣୁକରି ଅଦମ୍ୟେ
ଗୁହାରି କଲି ଦଇତାରିହେ ମହାପ୍ରଭୁ ॥ ୩୩ ॥

---

ଶେଷ — ଶେଷଦେବ, ଅନନ୍ତଦେବ
ବିରଞ୍ଚି — ବ୍ରହ୍ମା
ଶିବ — ମହାଦେବ
ବାସବ — ଦେବତା

କ୍ଷମା ସାଗର ବୋଲି ତୁମ୍ଭରେ ଦୀନ ମୁହିଁ
ଜଣାଉ ଅଛି ଏମ୍ଭୁ ବାରେ
କ୍ଷଣେହେଁ ମୋହ ମନ ନ ରହେ ତୁମ୍ଭ ଧ୍ୟାନ
ଗୁଣ ଗାୟନ ମାନଙ୍କରେ ହେ
ମହାପ୍ରଭୁ
କ୍ଷୋଭ ଯେବେ ମନେ ନୁଅନ୍ତା କ୍ଷଣେ ହେ ନାମ କେ ପାରନ୍ତା
ତୁର ଦୀନ ପାମର କୃଷ୍ଣ କପାଇଁ ତୁର
ଭବ ସାଗରକୁ ତରନ୍ତାହେ ମହାପ୍ରଭୁ ॥ ୩୪ ।



# ମାଘ ମାହାତ୍ମ୍ୟ

## ପ୍ରଥମ ଅଧ୍ୟାୟ

ଜୟ ହେ ପ୍ରଭୁ ଭଗବାନ । ଭକ୍ତଙ୍କର ଫେଡ଼ ଅଭିମାନ ॥
ମାୟା ସଂସାରେ ଯାର ଲୀଳା । ଯା ନାମ ଭବସିନ୍ଧୁ ଭେଳା ॥
ଶ୍ରୀମୁଖ କୋଟି ସୂର୍ଯ୍ୟ ପ୍ରାୟେ । ଶିରେ ସେବତି ଚୂଳ ଶୋହେ ॥
ମୁକୁଟ କିରୀଟ କୁଣ୍ଡଳ । ଦିଶଇ ଅତ୍ୟନ୍ତ ଉଜ୍ଜ୍ୱଳ ॥
ଘଟଣ ଲଲାଟ ସୁନ୍ଦର । କିଅବା ଦେବା ପଟାନ୍ତର ॥
ବିକଚ କମଳ ନୟନ । ଦର୍ଶନେ ଦୁରିତ ଦହନ ॥
ସୁସଞ୍ଚ ନାସା ମନୋହର । ବିମ୍ବକୁ ନିନ୍ଦଇ ଅଧର ॥
କଣ୍ଠେ ଲମ୍ବଇ ଧଣ୍ଡାମାଳ । ପଦକ ଶୋହେ ବକ୍ଷସ୍ଥଳ ॥
ଚନ୍ଦନେ ଜରଜର ହିଆ । ଜଗତ ଜନ ମନମୋହା ॥
ଆଜାନୁ ଲମ୍ବେ ଭୁଜଦଣ୍ଡ । ହୃଦରେ ପୂରିଛି ବ୍ରହ୍ମାଣ୍ଡ ॥
ପୀତ ବସନ ପରିଧାନ । ସୁବର୍ଣ୍ଣ ବେଣୁଏର ଶୋଭନ ॥
ଚକା ବଇଠି ପରେ ଶୋଭା । ତହିଁକ କି ଉପମା ଦେବା ॥
ସଙ୍ଗତେ ଭୂଇ ଭଗ୍ନୀ ଦେନ । ବେଗ ବଳାସେ ବଜେ ତନ ॥
ଲକ୍ଷ୍ମୀ ସମ୍ମୁଖେ ସରସ୍ୱତୀ । ଛାମୁରେ ଉଭା ଖଗପତି ॥
ଦେବତାମାନେ ପ୍ରତିଦିନ । ଆସିଣ କରନ୍ତି ଦର୍ଶନ ॥
ସଂସାର ହାନ ଲଭ କଥା । ତାଙ୍କୁଟି ଲାଗଇ ସର୍ବଥା ॥
ଦେବତାମାନେ ଅନୁକ୍ଷଣେ । ସେବନ୍ତି ଶ୍ରୀକୃଷ୍ଣ ଚରଣେ ॥
ଯେ ଯାହା ସେବାରେ ଖଟନ୍ତି । ଆଳଟ ଚାମର ଢାଳନ୍ତି ॥
ଶରଣ ବତ୍ସଳ ମୁରାରି । ଭକତ ଜନେ ଦୟାକରି ॥
ଆପଣେ ବେନି ବାହୁ ତୋଳି । ଶରଣ ରଖନ୍ତି ସମ୍ଭାଳି ॥
ଶୁଣ ହେ ସାଧୁଜନ ମାନେ । ଶରଣ ପଶ ସେ ଚରଣେ ॥
ସାହା କରିବେ ଜଗନ୍ନାଥ । ଭଣେ ନୃସିଂହ ଦାସ ସୁତ ॥

---

ପଟାନ୍ତର — ତୁଳନା    ଭବ — ସଂସାର

ପାମର କୃଷ୍ଣ ଦାସ ଭଣି । କରୁଣା କଲେ ଚକ୍ରପାଣି ॥
ଆଜ୍ଞା ଯେ ଦେଲେ ପରଂବ୍ରହ୍ମ । [illegible] ମହାତମ ॥
ଶୁଣ ସୁଜନେ ଏକମନେ । ବସନ୍ତି ଦ୍ୱାରକା ଭୁବନେ ॥
ପ୍ରଭାତୁ ଉଠି ଦସ୍ତାନ୍ଧି । ସାରିଲେ ନିତ୍ୟକର୍ମ ବିଧି ॥
ବଳାପୁ ତୋଠା ଜଗଣ୍ଡରେ । ଉଦ୍ଧବ ଅକ୍ରୂର ସଙ୍ଗରେ ॥
ଆଜ ସେଠାରେ କେହ୍ନନାହିଁ । ପଲଙ୍କେ ବିଜେ ଯଦୁସାଇଁ ॥
ଅବକାଶର ବେଳଜାଣି । ଉଦ୍ଧବ ଯୋଡ଼ି ବେନିପାଣି ॥
ବୋଲଇ କୃଷ୍ଣ ମୁଖ ଚାହିଁ । ଶୁଣିମା କମଳାର ସାଇଁ ॥
କଥାଏ ପଚାରିବି ସ୍ୱାମୀ । ଫେଡ଼ି କହିବା ଅନ୍ତର୍ଯ୍ୟାମୀ ॥
ମଥୁରାପୁରେ ଥିବାବେଳେ । ଜରାସନ୍ଧର ଧାଡ଼ିବେଳେ ॥
ଲକ୍ଷେ ନୃପତିଙ୍କୁ ଘେନିଣ । ବେଢ଼ିଲା ଜରାସନ୍ଧ ରଣ ॥
ତୁମ୍ଭେ ଯେ ରାମକୃଷ୍ଣ ବେନି । ଯୁଝିଲ କରେ ଶସ୍ତ୍ରଘେନି ॥
କୋପରେ ଜରାସନ୍ଧ ବୀର । ବହୁତ କଲ୍କ ସମର ॥
ତାହାକୁ ପ୍ରାଣେ ନ ସଂହାରି । ତୁମ୍ଭେ ଯୁଝିଲ ମାୟାକରି ॥
ଦେଖି ଭାଳଇ ଉଗ୍ରସେନ । ଭୟେ ବିକଳ ସର୍ବଜନ ॥
ଆରତେ ତୋତେ ସୁମରନ୍ତି । ଡାକନ୍ତି ରଖ ହେ ଶ୍ରୀପତି ॥
ଆତଙ୍କନାଶନ ତୋ ବାନା । ବିପତ୍ତିକାଳେ ବଜ୍ରସେହ୍ନା ॥
ତାହାଙ୍କ ହୃଦ କଥାଜାଣି । ଗରୁଡ଼ ସୁମରିଲ ପୁଣି ॥
ଗରୁଡ଼ ଆଇଲା ତକ୍ଷଣେ । ନମିଲା ତୁମ୍ଭ ଶ୍ରୀଚରଣେ ॥
ତୁମ୍ଭେ ବୋଇଲ ଗରୁଡ଼କୁ ॥ ଶତ୍ରୁ ଯେ ବେଢ଼ିଛି ଆମ୍ଭଙ୍କୁ ॥
ଏସର୍ବ ପିଠିରେ ବସାଅ । ଗଗନ ମାର୍ଗେ ଚଳିଯାଅ ॥
ଗନ୍ଧମାର୍ଦ୍ଦନ ପର୍ବତେ । ନେଇଣ ଥୋଇବ ଗୁପତେ ॥
ତୁମ୍ଭ ଆଜ୍ଞାରେ ଗୋପିନାଥ । ପିଠିରେ ବସାଇ ତୁରିତ ॥
ଆକାଶ ମାର୍ଗେ ଗଲେ ଚଳି । ଗନ୍ଧମାର୍ଦ୍ଦନେ ଯାଇ ମିଳି ॥
ସମସ୍ତ ଲୋକଙ୍କୁ ଲୁଚାଇ । ଆଇଲା ଅତି ବେଗ ହୋଇ ॥
ଏଥି ଉତ୍ତରେ ତୁମ୍ଭେ ନାଥ । ଚଢ଼ିଣ ନନ୍ଦିଘୋଷ ରଥ ॥
ବଳରାମ ହିଁ ତାଳଧ୍ୱଜେ । ତକ୍ଷଣେ ତୁମ୍ଭ ସଙ୍ଗେ ବିଜେ ॥

---

ଚକ୍ରପାଣି — ବିଷ୍ଣୁ    ସମର — ଯୁଦ୍ଧ
ତୁରିତ — ଶୀଘ୍ର    ନନ୍ଦିଘୋଷ - ଜଗନ୍ନାଥଙ୍କ ରଥ

କରଣ ଯୁଦ୍ଧରେ ମଜ୍ଜିଲେ । ଭଲ ମନ୍ଦ ହିଁ ନ ବୁଝିଲେ ॥
ଗର୍ଭମାଧ୍ୟେ ପ୍ରାଣୀଯେତେ । ରହିଲେ କର୍ମର ଆପୁତେ ॥
ବହୁତ କଷ୍ଟ ସେ ସହିଲେ । କର୍ମ ଆଦର ବନ ନେଲେ ॥
ଏବେତ ଶୀତ ପ୍ରବେଶିଲା । ତାହାଙ୍କ କଷ୍ଟ ଯେ ବଢ଼ିଲା ॥
ସ୍ୱଭାବେ ହିମ ଋତୁ ଏହି । ଶୀତେ କମ୍ପଇ ସର୍ବଦେହୀ ॥
ନାସା ଶ୍ରବଣ ପାଦ ପାଣି । ଜଡ଼ିଲା ହିମପ୍ରାୟେ ପୁଣି ॥
ତେଣୁ ମୁଁ ପଚାରଇ ଏବେ । ଏଯେତେ ଅଛନ୍ତି ମାନବେ ॥
ଥୋକେ ଧର୍ମକୁ ବିଚାରନ୍ତି । ମାଘ ସ୍ନାହାନ ଯେ କରନ୍ତି ॥
ବିଶେଷ ମାଘମାସ ଜାଡ଼ । ଶୀତରେ କମ୍ପୁଥାଇ ହାଡ଼ ॥
କେମନ୍ତେ କରନ୍ତି ସ୍ନାହାନ । ଏ ବଡ଼ କଷ୍ଟ କଥାମାନ ॥
ଯେ ଲୋକ ଏବ୍ରତ ପାଳିବ । କିଭାବେ ଧର୍ମ ଆଚରିବ ॥
କି ଦ୍ରବ୍ୟ ଭୋଜନ କରିବ । ଆନ ବା କାହାକୁ ଛୁଇଁବ ॥
ତହିଁର କହ କେତେ ଫଳ । ଶୁଣିମା ପ୍ରଭୁ ଆଦିମୂଳ ॥

## ଶ୍ରୀ ଭଗବାନୁବାଚ

ସେକଥା କହିବା ବୁଝାଇ । ଶୁଣ ତୁ ଏକମନ ହୋଇ ॥
ସ୍ନାନର ବିଧିମାନ ଯେତେ । ସତ୍ୟେ କହିବା ତୋ ଅଗ୍ରତେ ॥
ସଂସାରେ ଛନ୍ତି ଯେତେଲୋକ । ଯେ ଅବା ଅଟନ୍ତି ଧାର୍ମିକ ॥
ଯେପ୍ରାଣୀ ସେବନ୍ତ କରିବ । ଧର୍ମ କଥାରେ ମନଥିବ ॥
ଏକାନ୍ତେ ବିଚାରିବା ବସି । ହୋଇଲା ପୁଣ୍ୟକାଳ ଆସି ॥
ମକର ସ୍ନାହାନ କରିବ । ସକଳ ପାପୁ ନିସ୍ତରିବ ॥
ଶ୍ରୀହରି କରୁଣା ହୋଇଲେ । ଏଧର୍ମ ଆଚରିବ ଭଲେ ॥
ଏମନ୍ତ ମନରେ ବିଚାରି । ହୃଦ କମଳ ଦୃଢ଼କରି ॥
ଜାଣିବ ଧନୁମାସ ଗଲେ । ମକର ସଙ୍କ୍ରାନ୍ତି ହେଲେ ॥
ନୋହିଲେ ପୂର୍ଣ୍ଣମୀରଠାରୁ । କେଅବା ମାଘସ୍ନାନ କରୁ ॥
ରଜନୀ ପ୍ରହରେକ ଥିବ । ତକ୍ଷଣେ ଶଯ୍ୟାରୁ ଉଠିବ ॥
ନିଦ୍ରା ଅଳସ ଭାବତେଜ । ମୋପାଦ ଅନୁକ୍ଷଣେ ଭଜ ॥

---

ତାଳଧ୍ୱଜ — ବଳରାମଙ୍କ ରଥ
ରଜନୀ — ରାତ୍ରି
ନିସ୍ତରିବ — ପାରିହେବ
ଧନୁମାସ — ମାଘମାସ

ମୋ ନାମ କରିବ ଗାୟନ । ଚଞ୍ଚଳ ନକରିବ ମନ ॥
ଗଗନେ ତାରାଗଣ ଥିବ । କୁକୁଟ ପକ୍ଷୀ ରାବଦେବ ॥
ରାତ୍ର ଯେ ବେନିଦଣ୍ଡ ଥାଉଁ । କାକପକ୍ଷୀ ଡାକ ନଦେଉଁ ॥
ସଦନୁ ବାହାର ହୋଇବ । ଶୀତକୁ ଭୟ ନ କରିବ ॥
ଚଳିବ ମନର ଉଛାଟେ । ଯାଇଁ ମିଳିବ ଜଳଘାଟେ ॥
ଶଉଚ ନିତ୍ୟକର୍ମ କରି । ଜଳେ ପଶି ମନ୍ତ୍ର ଉଚାରି ॥
ମାଧବ ମାଧବ ବୋଲିଣ । ଶୀତକୁ ନଡରି ଯାଇଣ ॥
ପଖାଳି ନିତ୍ତ ବେଳ ମଥା । ସ୍ନାହାନ ନକରିବ ବୃଥା ॥
ଓଦା ବସନେ ତହୁଁ ଆସି । ଅନଳ ପାଖରେ ନବସି ॥
ପିନ୍ଧିବ ଶୁଦ୍ଧ ଶୁକ୍ଳ ବାସ । ଦୋଷଡ଼ା କର ପ୍ରବେବଶ ॥
ବସି ଶୁଦ୍ଧ ଆସନେ ଗୋଟି । ହରି ମନ୍ଦିର ଚିତା କାଟି ॥
ଦରିଦ୍ର ଭିକ୍ଷୁକ ଜନଙ୍କୁ । ନିରାଶ ନକରିବ ତାଙ୍କୁ ॥
ଶକ୍ତ ଅନୁକ୍ରମରେ ଦେବ । ନଥିଲେ ଆଶ୍ୱାସି କହିବ ॥
କର୍ଣ୍ଣେ ଶୁଣିବ ମୋ ଚରିତ । ଶରୀର ହୋଇବ ପବିତ ॥
ସତ୍ୟ ଭାଷିବ ପ୍ରତିଦିନ । ନ କହିବ ମିଥ୍ୟା ବଚନ ॥
ମିଥ୍ୟା କହିଲେ ଧର୍ମହାନି । ତାହାକୁ ବୋଲିବ ଅଜ୍ଞାନୀ ॥
ଏଣୁଟି ନ କହିବ ମିଥ୍ୟା । ନିତ୍ୟେ ଭାଷିବ ସତ୍ୟକଥା ॥
ଉଆ ତଣ୍ଡୁଳ ଏକବେଳେ । ଭୁଞ୍ଜିବ ରବି ଅସ୍ତକାଳେ ॥
ତିଉଣ କରି ନିରାମିଷ । ତଳେ ନ ଛୁଇଁବ ଆମିଷ ॥
ଆଉ ନ କରିବ ଭୋଜନ । କେତେକେ ହରିବ ସେବନ ॥
କୁଙ୍କୁମ ତୈଳ ନଘେନିବ । କଟୁ କଥାହିଁ ନ ଶୁଣିବ ॥
ଆଉ କଥାଏ ଥିବପାଳି । ଭଙ୍ଗିବ ନାହିଁ ବରକୋଳି ॥
ଖଜୁରି ମୂଳା ଆଦି ତ୍ୟାଗି । ଏତେ ପଦାର୍ଥ ଥିବ ଜଗି ॥
ମାସକ ଏ ପ୍ରକାର କଲେ । ଧର୍ମ ପ୍ରାପତ ହେବ ଭଲେ ॥
ମାଘ ସ୍ନାହାନ ଧର୍ମପାଇ । ଏଭବ ସାଗରୁ ତରଇ ॥
ମଇଷ ଦ୍ରୋହ କରିଥିଲେ । ସେ ଦୋଷ କ୍ଷୟ ଯାଇ ଭଲେ ॥
ଅନ୍ତେ ଲଭଇ ସଦଗତି । ଅଶେଷ ଦୁରିତ ଖଣ୍ଡନ୍ତି ॥

---

ସଦନ — ଘର
ଶୁକ୍ଳ — ଧଳା
ବାସ — ବସ୍ତ୍ର
ଭାଷିବ — କହିବ
ଅନଳ — ନିଆଁ

ମର୍ତ୍ତ୍ୟ ପୁରରୁ ତରିଯାଇ । ଯମ ଯାତନା ନ ଲଗଇ ॥
ବୈକୁଣ୍ଠ ଭୁବନେ ବସଇ । ଅମୃତ ଭୋଗ ସେ କରଇ ॥
ଯେଉଁ କଥାକୁ କରେ ଇଚ୍ଛା । ଆମ୍ଭେ ପୂରାଉ ମନୋବାଞ୍ଛା ॥
ଶୁଣ ଉଦ୍ଧବ ଏକଚିତ୍ତେ । ତୁ ଯାହା ପଚାରିଲୁ ମୋତେ ॥
ମାଘ ସ୍ନାହାନ ଯେତେ ପୁଣ୍ୟ । କହିଲି ସକଳ ବିଧାନ ॥
ଶୁଣି ଉଦ୍ଧବ ତୋଷ ହୋଇ । କୃଷ୍ଣର ପାଦ ଧରି ଶୋଇ ॥
ସୁଜନେ ତର ଏହା ଶୁଣି । ନୃସିଂହ ଦାସ ସୁତ ଭଣି ॥
ବୋଲଇ ଘନକୃଷ୍ଣ ଦାସ । ସୁଜନେ ହରି ନାମ ଘୋଷ ॥
ସକଳ ପାପରୁ ନିସ୍ତର । ବିଷୟୁ ଛନ୍ଦ ଦୂରକର ॥
ପୁତ୍ର ଭାରିଯା ପ୍ରାଣଅର୍ଥ । ଏସବୁ ଅଟଇ ବିଅର୍ଥ ॥
ଯେସନେ ଦେଖଇ ସ୍ୱପନେ । ପୁଣ ନଥାଇ ନିଦ୍ରାଭଙ୍ଗେ ॥
ଏହି ପ୍ରକାରେ ଏ ସଂସାର । ମିଛକୁ ନ ଧର ମନର ॥
ଏଥକୁ ନକର ସେନେହ । ପାରିଲେ ତେଜ ମାୟାମୋହ ॥
କୃଷ୍ଣ ଚରଣେ ଦିଅ ମତି । ହେଲେ ତରିବ ଭବଖିତି ॥
ଯାହା କରିବେ ପୀତବାସ । ଭାବେ ଭଣିଲେ କୃଷ୍ଣଦାସ ॥
ପଣ୍ଡିତ ଜନେ ଏହା ଶୁଣ । ମୋ ଦୋଷ ନଧରିବ ପୁଣ ॥
ପୁରାଣ କଲି ଗୀତରସ । ଯେ ଆଜ୍ଞା ଦେଲେ ପୀତବାସ ॥
ତାହା ମୁଁ କଲିଁ ଲିଖନ । ସୁଜନେ ଦୋଷ ମୋ .ନଦେନ ॥
ଏ ମାଘ ମାହାତ୍ମ୍ୟର ବିଧି । ଉଦ୍ଧବେ କହେ ଦୟାନିଧି ॥
ଏଭାବେ ଉପାସନା କର । ତରିବ ଦୁସ୍ତର ସଂସାର ॥
ଏ ଅଧ୍ୟା ବିଶାଶିଏ ପଦ । ଉଦ୍ଧବେ କହିଲେ ମାଧବ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ମାଘସ୍ନାନ ଧର୍ମ କଥନେ ନାମ ପ୍ରଥମୋଽଧ୍ୟାୟ

---

ଦୁରିତ — ପାପ    ଯାତନା    ଦୁଃଖ
ବିଧି    ନିୟମ

# ଦ୍ୱିତୀୟ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

ବୋଲନ୍ତି ପୁରୁଷ ଉତ୍ତମ । କହିଲୁ ମାଘ ମହାତମ ॥
ଆବର ଶୁଣିବ କଥାଏ । ଯାହାଯେ କରନ୍ତି ଥୋକାଏ ॥
ଧର୍ମ ପାଳନା ନ କରନ୍ତି । ପରର ଫଳ ଗ୍ରେବବନ୍ତି ॥
ପରର ହିଂସା ମନେ ବହି । ପରେ ପ୍ରମାଦ ଚିନ୍ତୁଥାଇ ॥
ଏମନ୍ତ ଭାବେ ଯେଉଁନର । କଧର୍ମ ଅଟଇ ତାହାର ॥
କଅବା ବଡ଼ମା କରଣ । ମିଛରେ କରୁଥାଇ ଠାଣ ॥
ରାତ୍ର ପ୍ରହରେ ଥାଉଁ ଯାଇ । ମାଘ ସ୍ନାହାନ କରୁଥାଇ ॥
ଶୀତକୁ ନଥାଇ ସେ ଭୟେ । ବୁଡ଼ଇ ପ୍ରହରକ ଯାଏ ॥
ଏସନ ବୋଲି କହୁଥାଇ । ମିଛେହେଁ ପ୍ରାଣୀଙ୍କି ଭଣ୍ଡାଇ ॥
ମେମୂଢ଼ ନପାଳଇ କଚ୍ଛି । ଆମିଷ ପ୍ରତିଦିନ ଭକ୍ଷି ॥
ଦିନକେ ଅନ୍ନ ତିନିବେଳ । ସୁଖେଣ ଭୁଞ୍ଜଇ ଚଣ୍ଡାଳ ॥
ଅତି ଦାରୁଣ ତାର କାୟେ । ଦୟାଳୁ କଦାଚନ ନୋହେ ॥
ମଦନେ ଉନମତ୍ତ ହୋଇ । ଯୁବତୀ ସଙ୍ଗେ ମାତିଥାଇ ॥
କ୍ଷଣେ ନଛାଡ଼େ ସ୍ତ୍ରୀପାଶ । ନିତ୍ୟେ କରଇ ପ୍ରେମରସ ॥
ଉଠଇ ରାତ୍ର ପାହିବାରେ । ସ୍ନାହାନ କରଇ ଉଚ୍ଛୁରେ ॥
ଅଳପ ନୀର ଅଙ୍ଗେ ଦେଇ । ଆସଇ ଖରତର ହୋଇ ॥
ବସଇ ହୁତାଶନ ପାଶେ । ମୋନାମ ମୁଖରେ ନଘୋଷେ ॥
ରବି ଉଦୟ ହେବାଜାଣି । ଭକ୍ଷଇ ନାନା ଦ୍ରବ୍ୟଆଣି ॥
ମାଘ ସ୍ନାହାନ କରିବାର । ସମସ୍ତ ବିଫଳ ତାହାର ॥
ସେ ଯେ ଲଭଇ କୁସଧର୍ମ । ବିଅର୍ଥେ ଲଭୁଥାଇ ଶ୍ରମ ॥
ଥୋକେ ମୋ ନାମ ନ ଭଜନ୍ତି । ମକର ସ୍ନାହାନ କରନ୍ତି ॥
ଶୁଣନ୍ତି ଧର୍ମ ଶାସ୍ତ୍ରମାନ । ଜାଣନ୍ତି ସବୁ ପାପପୁଣ୍ୟ ॥
ତଥାପି ଟାଳ ନପାରନ୍ତି । ଅଧର୍ମ ପଥ ଆବୋରନ୍ତି ॥

---

ଆବର — ଆହୁରି ଭଣ୍ଡାଇ — ଠକାଇ
ମୂଢ଼ — ମୂର୍ଖ ଦାରୁଣ — ନିଷ୍ଠୁର ଖରତର ଶୀଘ୍ର

ହରନ୍ତି ପରସ୍ତ୍ରିଙ୍କ ଧନ । ଦଣ୍ଡିଆ ପଣେ ନ୍ୟନ୍ତ ଦିନ ॥
ତେଣୁ ସକଳ ଧର୍ମନାଶ । ସ୍ନାହାନ କଲେ ହେବ କସ ॥
ପ୍ରାଣୀ କେବଳ ଧର୍ମଆଶେ । ସ୍ନାହାନ କରେ ମାଘମାସେ ॥
ମୁଖରେ ସତ୍ୟ ନଭାଷଇ । ମିଥ୍ୟାରେ ପ୍ରବର୍ତ୍ତିଣ ଥାଇ ॥
କୁଙ୍କୁମ ତଇଳ ଚନ୍ଦନ । ପ୍ରତ୍ୟହ ଲେପଇ ଅଙ୍ଗେଣ ॥
ଭକ୍ଷଇ ବରକୋଳ ମୂଳା । ପାଳି ନପାରି କରେ ହେଳା ।
ନଢଇ ଶାସ୍ତ୍ର ଯେ ପୁରାଣ । ନ ବସେ ସାଧୁ ସଙ୍ଗତେଣ ॥
କରଇ ପାଷାଣ୍ଡ ଆଚାର । ନଥାଇ ଅନୁରାଗ ଯାର ॥
ଯେ ମାଘ ମାସେ ଧର୍ମ ଯେତେ । ସ୍ୱରୂପ କହିବାକ ତୋତେ ॥
ଆଉ କଥାଏ ଶୁଣ ଏବେ । ଯେବଣ କୃତ୍ୟ ହେଲା ପୂର୍ବେ ॥
ସୁରପତିର ଜ୍ୟେଷ୍ଠ ନାନ । ଅଟଇ ଜାଣ ଚିତ୍ରସେନ ॥
ଅପରିମିତ ତାର ବଳ । ଅଟଇ ତେଜେ ଅନର୍ଗଳ ॥
ଧାର୍ମିକ ସତ୍ୟବନ୍ତ ବୀର । ରୂପେ କି ଦେବା ପଟାନ୍ତର ॥
ଦିନେକ ବିଚାରଇ ମନ । କରିବି ମକର ସ୍ନାହାନ ॥
ଖଣ୍ଡିବ ସକଳ ଦୁରିତ । ଏଦେହ ହୋଇବ ମୁକତ ॥
ଏମନ୍ତେ ମନେ ବିଚାରଇ । ମକର ସ୍ନାନ କରୁଥାଇ ॥
ଏମନ୍ତେ ସୁଖେ ଗଲା ଦିନ । ଦିନକୁ ଦିନ ହେଲା ଜାଣ ॥
ଦିନେ ଏମନ୍ତ ପୂଣ କଲା । ଯାମିନୀ ପ୍ରଭାତୁ ଉଠିଲା ॥
ତଇଳ ମୁଣ୍ଡେ ଲଗାଇଣ । ଗଲାକ ସ୍ନାହାନ କରିଣ ॥
ସ୍ନାହାନ କରି ଅତିବେଗେ । ମିଳିଲା ମାଧବଙ୍କ ଆଗେ ॥
ପ୍ରତ୍ୟକ୍ଷେ ମାଧବଙ୍କୁ ଚାହିଁ । ଆନନ୍ଦେ ଦର୍ଶନ କରଇ ॥
ଦେଖି ମାଧବ କୋପକଲେ । ତକ୍ଷଣେ ତାକୁ ଶାପ ଦେଲେ ॥
ବୋଇଲେ ଅଜ୍ଞାନ ତୁ ଚୋର । ଦ୍ରୋହ ଅର୍ଜିଲୁରେ ପାମର ॥
ମକର ସ୍ନାନ କରିଥିଲୁ । ମୁଣ୍ଡରେ ତଇଳ ଘେନିଲୁ ॥
ଏବୁଦ୍ଧି କଲୁରେ କପାଇଁ । ଜ୍ଞାନ ଗୋଚର ତୋର ନାହିଁ ॥
ଏବେତୁ ବ୍ୟାଘ୍ର ରୂପ ହୁଅ । ବନସ୍ତେ ବୁଲି ମରୁଥାଅ ॥
ବ୍ୟାଘ୍ର ହୋଇଣ ଦିନବଞ୍ଚ । ଗୋରୁ ଚଣ୍ଡାଳ ସର୍ବଭକ୍ଷ ॥
ଶୁଣି ଗନ୍ଧର୍ବ ଭୟ କଲା । ବହୁତ ବିନୟ ହୋଇଲା ॥

---

ସୁରପତି — ଇନ୍ଦ୍ର
ପଟାନ୍ତର — ତୁଳନା
ପାମର — ପାପିଷ୍ଠ, ନୀଚ
ଅପରିମିତ — ବେଶୀ
ଦୁରିତ — ପାପ
ଦ୍ରୋହ — ପାପ

ହେ ପ୍ରଭୁ ବ୍ୟାଘ୍ର ଯେବେ ହେବ । କେମନ୍ତେ ଉଦ୍ଧାର ଲଭିବ ॥
ଏଥିର ପ୍ରତିକାର କର । ସଙ୍କଟୁ ବାରେକ ଉଦ୍ଧର ॥
ଶୁଣି ମାଧବ କୃପାକଲେ । ସନ୍ତୋଷ ହୋଇ ଆଜ୍ଞାଦେଲେ ॥
ବୋଇଲେ ବ୍ୟାଘ୍ର ହୋଇଥିବୁ । ଶତେ ବରଷେ ନସ୍ତରିବୁ ॥
ତେବେ ପାଇବୁ ନିଜକାୟ । ଶୁଣି ଗନ୍ଧର୍ବ କଳାଭୟ ॥
ତକ୍ଷଣେ ବ୍ୟାଘ୍ରେକ ହୋଇଲା । ଗର୍ଜନ କରି ତହୁଁ ଗଲା ॥
ରହିଲା ଅଗମ୍ୟ ବନସ୍ତେ । ଜୀବ ମାରଣ ଭକ୍ଷେ ନିତ୍ୟେ ॥
ଷଣ୍ଡ ଚଣ୍ଡାଳ ଗୋରୁଗାଈ । ପଥେ ଗମିଣ ଧରୁଥାଇ ॥
ଏମନ୍ତେ କେତେ ଦିନ ଗଲା । ଅନେକ ଜୀବ ବଧକଲା ॥
ପୂରିଲା ଶତେକ ବରଷ । ତେବେ ଖଣ୍ଡିଲା ପାପଦୋଷ ॥
ତକ୍ଷଣେ ନିଜ ରୂପଧରି । ସ୍ୱର୍ଗକୁ ଗଲା ଶୀଘ୍ର କରି ॥
ମକର ସ୍ନାହାନ କରିବ । ତଇଳ ମାଖି ନଦେଇବ ॥
ତୈଳ ଦେଇଲେ ବଡ଼ଦୋଷ । ଶାର୍ଦ୍ଦୂଳ ହୋଇବ ଅବଶ୍ୟ ॥
ମିଥ୍ୟା କହିଲେ ନାହିଁ ପାର । ଅନ୍ତେଣ ହୁଅଇ କୁମ୍ଭୀର ॥
ଯୁବତୀ ସଙ୍ଗେ କଲେ ରତି । ଅନ୍ତେ ଲଭଇ ମନ୍ଦଗତି ॥
ତହିଁ ଅନ୍ତରେ ଯେସ୍ୱପ୍ରାଣୀ । କୃମି ହୁଅଇ ଜନ୍ମତିନି ॥
ଶୁଣ ହୋ ଭକତ ଉତ୍ତମ । ମାଘ ସ୍ନାହାନେ ଯେତେଧର୍ମ ॥
ବିଧାତା ମାଘ ସ୍ନାନ କରି । ବ୍ରହ୍ମାଣ୍ଡେ ହେଲେ ଅଧିକାରୀ ॥
ମକର ସ୍ନାନ କଲେ ହର । ସର୍ବଦା ହୋଇଲେ ଅମର ॥
ବାସବ ଏହି ବ୍ରତ କଲା । ସ୍ୱର୍ଗରେ ନୃପତି ହୋଇଲା ॥
ଲକ୍ଷ୍ମୀ ଯେ ମାଘ ସ୍ନାନ କଲେ । ମୋତେ ପତିପଣେ ପାଇଲେ ।
ତୁ ଏବେ ମାଘ ସ୍ନାନ କର । ମୋନାମ ହୃଦପଦ୍ମେ ଧର ॥
ଦୂରିତ ହୋଇବ ଦହନ । ଅନ୍ତେ ମୋ ଅଙ୍ଗେ ହେବୁଲୀନ ॥
ନିନ୍ଦା କରିବ ଯେଉଁ ଲୋକ । ଅନ୍ତେ ଲଭିବ କୁମ୍ଭୀପାକ ॥
ଉଦ୍ଧବେ କହିଲେ ଅଚ୍ୟୁତ । ଭଣେ ନୃସିଂହ ଦାସସୁତ ॥
କହଇ ଘନକୃଷ୍ଣ ଦାସ । ପ୍ରଭୁ ପାଦକୁ ମୋର ଆଶ ॥
ପ୍ରଭୁ କରିବେ ମୋତେ ପାରି । ଏ ଅଧ୍ୟା ଅଣାଶୀରେ ସରି ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ଚିତ୍ରସେନ ଗନ୍ଧର୍ବ ମୋକ୍ଷଣ ନାମ ଦ୍ୱିଶୀତ୍ୟୋଽଧ୍ୟାୟଃ

---

ଶାର୍ଦ୍ଦୂଳ — ବାଘ ବାସବ — ଇନ୍ଦ୍ର
କୁମ୍ଭୀପାକ — ନରକ ବିଶେଷ

# ତୃତୀୟ ଅଧ୍ୟାୟ

### ଉଦ୍ଧବ ଉବାଚ

ଗୋବିନ୍ଦ ମୁଖୁଁ ଏହା ଶୁଣି । ଉଦ୍ଧବ କହେ ମଞ୍ଜୁବାଣୀ ॥
ତୁ ପ୍ରଭୁ ଜଗତର ତାତ । ଆଜ ମୁଁ ହୋଇଲି ମୁକତ ॥
ମାଘ ସ୍ନାହାନ ଧର୍ମ କଥା । ଶୁଣି ତୁଟିଲା ଭବବ୍ୟଥା ॥
ଆଉ କଥାଏ ମୋତେ କହ । ମନରୁ ଫିଟୁ ମୋ ସନ୍ଦେହ ॥
ମନୁଷ୍ୟମାନେ ବୁଦ୍ଧିମନ୍ତ । ଜାଣନ୍ତି ସକଳ ବୃତ୍ତାନ୍ତ ॥
ଧର୍ମ ନମିତ ଶତେ ଶନ୍ତ । ଯେ ବାରବ୍ରତ ଆଚରନ୍ତି ॥
ସେ କର୍ମା ହୁଅନ୍ତି ଅଜ୍ଞାନ । ସ୍ତ୍ରିଙ୍କ ପ୍ରସଙ୍ଗେ ଦ୍ୟନ୍ତି ମନ ॥
ଏକଥା କହ ନାଥ ମୋତେ । ଯେମନ୍ତେ ଯିବଇଁ ପରତେ ॥

### ଶ୍ରୀ ଭଗବାନୁବାଚ

ଉଦ୍ଧବ ମୁଖୁ ଏହା ଶୁଣି । ହସି ବୋଲନ୍ତି ପଦ୍ମପାଣି ॥
ତୁ ଏବେ ପୁଚ୍ଛାକଲୁ ଯାହା । କହିବି ବିସ୍ତାରିଣ ତାହା ॥
ପୂର୍ବେ ଅନେକ ତପକରି । ଜନ୍ମ ହୋଇଲେ ଦେହଧରି ॥
ମନୁଷ୍ୟ କଳେବର ପାଇ । ତ୍ରିଗୁଣ ସଙ୍ଗେ ଜଡ଼ିଥାଇ ॥
ଅଜ୍ଞାନେ ବାଳୁତ ସ୍ୱଭାବେ । କିଛି ନଜାଣେ ମତ୍ତଗର୍ବେ ॥
ଦ୍ୱାଦଶ ବରଷ ହୁଅନ୍ତେ । ମଦନ ପୀଡ଼େ ହୃଦଗତେ ॥
ତେଣୁ ଲଭଇ କାମବାଧା । ସ୍ତ୍ରୀଙ୍କି କରେ ବହୁଶ୍ରଦ୍ଧା ॥
ଶୃଙ୍ଗାର ରସ ଇଚ୍ଛାକରେ । ଲୀଳା ବିନୋଦେ ବିନହରେ ॥
ସ୍ୱଭାବେ ତରୁଣ ବୟସ । ନମଣେ ଭଲମନ୍ଦ ହାସ ॥
ପାପକୁ ନଥାଇ ଶଂଖିତ । ଚଞ୍ଚଳ କରୁଥାଏ ମତି ॥
ଦୁର୍ବୁଦ୍ଧି ଭାବ ମନେ ଧରି । ଏମନ୍ତେ ପାପମାନ କରି ॥
ସମ୍ପଦ ମନ୍ଦର ସମାନ । ମୋ ପାଦେ ନଥାଇ ତା ମନ ॥
ଅତି ଅଚିନ୍ତା ସର୍ବେଶ୍ୱର । ଆନନ୍ଦ କେ କହୁ ତାହାର ॥

---

ପରତେ — ବିଶ୍ୱାସ    ବୃତ୍ତାନ୍ତ — ଚରିତ

ମଦନ ରସେ ମାତିଥାଇ । ଯୁବତୀ ସଙ୍ଗ ନଛାଡ଼ଇ ॥
ପଶା ଶାକଟା ଜୂଆ ଖେଳି । ବେଶ୍ୟା ସଙ୍ଗତେ କରେ କେଳି ॥
ଗନ୍ଧ ଚନ୍ଦନ ପୁଷ୍ପମାନ । ଉତ୍ତମ ରତନ ବସନ ॥
ଏହି କଥାକୁ ସ୍ନେହ କରେ । ମୋନାମ ମୁଖରେ ନଧରେ ॥
ସେ କେମନ୍ତେ ପାଇବ ମୁକତି । ଶୁଣ ଉଦ୍ଧବ ଦେଇମତି ॥
ପୂର୍ବେ ଯେ ଏକ ବିପ୍ରଥିଲା । ଅନେକ ଦାନଧର୍ମ କଲା ॥
ନାମ ତା ଦାମୋଦର ପନ୍ତ । ଭାରିଯା ନାମ ଚନ୍ଦ୍ରକାନ୍ତ ॥
ଘର ତା କାନ୍ୟକୁବ୍ଜ ଦେଶେ । ବଢ଼ାଇ ଧର୍ମ ସେ ବିଶେଷେ ॥
ଗୋରୁ ମହିଷ ଅପ୍ରମିତ । ପଦାର୍ଥ କେତେକ ଅନ୍ତ ॥
ସେ ଦାମୋଦର ଦ୍ୱିଜବର । ପତ୍ନୀ ସଙ୍ଗତ କଲା ଦୂର ॥
ଥୋକାଏ ଦିନ ଭୋଗକଲା । ପଛକୁ ରମଣୀ ତେଜିଲା ॥
ପତ୍ନୀ ସଙ୍ଗତେ ନ ବସଇ । ଯେସନେ ନପୁଂସକ ଥାଇ ॥
ପ୍ରିୟା ତା ଅତ୍ୟନ୍ତ ସୁନ୍ଦରୀ । ଜିଣି ସ୍ୱର୍ଗ ଅପସରୀ ॥
ବୟସ ଷୋଡ଼ଶ ମୃଗାକ୍ଷୀ । ଲାଜେ ସେ ନ ବୋଲଇ କିଛି ॥
ତାଅଙ୍ଗ ସଙ୍ଗ ଛାଡ଼ିକରି । ଛାଡ଼ିଲା ସବ ସୁଖଶିରୀ ॥
ଭଜିଲା ମୋହର ପୟରେ । ରାତ୍ର ଦିବସ ନିରନ୍ତରେ ॥
ସାତ୍ତ୍ୱିକ ଗୁଣେ କର୍ମକରି । ରଜ ତାମସ ପରିହରି ॥
ଭକ୍ତକୁ ଦେଖିଲେ ନୟନେ । ପୂଜଇ ଦେବତା ସମାନେ ॥
ଦିଅଇ ପାଣି ପଣାଛତ୍ର । ବିକଳ୍ପ ନଥାଇ ତା ଚିତ୍ତ ॥
ଦୁର୍ଭିକ୍ଷ କାଳେ ଅନ୍ନଦାନ । ଯାଚି ଦିଅଇ ଅନୁକ୍ଷଣ ॥
ବହୁତ ବାର ବ୍ରତକରି । ଇନ୍ଦ୍ରିଗଣକୁ ଦେଲା ମାରି ॥
ସମ ମଣଇ ସର୍ବଜୀବ । ହୃଦେ ନଥାଇ ହିଂସାଭାବ ॥
ନିଷ୍ପାପୀ ଅଟଇ ତାକାୟା । ପ୍ରାଣୀଙ୍କୁ ନଥାଇ ତା ମାୟା ॥
ସର୍ବଦା ଅନୁରାଗ ବହେ । ନିର୍ଦ୍ଦୟ ପଣ କେବେନୋହେ ॥
ନଯାଇ ଦୁର୍ଜନର ପାଶ । ନକରେ ପରଦ୍ରବ୍ୟ ଗ୍ରାସ ॥
ଭୋଜନେ ତେତେଡ଼ି ଇଚ୍ଛାନୁହେ । ଅଳ୍ପ ଆହାରେ ଦିନ ନିଏ ॥
ଏମନ୍ତେ କେତେ କାଳ ଗଲା । ବ୍ରାହ୍ମଣ ମନେ ବିଚାରିଲା ॥

---

ଅପ୍ରମିତ — ଅଗଣିତ
ବିପ୍ର — ବ୍ରାହ୍ମଣ
ନିରନ୍ତର — ସବୁସମୟରେ
ଉଦାସ — ଅନାସକ୍ତ

ଏହାଧେ ଅନିତ୍ୟ ସଂସାର । ଯୌବନ ଅଟଇ ଅଚର ॥
ଅସ୍ଥି ମାଂସ ଚର୍ମଶୋଣି । ଏ ପିଣ୍ଡ ଅଟଇ ପ୍ରମାଣି ॥
ଏମନ୍ତ ଭାବେ ଦେହଅଙ୍ଗ । ପିଲେଇ ନାଡ଼ୀ ପ୍ରାଣୀସଙ୍ଗ ॥
ନାଡ଼ୀ ଲୁଚ୍ଛଇ ଅନ୍ତପିତ୍ତ । ପୂରି ରହିଛି ହୃଦଗତ ॥
ଷାଠିଏ ଗୃହଗୋଟି ରୋଗ । ଏଦେହେ ହୋଇଛି ସଯୋଗ ॥
ଆବର ଅଛି ମଳମୂତ୍ର । ବିଧାତା କଲା ଘଟସୂତ୍ର ॥
ଥୋଇଲା ପଞ୍ଚମନ ଏଥେ । ପଚଶ ପ୍ରକୃତ ସହିତେ ॥
ରଜ ତାମସ କାମ କ୍ରୋଧ । ପୂରି ରହିଛି ଦେହମଧ ॥
ଏଥେଁ ରହନ୍ତି ଜୀବଆତ୍ମା । ବିଶ୍ୱରୁ ଅଛି ମାୟାମାତ୍ରା ॥
ଏ ଦେହ ଜଳ ବମ୍ବପର । ସ୍ଥିର ଯେ ନୁହଇ କାହାର ॥
କ୍ଷଣ ମାତ୍ରକେ ଏଥୁ ଯାଇ । ମୁକତ ଗତ ସେ ନପାଇ ॥
ପୁତ୍ର ଭାରିଯା ଧନପ୍ରାଣ । ଏମାନେ ସବୁ ଅକାରଣ ॥
ମୁଁ ମୂଢ଼ ନରଦେହ ବହି । କୃଷ୍ଣଙ୍କୁ ଭଜ ନପାରଇ ॥
ସଂସାର ତରିବ କେମନ୍ତେ । ପୁଣି ଭାବଇ ହୃଦଗତେ ॥
ଘୋର ଜଞ୍ଜାଳ ତେଜିଯିବ । ଉଦାସ ଭାବେ ଢନନେବ ॥
ବାହ୍ୟ କରବେ ନାରାୟଣ । କୃଷ୍ଣରେ ପଶିବ ଶରଣ ॥
ଏତେ ବିଚାର ତହୁଁ କଲା । ପତ୍ନୀର ସନ୍ନିଧେ ମିଳିଲା ॥
କହିଲ କୋମଳ ବଚନ । ଶୁଣରେ ଯୁବତୀ ରତନ ॥
ମୁଁ ହାଦେ ଯିବ ବାରାଣସୀ । ଦେଖିବ ପ୍ରଭୁ ଦେବକାଶୀ ॥
ଗଙ୍ଗାରେ କରିବ ସ୍ନାହାନ । ବୁଡ଼ିବ ନାନା ତୀର୍ଥମାନ ॥
ଆସିବ କଛୁ ଦିନ ଅନ୍ତେ । ବିରସ ନୋହିବୁ ତୁ ଚିତ୍ତେ ॥
ଭଣଇ ଧନକୃଷ୍ଣ ଦାସ । ଏକତ୍ରିଂଶ ପଦରେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ଦାମୋଦର ପତି ପ୍ରସ୍ତାବ କଥନେ ନାମ ତ୍ରିଂଶୋଽଧ୍ୟାୟଃ

—×—

ନିଷ୍ପାପୀ — ପାପଶୂନ୍ୟ    ଅନୁରାଗ — ସ୍ନେହ

# ଚତୁର୍ଥ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ ହୁଅ ସାବଧାନ ॥
ଶୁଣନ୍ତୁ ଏକମନ ହୋଇ । କଳୁଷ ଯାଉ ତୋର ଦେହୀ ॥
ବ୍ରାହ୍ମଣ ପତ୍ନୀକି କହିଲା । ତୀର୍ଥକୁ ଯିବଇଁ ବୋଇଲା ॥
ବ୍ରାହ୍ମଣ ମୁଖୁଁ ଏହା ଶୁଣି । ବିଷାଦ ଲଭିଲା ତରୁଣୀ ॥
ବିକଳେ ବୋଲଇ ଉତ୍ତର । ହେ ପତି ଏ ବୁଦ୍ଧି ନକର ॥
ପୁତ୍ର ଦୁହିତା କେହି ନାହିଁ । କେମନ୍ତେ ଏକା ଥିବି ମୁହିଁ ॥
ତୁମ୍ଭେ ଆସିବ କେତେଦିନେ । କହହେ ସ୍ୱରୂପ ବଚନେ ॥
ବ୍ରାହ୍ମଣ ବୋଲଇରେ ସହି । ଆସିବି ଦିନାକେତେ ରହି ॥
ତୁ ମୋର ଜୀବନ ମୃଗାକ୍ଷୀ । ମୁଁ ତୋତେ ନପାରଇ ମୂର୍ଚ୍ଛି ॥
ନିକଟେ ଆସିବି ସଙ୍ଗାତ । ତୋ ଆଗେ କହୁଅଛି ସତ୍ୟ ॥
ଶୁଣି ସନ୍ତୋଷ ବାଳୀ ହେଲା । ବ୍ରାହ୍ମଣ ସନ୍ତୋଷ ହୋଇଲା ॥
ଯିବାକୁ ଉଦବେଗ ମନ । ପିନ୍ଧିଲା ଶୁକ୍ଳ ବସନ ॥
କପୋଳେ ଦେନ ଦଶଚତା । ସ୍କନ୍ଧରେ ଶୋଭଇ ପଇତା ॥
ଶ୍ରବଣେ ଶୋଭିତ କୁଣ୍ଡଳ । ଗଳାରେ ରୁଦ୍ରାକ୍ଷର ମାଳ ॥
ଧଇଲା ଛତା ଯୋଥିହାଥେ । ଗଡୁ ତମ୍ବାପାଣୀ ସହିତେ ॥
ଆବର କୁଶ ବଡ଼ ନେଇ । ପବନ୍ ଗଲା ଖର ହୋଇ ॥
ଅନେକ ଧନ ରତ୍ନ ଥିଲା । ବ୍ରାହ୍ମଣ କିଛିହିଁ ନନେଲା ॥
ପତ୍ନୀ ଯେ ଗଲକ ଗୋଡ଼ାଇ । ବାଟରୁ ଦେଲା ଲେଉଟାଇ ॥
ଏକାନ୍ତେ କରଇ ଗମନ । ହୃଦେ ଚିନ୍ତଇ ଭଗବାନ ॥
ଏମନ୍ତେ କେତେ ଦୂରଗଲା । ଶବର ପଲ୍ଲୀରେ ମିଳିଲା ॥
ସେଠାରେ ଉପବାସ କରି । ଅନ୍ନଦ୍ରେ ବଞ୍ଚିଲା ଶର୍ବରୀ ॥
ପ୍ରଭାତେ ଗଲା ପଥବାହି । କାବେରୀ ନଦୀତୀରେ ଯାଇ ॥

---

ବିଷାଦ — ଦୁଃଖ          ଦୁହିତା — ଝିଅ
ଶର୍ବରୀ — ରାତ୍ରି

ତହିଁ ସାରଲ୍ନ ନିତ୍ୟକର୍ମ । ଯାଇ ଦେଖିଲ୍ନ ଏକ ଗ୍ରାମ ॥
ସେ ନଗ୍ରଜନେ ତାକୁ ଦେଖି । ଆନନ୍ଦ ହୋଇ ମହାସୁଖୀ ॥
ଆସନ ଦେଇ ବସାଇଲେ । କାହୁଁ ଅଇଲ ପଗ୍ଚରିଲେ ॥
ବ୍ରାହ୍ମଣ କହିଲ ସମସ୍ତ । ଶୁଣି ହରଷ ତାଙ୍କ ଚିତ୍ତ ॥
ତଣ୍ଡୁଳ ହାଣ୍ଡି ଦେଲେ ଆଣି । ରାନ୍ଧି ଭୁଞ୍ଜିଲ୍ନ ଦ୍ୱିଜମଣି ॥
ତକ୍ଷଣେ କଲ୍ନ ଆଗମନ । ସେଠାରୁ କଲ୍ନକ ଗମନ ॥
କେବଣ ଠାବେ ଦିନେ ରହି । ପୁଣି ପ୍ରଭାତୁ ଚଳିଯାଇ ॥
କାହିଁ ରହଇ ଦିନ ଗୁରି । ଅତି ଦୁଃଖରେ ଦିନ ହରି ॥
କାହିଁ ରହଇ ପକ୍ଷ ଦଶ । ଭ୍ରମଣ କରେ ଚଉପାଶ ॥
ଚଳଇ ପୂର୍ବ ମୁଖ ହୋଇ । ବନ ପର୍ବତ ଚଳିଯାଇ ॥
ପଥେ ଗମଇ ଅତି ଶ୍ରମେ । ଚଳିଲ୍ନ ଶ୍ରୀପୁରୁଷୋତ୍ତମେ ॥
ସମୁଦ୍ରେ ସାରଲ୍ନ ସ୍ନାହାନ । କୃଷ୍ଣଙ୍କୁ କଲ୍ନ ଦରଶନ ॥
ଖଣ୍ଡିଲ୍ନ ଅଶେଷ ଦୁରିତ । ଦର୍ଶନେ ହୋଇଲ୍ନ ମୁକତ ॥
ବ୍ରାହ୍ମଣ ମନରେ ହରଷ । ତହିଁ ରହିଲ୍ନ ଦିନ ଦଶ ॥
ସେଠାରୁ ଚଳିଲ୍ନ ତ୍ୱରିତ । ହୋଇଲ୍ନ ଉଦବେଗ ଚିତ୍ତ ॥
ଗଙ୍ଗାରେ ସ୍ନାହାନ କରିଣ । ଦେଖିଲ୍ନ ବିଶ୍ୱନାଥ ପୁଣ ॥
ମହାଦେବଙ୍କୁ ସ୍ତୁତିକରି । ସେଠାରୁ ଗଲ୍ନ ଅପସରି ॥
ଗୟା ତୀର୍ଥକୁ ଗଲ୍ନ ଚଳି । ଗୃହଣ ଦିନେ ଯାଇ ମିଳି ॥
ମୂର୍ତ୍ତିଏ ଅଛଇ ସେଠାରେ । ନାମ ତାଙ୍କର ଗଦାଧର ॥
ସେଠାରେ ନିତ୍ୟକର୍ମ ସାରି । ଯାଇ ଦେଖିଲ୍ନ ତ୍ରିପୁରାରି ॥
ଗଦାଧରଙ୍କୁ ଦେଖି ତୋଳେ । ଦୁରିତ ଗଲ୍ନ ଅବହେଳେ ॥
ସାନନ୍ଦ ଦାମୋଦର ପତି । ସେଠାରୁ ଚଳିଲ୍ନ ତଡତି ॥
ସୁମରି ଶ୍ରୀ ଜଗନ୍ନାଥଙ୍କୁ । ଗମଇ ପ୍ରୟାଗ ତୀର୍ଥକୁ ॥
ଏମନ୍ତେ ଗଲ୍ନ କୋଶ ଗୁରି । ପଥେ ରହିଲ୍ନ ଯୁକ୍ତି କରି ॥
ବସିଲ୍ନ ବଟବୃକ୍ଷ ତଳେ । କଲ୍ନ ବିଶ୍ରାମ ଖରବେଳେ ॥
ଏବେ ଅଟଇ ମଧୁମାସ । ପ୍ରଚଣ୍ଡ ଖର ଯେ ପ୍ରକାଶ ॥
ଶରୀରୁ ବହେ ଶ୍ରମଝାଳ । କ୍ଷୁଧାରେ ଉଦର ବିକଳ ॥
ବୃକ୍ଷ ଛାୟାରେ ଅଛି ବସି । ଏମନ୍ତ ମଦନା ସୁକେଶୀ ॥

---

ତଣ୍ଡୁଳ — ଚାଉଳ  ତଡତି — ଶୀଘ୍ର
ସାନନ୍ଦ — ଆନନ୍ଦ

ସଙ୍ଗତେ ଦାସୀଗଣ ଘେନି । ଆସିଣ ମିଳିଲା କାମିନୀ ॥
ଜାତରେ ବେଶ୍ୟା ସେହୁ ନାରୀ । ଅଟଇ ଅତ୍ୟନ୍ତ ସୁନ୍ଦରୀ ॥
ସ୍ନାହାନ ଅର୍ଥେ ଯାଉଥିଲା । ବିପ୍ରଙ୍କୁ ପଥରେ ଦେଖିଲା ॥
ଦେଖିଣ କଲା ନମସ୍କାର । ସଧୀରେ ବୋଲଇ ଉତ୍ତର ॥
କେବଣ ଦେଶରୁ ଆସିଲ । କି କାର୍ଯ୍ୟେ ଏଥେ ବିଜେକଲ ॥
ଆଉ ତ ସଙ୍ଗେ କେହି ନାହିଁ । ଏକାନ୍ତେ ବସିଛ କିମ୍ପାଇଁ ॥
ବ୍ରାହ୍ମଣ ବୋଲଇ ବଚନ । ଶୁଣରେ ଯୁବତୀ ରତନ ॥
ଘର ମୋ କନାଉଜ ଦେଶ । ଛାଡ଼ିଲି ପତ୍ନୀ ସଙ୍ଗ ଆଶ ॥
ଅଇଲି ତୀର୍ଥଯାତ୍ରା ଅର୍ଥେ । ଶ୍ରମରେ ବସିଲି ଏକାନ୍ତେ ॥
ହସିଣ ବୋଲଇ ଚତୁରୀ । ଆସହୋ ଯିବା ଆମ୍ଭ ପୁରୀ ॥
ହାଣ୍ଡି ଚଣ୍ଡୁଳ ଦେବି ମୁହିଁ । ରାନ୍ଧିଣ ଭୁଞ୍ଜିବ ଗୋସାଇଁ ॥
ଆଜ ମାତ୍ରକ ତହିଁ ଥିର । କାଲି ସକାଳୁ ଚାଲିଯିବ ॥
ବ୍ରାହ୍ମଣ ବିଚାରଇ ପୁଣି । ଏ ନାରୀ ଧନବନ୍ତ ପ୍ରାଣୀ ॥
ଯେବେ ମୁଁ ଭେଟିଲି ଏହାକୁ । ଯିବଇଁ ଏହାର ପୁରକୁ ॥
କ୍ଷୁଧାରେ ଶରୀର ଆରତ । ରାନ୍ଧିଣ ଭୁଞ୍ଜିବଇଁ ଭାତ ॥
ଏତେ ବିଚାରି ବିପ୍ରବର । ତହୁଁ ଉଠିଲା ଧାଡକାର ॥
ବୋଲଇ ଏବେ ଚାଲ ଯିବା । ତୁମ୍ଭର ଭବନ ଦେଖିବା ॥
ବାଟ କଢ଼ାଇ ନେଲା ବାଳୀ । ତାହାର ସାଥେ ବିପ୍ର ଚାଲି ॥
ବେଳ ହୋଇଲା ଘଡ଼ି ଦଶ । ମଦନା ପୁରେ ପରବେଶ ॥
ଯୁବତୀ ମିଳିଲା ମନ୍ଦିରେ । ବ୍ରାହ୍ମଣ ବସିଲା ପିଣ୍ଡାରେ ॥
ତକ୍ଷଣେ ବସିଲା ତରୁଣୀ । ହାଣ୍ଡି ଚଣ୍ଡୁଳ ଦେଲା ଆଣି ॥
ରନ୍ଧନ ବିଧି ଯେତେ ଦ୍ରବ୍ୟ । ତୁରିତେ ସମର୍ପିଲା ସର୍ବ ॥
ବ୍ରାହ୍ମଣ କଲାକ ରନ୍ଧନ । ଭୁଞ୍ଜିଣ ହେଲା ତୋଷମନ ॥
ସେ ଆଚମନ ସାରିଯାଇ । ବସିଲା ମହାସୁଖ ପାଇ ॥
ରତ୍ନପଲଙ୍କ ପାରିଦେଲା । ବିପ୍ରଙ୍କୁ ତହିଁ ବସାଇଲା ॥
ମଦନା ଗଲା ନିଜପୁରେ । ଅନ୍ନ ଭୁଞ୍ଜିଲା ଧାଡକାରେ ॥
ତକ୍ଷଣେ ସାରି ଆଚମନ । ହସ୍ତେ ଧରିଲା ଗୁଆପାନ ॥
ଉତ୍ସୁକ ହୋଇଲା ଯୁବତୀ । ମିଳିଲା ବ୍ରାହ୍ମଣର କତି ॥
ତା ଦେଖି ବ୍ରାହ୍ମଣ ସନ୍ତୋଷ । ବୋଲଇ ଆସ ସଖୀ ବସ ॥

---

ଭୁଞ୍ଜିବ — ଖାଇବ

ସୁନ୍ଦରୀ ବସିଲା ତା ପାଶେ । ତାମ୍ବୁଳ ଭୁଞ୍ଜଇ ହରଷେ ॥
ତ୍ରିଭଙ୍ଗୀ ଗୃହିଣୀ ମାଧବକେ । ଚିତ୍ତ ହରିଲା ନିମିଷକେ ॥
ମଦନା ରୂପ ଗୁଣ ଗୃହିଣୀ । ବ୍ରାହ୍ମଣ ହୋଇଲାକ ମୋହି ॥
ଅଙ୍ଗେ ପୀଡ଼ିଲା ପଞ୍ଚଶର । ବୋଲଇ ହସ୍ତଧରି ତାର ॥
ହେ ସଖୀ ଚନ୍ଦ୍ରମା ବଦନୀ । ଚଞ୍ଚଳା କୁରଙ୍ଗି ନୟନୀ ॥
ତୋହୋର ରୂପ ଗୁଣ ଦେଖି । ମୁଁ ବଡ଼ ହୋଇଲଇଁ ସୁଖୀ ॥
ମଦନେ ଅସ୍ଥିର ମୋ ଦେହି । ଜୀବନ ରଖ ରତି ଦେଇ ॥
ନୋହିଲେ ବିସର୍ଜିବି ପ୍ରାଣ । ଏକଥା ଅଟଇ ପ୍ରମାଣ ॥
ମଦନା ବୋଇଲାକ ହସି । ତୁମ୍ଭେତ ଅଟ ବ୍ରହ୍ମଋଷି ॥
ଗୃହ ଭାରିଯା ଧନ ଏଡ଼ି । ଅଇଲ ସର୍ବସୁଖ ଛାଡ଼ି ॥
ବିଷ୍ଣୁର ପାଦପଦ୍ମେ ଖଟି । ତପେଣ ସିଦ୍ଧ ତୁମ୍ଭେ ଅଟ ॥
ସକଳ ଗୁଣେ ଗୁଣନିଧି । ଏବେତ କହୁଛ ଅବିଧି ॥
ଯୁବତୀ ଯଦ୍ୟପି ରମିବ । ସକଳ ଧର୍ମ ନାଶ ଯିବ ॥
ବ୍ରାହ୍ମଣ ବୋଲଇରେ ସହି । ଚିତ୍ତ ମୋ ଧରି ନପାରଇ ॥
କାମେ ମୋ ଅଶକତ ଦେହ । ନିର୍ଦ୍ଦୟ ତୁହି ସଖି ନୁହ ॥
ଏକଥା ନକହ ମୋ ଆଗେ । ଦିଅ ସୁରତି ଦାନ ବେଗେ ॥
ମଦନା ନ କହିଲା କଥା । ହସିଣ ପୋତିଲାକ ମଥା ॥
ବ୍ରାହ୍ମଣ କଲା ଆଲିଙ୍ଗନ । ଅଧରେ ଦେଲାକ ଚୁମ୍ବନ ॥
ବିବିଧ ପ୍ରକାରେ ସୁରତି । କଲାକ ଦାମୋଦର ପତି ॥
ବିଶେଷେ ସ୍ବର୍ଗର ଅବଳା । ଜାଣଇ ରତିରଣ କଳା ॥
ବଢ଼ିଲା ସୁଖ ଅପ୍ରମିତ । ତୋଷିଲା ବ୍ରାହ୍ମଣର ଚିତ୍ତ ॥
ସ୍ଖଳିତ ହେଲା ରେତ ଯହୁଁ । ରମଣୀ ଉପେକ୍ଷିଲା ତହୁଁ ॥
ବ୍ରାହ୍ମଣ ହୋଇଲାକ ତୋଷି । ଏକ ଆରେକ ହସାହସି ॥
ଧନ୍ୟ ସେ ମଦନା ସୁନ୍ଦରୀ । ହେଲେ ମୋହିଲା ବ୍ରହ୍ମଚାରୀ ।
ଆପଣେ ତାମ୍ବୁଳ ଚୋବାଇ । ଦେଲା ବ୍ରାହ୍ମଣ ତୁଣ୍ଡେ ନେଇ ॥
ମଦନ ରସେ ମାତି କରି । ଉଚ୍ଛିଷ୍ଟ ବୋଲି ନ ବିଚାରି ॥
ହରଷେ ଭୁଞ୍ଜିଲା ତାମ୍ବୁଳ । ପ୍ରେମ ରସରେ ହୋଇ ଭୋଳ ॥
ମଦନା ବୋଲଇ ବଚନ । ମୁଁ ଗନ୍ଧ ପରଶିବ ଅନ୍ନ ॥

---

ଏଡ଼ି — ତ୍ୟାଗକରି     ବିବିଧ — ବିଭିନ୍ନ
ଆଲିଙ୍ଗନ — ସ୍ନେହ

ତୁମ୍ଭେ ଭୁଞ୍ଜିବ ଅତି ସୁଖେ । କେତେକ ରହିଥିବ ଦୁଃଖେ ॥
ବ୍ରାହ୍ମଣ ସନମତ କଲା । ମଦନା ପାକ ସମ୍ପାଦିଲା ॥
ଆପଣେ ସମର୍ପିଲା ଅନ୍ନ । ବ୍ରାହ୍ମଣ କଲାକ ଭୋଜନ ॥
ସୁବାସ ଜଳ ଆଣିଦେଲା । ବିପ୍ର ତା ଆଚମନ କଲା ॥
ପଲଙ୍କେ ବସିଲାକ ଯାଇ । କର୍ପୂର ତାମ୍ବୁଳ ଭୁଞ୍ଜଇ ॥
ବିବିଧ ରସେ ସେ ବିହରି । ବ୍ରାହ୍ମଣ ବହୁ ଭୋଗକରି ॥
ଧର୍ମ ଆଚାର ପାଶୋରିଲା । ଅଧର୍ମ ପଥ ଆଦୋରିଲା ॥
ବୋଲନ୍ତି ପ୍ରଭୁ ଜଗନ୍ନାଥ । କାମର ମହିମା ଏମନ୍ତ ॥
ତେଢ଼େ ସୁଜ୍ଞାନୀ ଦ୍ୱିଜବର । ସେ ପୁଣି କଲା ଅବିଚାର ॥
ସକଳ ବାରବ୍ରତ ତେଜି । ରହିଲା ସ୍ତ୍ରୀ ସଙ୍ଗେ ମଜି ॥
ମୋନାମ ଭୁଲେ ସେ ନଧରି । ରହିଲା ବେଶ୍ୟାକୁ ଆଦରି ॥
ଏମନ୍ତେ କେତେ କାଳ ଗଲା । ବ୍ରାହ୍ମଣ ପ୍ରାଣ ତ୍ୟାଗକଲା ॥
ଯମର ଦୂତେ ତାକୁ ନେଲେ । ଅନେକ ଶାସ୍ତି ତାକୁ ଦେଲେ ॥
ନୃପତି ଆଗେ କଲେ ନେଇ । ସକଳ ବୃତ୍ତାନ୍ତ ଜଣାଇ ॥
ଚିତ୍ରଗୁପତକୁ ଚାହିଁଣ । ଯମ ବୋଇଲା ତାକୁ ପୁଣ ॥
ଏ ମହାତମା ମର୍ତ୍ତ୍ୟେ ଥିଲା । କେବଣ ଦାନ ଧର୍ମ କଲା ॥
ଏକଥା କହ ମନ୍ତ୍ରୀ ତୁମ୍ଭେ । ଶୁଣିଲେ ତୁରିତେ ଯିବୁ ଆମ୍ଭେ ॥
ରାଜା ଆଜ୍ଞାରେ ମନ୍ତ୍ରୀବର । ଦେଖିଲେ ପାଞ୍ଜି ଧରି କର ॥
କହନ୍ତି ଯୋଡ଼ି ବେନିକର । ଶୁଣହେ ନୃପତି ଶେଖର ॥
ଏହାଦେ ସୁବୁଦ୍ଧି ସୁଜାଣ । ଅଟଇ ଜାତିରେ ବ୍ରାହ୍ମଣ ॥
ମର୍ତ୍ତ୍ୟ ମଣ୍ଡଳେ ଏହୁ ଥିଲା । ବହୁତ ଧର୍ମ ଆଚରିଲା ॥
କାଳେ ସକଳ ତେଜ୍ୟାକରି । ପୁଣି ହୋଇଲା ଦେଶାନ୍ତରୀ ॥
ଅନେକ ତୀର୍ଥ ଯାତ୍ରା କଲା । ତପ ସାଧିଣ ବନ ନେଲା ॥
ବିବେକ ବୁଦ୍ଧି ଏ ହରାଇ । ରହିଲା ବେଶ୍ୟାଘରେ ଯାଇ ॥
ବେଶ୍ୟା ସଙ୍ଗତେ ରତକଲା । ତାଘରେ ଅନ୍ନହିଁ ଖାଇଲା ॥
ତେଣୁ ନାଶିଲା କୁଳଧର୍ମ । ତେଜିଲା ଗୋବିନ୍ଦର ନାମ ॥
ମଲା ଥୋକାଏ ଦିନଅନ୍ତେ । ଧରି ଆଣିଲେ ଯମଦୂତେ ॥
ଯେ ତୁମ୍ଭ ବିଚାରେ ଯୋଗାଇ । ସେକଥା କରିବା ଗୋସାଇଁ ॥
କୋପେ ବୋଇଲା ତାକୁ ଯମ । ଏ ମୂଢ଼ କଲା ହୀନକର୍ମ ॥

---

ଆଦୋରିଲା — ବାଧା ସୃଷ୍ଟି କଲା

ପ୍ରଥମେ ଧର୍ମ ଆଶ୍ରେକଲ । ପୁଣି ତ ତାପ ଆଚରିଲ ॥
ତହିଁର ଶାସ୍ତି ଏବେ ପାଉ । ଶୃଗାଳ ରୂପେ ଜାତ ହେଉ ॥
ପରେ ଅର୍ଜିବ ପୁଣ୍ୟକାଳ । ଏଷଣି ହେଉ ଏ ଶୃଗାଳ ॥
ଗିରି ଯେ ଅଛି ମଞ୍ଜପୁରେ । ଗଉଷ ନଘର କୂଳରେ ॥
ସେଠାରେ ଗଣ୍ଡୂକ ବନସ୍ଥ । ଗୋପୁଣ୍ୟ ବୋଲଣ ପର୍ବତ ॥
ବ୍ରହ୍ମକ ବୋଲଣ ଶୃଗାଳ । ସେ ଗିରି ଶିଖରେ ତା ମାଳ ॥
ଜାତବେଶ୍ୱର ସେ ଅଟଇ । ଆଗମ ନିଗମ ଜାଣଇ ॥
ଘରପା ନାମ ଅଭିକାଣୀ । ଅପୂର୍ବିକ ସେ ବେଦପ୍ରାଣୀ ॥
ତାହାର ଗର୍ଭେ ଜାତ କରି । ଶୃଗାଳ ହେଉ ଏ ପାମର ॥
ବିବିଧ ମୃତ ମାଂସ ଖାଉ । ପଶୁ ହୋଇଣ ବନ ନେଉ ॥
ପୁଣି ଏହାର ଅନ୍ତକାଳେ । ସ୍ୱର୍ଗେ ବସିବ ପୁଣ୍ୟବଳେ ॥
ବ୍ରାହ୍ମଣ ବୋଲଇ ଗୋସାଇଁ । ଯେବେ ଶୃଗାଳ ହୋଇବଇଁ ॥
ଦୋଷକୁ ପାଇଲଇଁ ଶାସ୍ତି । କେ ତାହା କରିବଇଁ ନାସ୍ତି ॥
ଆଉ କଥାଏ ମୋତେ ଦେବ । ଏଜନ୍ମ କଥା ମନେଥିବ ॥
ଜାତକେଶ୍ୱର ମୁଁ ହୋଇବ । ଏଜନ୍ମ କଥାକୁ ଜାଣିବ ॥
ତେବେ କରିବ ଧର୍ମକାର୍ତ୍ତି । ପୁଣି ଲଭିବ ପୁଣ୍ୟଗତି ॥
ଶୁଣି ବୋଲଇ ଧର୍ମରାଜା । ଜାତକେଶ୍ୱର ତୁ ହୁଅସା ॥
ଯମ ଆଜ୍ଞାରେ ତାକୁ ନେଲେ । ଶୃଗାଳ ରୂପେ ଜାତକଲେ ॥
କହନ୍ତି ପ୍ରଭୁ ନାରାୟଣ । ଉଦ୍ଧବ ସାବଧାନେ ଶୁଣ ॥
ତୁ ଯେ ପୁଚ୍ଛିଲୁ ଧର୍ମଅର୍ଥ । ତେଣୁଟି କହିଲୁ ସମସ୍ତ ॥
ଶ୍ରବଣ ପଥେ ଏହା ଶୁଣି । ନିନ୍ଦା କରନ୍ତି ଯେଉଁ ପ୍ରାଣୀ ॥
ଅନ୍ତେ ପଡ଼ନ୍ତି ନର୍କେ ଯାଇ । ଜନ୍ମ ହୁଅନ୍ତି ପଶୁଦେହୀ ॥
ସୁଜନେ ଶୁଣି ହୁଅ ତୋଷ । ଭଣେ ନୃସିଂହ ଦାସ ଶିଷ୍ୟ ॥
କହଇ ଦୀନକୃଷ୍ଣ ଦାସ । ଦୟା କରିବେ ପୀତବାସ ॥
ଉଦ୍ଧବେ କହେ ମହାବାହୁ । ଶଏ ଷାଠିଏ ପଦ ଏହୁ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ଦାମୋଦର ଏତି ପ୍ରସ୍ତାବ କଥନେ ନାମ ଚତୁର୍ଥୋଽଧ୍ୟାୟ

— X —

ବନସ୍ଥ — ବଣ    ଆଗମ, ନିଗମ — ଯୋଗ    ପାମର — ପାପୀ

# ପଞ୍ଚମ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

ବୋଲନ୍ତି ଶୁଣ ବାସୁଦେବ । ଏବେହୁ ଶୁଣ ହେ ଉଦ୍ଧବ ॥
ଯେଉଁଣ ବିପ୍ର ନାଶଗଲା । ଶୃଗାଳ ଗର୍ଭେ ଜାତ ହେଲା ॥
ଦେଖି ବ୍ରହ୍ମଙ୍କ ତାହାଜାଣି । ପତ୍ନୀକି କହିଲ ତା ପୁଣି ॥
ଏପୁତ୍ର ବଢ଼ାଇ ବିବେକ । ଅଟେ ଉତ୍ତମ ଭଲଲୋକ ॥
ଜାତିରେ ଅଟଇ ବ୍ରାହ୍ମଣ । କଅଁତ ପାପ ଏ କରଣ ॥
ଜାତ ହୋଇଲା ଆମ୍ଭ କୁଳେ । ପୁଣି ତଶବ କହୁ କାଳେ ॥
ମୋହୋର ବୋଲ ଏବେକର । ଏହାକୁ ନଦିଅ ତୁ କ୍ଷୀର ॥
ମୁଁ ଯାଉଅଛୁ ମତ୍ସ୍ୟ ଦେଶ । ସେଠାରୁ ଆଣିବି ଗୋରସ ॥
ସେ ରାଜ୍ୟ ବିରାଟ ନୃପତି । ତାହାର ବିପୁଳ ସମ୍ପତ୍ତି ॥
ଅଛି ତା ଶତେପଦ୍ମ ଗାଈ । ଅଗ୍ରିବା ଅଛି ଖବଦୁଇ ॥
ବରଡ଼ ଅଛି ମରଭୂତେ । କ୍ଷଣ୍ଟି ଅଛନ୍ତି ଅଇବ୍ରତେ ॥
ପ୍ରଥମ ଦୋହନର ବେଳେ । ଥରକେ ପକାନ୍ତି ଭୂମିରେ ॥
ଏମନ୍ତେ ସବୁ ଗୋରୁକ୍ଷୀର । ଭୂମିରେ ପଡ଼ି ହୁଏ ଧାର ॥
ଗୋକ୍ଷୀର ନଦୀ ଯେ ଗୋଟିଏ । ବହଇ ଯାତ ଘଡ଼ଯାଏ ॥
ସୁଖେ ଭୁଞ୍ଜନ୍ତି ବନଜାବେ । ତହିଁକି ଯାଉଅଛୁ ଏବେ ॥
ପୟଃ ଆଣିଲେ ପିଆଇବୁ । ପୁତ୍ର ଗୋଟିକ ଜିଆଇବୁ ॥
ପତ୍ନୀ ତା କଲା ସନମତ । ଏବେସେ ଚଳିଲା ତ୍ୱରିତ ॥
ମିଳିଲା ମତ୍ସ୍ୟଦେଶେ ଯାଇଁ । ଯହିଁ ବହୁଛି ଦୁଗ୍ଧ ନଈ ॥
ତହୁଁ ଆଣିଲା କଛି ପୟ । ପିଅନ୍ତେ ବଢିଲା ତନୟ ॥
ଏହି ପ୍ରକାରେ ନିତ୍ୟେଆଣି । ପାଳନ୍ତି ଅତି ସ୍ନେହ ହେନ ॥
ଶୃଗାଳ ଶୃଗାଳୁଣୀ ପୁଣି । ପାଳନ୍ତି ଅତି ସ୍ନେହ ହେନ ॥
ବର୍ଦ୍ଧିତ ହୋଇଲା କୁମର । ସାରଙ୍ଗ ନାମ ଦେଲେ ତାର ॥
ଅରଣ୍ୟେ ପିତାମାତା ସଙ୍ଗେ । ବିହରୁ ଥାଇ ନାନାରଙ୍ଗେ ॥

---

ପୟଃ — କ୍ଷୀର, ଦୁଧ          ତନୟ — ପୁଅ

ଏମନ୍ତେ ଗଲା ବର୍ଷ ବାର । ତାତ ଜନନୀ ମଲେ ତାର ॥
ସାରସ ମହା ଚନ୍ଦ୍ରାକଲ । ସେସୁର ଉପେକ୍ଷିଣ ଗଲା ॥
ମିଳିଲା ବସ୍ତ୍ର ଭିକ୍ଷା ଛରେ । ରହିଲା ମଳୟ ଗିରିରେ ॥
ଆପଣା ଇଚ୍ଛାଏ ଗମଇ । ଆହାର ଖୋଜି ଲୋଡ଼ିଖାଇ ॥
ଏଥୁ ଅନ୍ତରେ ଦିବ୍ୟସ୍ଥଳ । ଶୁଣ ଉଦ୍ଧବ ଦେଇ ମନ ॥
ବେଶ୍ୟାନ ବୋଲି ଏକପୁର । ନଗରେ ସର୍ବ ଜାରଘର ॥
ବସନ୍ତି ଛତିଶ ପାଟକ । ବିହରୁ ଅଛନ୍ତି ଅନେକ ॥
ମଞ୍ଜିକ ବୋଲଣ ବ୍ରାହ୍ମଣୀ । ବାମଦେବା ଗୃର୍ଯ୍ୟ ଘରଣୀ ॥
କରନ୍ତି ଜପତପ ଧ୍ୟାନ । ବଞ୍ଚନ୍ତି ସୁଖ ଦୁଃଖେ ଦିନ ॥
ଏମନ୍ତେ କେତେ ଦିନଗଲା । ବାମଦେବ ଆଗୃର୍ଯ୍ୟ ମଲା ॥
ବ୍ରାହ୍ମଣୀ ବିଧବା ହୋଇଣ । ସେହି ମଠରେ ଥିଲାପୁଣ ॥
ବିଶେଷେ ନବଯୁବା ସ୍ତ୍ରିଶ । ଯୌବନ ନପାରିଲା ଧରି ॥
ମଦନେ ଉନମତ୍ତ ଅଙ୍ଗ । ହରତେ ଲୋଡ଼େ ରତିରଙ୍ଗ ॥
ସୁକେଶ ନାମେ ଶୂଦ୍ର ତହିଁ । ଥିଲା ପତ୍ନୀ ଆଶାରେ ରହି ॥
ତାହାର ସଙ୍ଗତେ ବ୍ରାହ୍ମଣୀ । ପୀରତି ବଢ଼ାଇଲା ପୁଣି ॥
ଶୂଦ୍ର ଯେ ବଢ଼ାଇଲା ପ୍ରୀତି । ବ୍ରାହ୍ମଣୀ ସଙ୍ଗେ କଲା ରତି ॥
ଦିନକୁ ଦିନ ଏହି ମତେ । ସେହି ବଢ଼ିଲା ଅପ୍ରମିତେ ॥
ଯହୁଁ ସେ ଲଗିଲା ମୁହାଁସ । ବ୍ରାହ୍ମଣୀ ହେଲା ଗର୍ଭବାସ ॥
ଉଦର ବଢ଼ିଲାକ ଆସି । ବ୍ରାହ୍ମଣୀ ଭାବୁଥାଏ ବସି ॥
ଶ୍ରୁତ ଦିଶଇ ଅନୁମାନ । ଦେଖି ଜାଣିଲେ ପ୍ରଜାଜନ ॥
ଯହୁଁ ସେ ପ୍ରଘଟ ହୋଇଲା । ଶୂଦ୍ର ସେ ନଗ୍ର ପଳାଇଲା ॥
ବାରତା ପାଇ ଦଣ୍ଡଧାରୀ । ମନେ ବହୁତ କୋପକରି ॥
ଧରାଇ ଆଣିଲେ ବ୍ରାହ୍ମଣୀ । କରନ୍ତି ଛିଛିକାର ପୁଣି ॥
ଭର୍ତ୍ସନା କରି ଗାଳିଦେଲେ । ଏନଗ୍ରୁ ଯାଅ ଯା ବୋଇଲେ ॥
ଗାଲରେ ଚୂନକଳା ଦେଇ । ନଗ୍ରରୁ ଦେଲେ ଘଉଡ଼ାଇ ॥
ବାହାର କରି ଦେଲେ ଯହୁଁ । ଲାଜେ ବ୍ରାହ୍ମଣୀ ଗଲା ତହୁଁ ॥
ରହିଲା ବନସ୍ତ ଭିତରେ । ବ୍ୟାକୁଳ ହୋଇଣ ଚିତ୍ତରେ ।
ବହୁତ କରଇ ବେଦନ । ଲୋତକ ବହେ ଘନଘନ ॥
ଶୋକ ସମ୍ଭାଳି ସେହୁନାରୀ । ଶୋଇଲା ଉପବାସ କରି ॥

ପ୍ରଘଟ — ପ୍ରଖ୍ୟାତ

ଏକାନ୍ତ ହୋଇଣ ରହିଲ । ଅତି କଷ୍ଟରେ ଦିନନେଲ ॥
ବ୍ୟାଘ୍ର ଭକ୍ଷ କରି ନ ଖାଇଲେ । ପାପୀ ବୋଲିଣ ଛାଡ଼ିଦେଲେ ॥
କ୍ଷୁଧାର୍ତ୍ତ ହୋଇଣ ବ୍ରାହ୍ମଣୀ । ନଗ୍ରରୁ ଭିକ୍ଷା ମାଗିଆଣି ॥
ରନ୍ଧନ କରି ଅନ୍ନ ଖାଇ । ବନେ ବଞ୍ଚିଲ ମାସ ଦୁଇ ॥
ସମ୍ପୂର୍ଣ୍ଣ ଦଶମାସ ହେଲା । ବ୍ରାହ୍ମଣୀ ପେଟ ବ୍ୟଥା ହେଲା ॥
ଆକୁଳେ ବିଧାତା ସୁମରି । ଜନ୍ମିଲା ଏକଇ କୁମାରୀ ॥
ଦୁହିତା ଗୋଟିକ ଘେନିଣ । ବ୍ରାହ୍ମଣୀ ଗଲା ତତକ୍ଷଣ ॥
ନଦୀରେ ଦେଲାକ ଭସାଇ । ରହିଲା ଆନ ଗ୍ରାମେ ଯାଇ ॥
କହନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଉଦ୍ଧବ ରସବାଣୀ ॥
ମଲୟ ଗିରି ପର୍ବତେ । ସାରସ ଥିଲା ଯେ ନିଶ୍ଚିନ୍ତେ ॥
ବିବରୁ ବାହାର ହୋଇଲା । ଆହାର ଅର୍ଥେ ବୁଲିଗଲା ॥
ତୃଷାରେ ବାହାର ହୋଇଣ । ନଦୀକି ଚଳିଗଲା ପୁଣ ॥
ଜଳ ତଟରେ ପରବେଶ । ତୃଷାରେ କଲା ନୀରଗ୍ରାସ ॥
ନୀର ପିଇଣ ଉଭାହୋଇ । ତଟ ଦିଗକୁ ପୁଣି ଚାହିଁ ॥
ଦେଖିଲା ଜଳେ ପଡ଼ିକରି । ଭାସୁଛି ବାଳୁତ କୁମାରୀ ॥
ନିକଟେ ହୁଅନ୍ତେ ଧଇଲା । ବହୁତ ବିକଳ ହୋଇଲା ॥
ବୋଲଇ ଏମନ୍ତ କୁମାରୀ । ଜନ୍ମ ଯେ କଲା କେଉଁ ନାରୀ ॥
କେମନ୍ତେ ମୂର୍ଚ୍ଛିଲ ତରୁଣୀ । ଜଳେ ଭସାଇ ଦେଲାଆଣି ॥
ମୁହିଁ ଏହାକୁ ଘେନିଯିବି । ଯତନ କରିଣ ପାଳିବି ॥
ଏତେ ବିଚାରି ଘେନିଗଲା । ନିଜ ସ୍ଥାନରେ ନେଇଗଲା ॥
ଆପଣା ବିବର ଭିତରେ । କନ୍ୟାକୁ ଶୁଆଇଲା ଧୀରେ ॥
ମତ୍ସ୍ୟ ଦେଶକୁ ଗଲା ଧାଇଁ । ଗୋରସ ଆଣିବାର ପାଇଁ ॥
ହୋଇଲା ବିରାଟ ରାଜ୍ୟରେ । ମିଳିଲା କ୍ଷୀର ନନ୍ଦଘରେ ॥
ଦୁଧ ଟିକାଏ ଆଣି ଦେଲା । ପିଅନ୍ତେ ସେ କନ୍ୟା ବଞ୍ଚିଲା ॥
ପୟ ଆଣଇ ପ୍ରତିଦିନ । ଦୁହିତା ସୁଖେ କରେପାନ ॥
ଦିନକୁଦିନ ବଢ଼େ ବାମା । ଶୁକ୍ଳ ପକ୍ଷେ କି ଚନ୍ଦ୍ରମା ॥
ରୂପେଣ ନାହିଁ ପଟାନ୍ତର । କି ସେ ଚଞ୍ଚଳା ଅବତାର ॥

---

ସାରସ — ହଂସ
ବିବର — ଗର୍ତ୍ତ
ପଟାନ୍ତର — ତୁଳନା

କଅବା ଅଟଇ ପାର୍ବଣୀ । ମର୍ତ୍ତ୍ୟେ ହୋଇଛି ଉତପତ୍ତି ॥
ଯୁବତୀ କୁଳ ଶିରୋମଣି । ଅଟଇ ସର୍ବ ସୁଲକ୍ଷଣୀ ॥
ବନର ଭିତରେ ଜନ୍ମନ୍ତେ । ସେ କନ୍ୟା ବଢ଼ଇ ଗୁପତେ ॥
ଯତନେ ପାଳଇ ସାରସ । ହୋଇଲା ସପତ ବରଷ ॥
ବନେ ଶୃଗାଳ ବୁଲିଗଲା । ସେ କନ୍ୟା ଏକାନ୍ତରେ ଥିଲା ॥
ସ୍ୱଭାବେ ମାର୍ଗଶିର ମାସ । ଶିଶିର ହୋଇଛି ପ୍ରବେଶ ॥
ଗାତ ଭିତରେ ଥାଇ ବାଳୀ । ଶୀତରେ ହୋଇଲା ବ୍ୟାକୁଳୀ ॥
ବନରୁ ବାହାର ହୋଇଲା । ଆଦିତ୍ୟ ଉଇଁଛି ଦେଖିଲା ॥
ଆନନ୍ଦ ହୋଇ ବେଗେଆସି । ରବି କିରଣ ପାଇ ବସି ॥
ଶୀତ ଛୁଡ଼ନ୍ତେ ସୁଖପାଇ । ଶରଧା ପାଇଣ ଖେଳଇ ॥
ଏମନ୍ତେ ଶୁଣ ଦିବ୍ୟରସ । ଏକଇ ରାଜା ପରବେଶ ॥
ମଳୟ ବସନ୍ତ ତାନାମ । ଏ ରବିତଳେ ନାହିଁ ସମ ॥
ଧାର୍ମିକ ସତ୍ୟବନ୍ତ ବୀର । ରୂପେ ମଦନ ପଟାନ୍ତର ॥
ଗଜ ପିଠିରେ ବିଜେକରି । ହସ୍ତରେ କମାଣେକ ଧରି ॥
ସଙ୍ଗତେ ବଳ ଅପ୍ରମିତ । ପାଇକ ରାଉତ ମାହୁନ୍ତ ॥
ପାତ୍ର ସାମନ୍ତ ମହାରଥୀ । ଅନେକ ଅଛି ଘୋଡ଼ାହାତୀ ॥
ଆଲଟ ଚାମର ପକାନ୍ତି । ବଢ଼ାଇ ସୈନ୍ୟରେ ଚଳନ୍ତି ॥
ମୃଗୟା ଅର୍ଥେ ଆସିଥିଲା । ଦୂରହୁଁ କନ୍ୟାକୁ ଦେଖିଲା ॥
କନ୍ୟାହିଁ ସେ ରାଜାକୁ ଦେଖି । ପଳାଇଗଲା ଶଶୀମୁଖୀ ॥
ବିବରେ ପଶିଲା ତଡ଼ିତ । ରାଜନ ଛୁଟାଇଲା ହସ୍ତୀ ॥
ମିଳିଲେ ବିବର ଦ୍ୱାରେଣ । ରହିଲେ ଚକିତ ହୋଇଣ ।
ବୋଇଲେ ପାତ୍ରମନ୍ତ୍ରୀ ଯୁହିଁ । କନ୍ୟାଏ ଦେଖିଲଇଁ ମୁହିଁ ॥
ସେ ଅଟେ ଅପୂର୍ବ ସୁନ୍ଦରୀ । ଯୁବତୀ ନାହିଁ ସମସରି ॥
ଏହି ଠାବରେ ବସିଥିଲା । ଆମ୍ଭଙ୍କୁ ଦେଖି ପଳାଇଲା ॥
ପଶିଲା ଏହି ବିବରେଣ । ଖୋଳାଅ ଲୋକ ଲଗାଇଣ ॥
ତେବେ ଜାଣିବା ତଥ୍ୟକରି । ଶରଧା ବଳିଲା ମୋହୋରି ॥
ଆଜ୍ଞା ପାଇଣ ମନ୍ତ୍ରୀବରେ । କୋଡ଼ିଆମାନଙ୍କୁ ରାଇଲେ ॥
ବୋଇଲେ ଖୋଳ ଏ ବିବର । କନ୍ୟାଏ ପଶିଛି ଏଥିର ॥
ଶୁଣି କୋଡ଼ିଆ ଦଳ ଗଲେ । ବହନ କଣେଣ ଖୋଳିଲେ ॥

ଆଦିତ୍ୟ — ସୂର୍ଯ୍ୟ

ଭିତରେ ଦେଖିଲେ ସୁନ୍ଦରୀ । ଘେନି ଅଇଲେ ହସ୍ତଧରି ॥
ରାଜା ସମ୍ମୁରେ ନେଇ ଦେଲେ । ନୃପତି ହରଷ ହୋଇଲେ ॥
ନେଇଣ ବସାଇଲେ କୋଳେ । ସେ କନ୍ୟା କାନ୍ଦଇ ବିକଳେ ॥
ଗମନ କଲା ମହୀପାଳ । ଏମନ୍ତେ ମିଳିଲା ଶୃଗାଳ ॥
ଦେଖିଲା ନିଜପୁରେ ଯାଇଁ । ଦୁହିତା ଗୋଟି ତହିଁ ନାହିଁ ॥
ନଦେଖି ଗୋଡ଼ାଇଲା ବେଗେ । ମିଳିଲା ନୃପତିର ଆଗେ ॥
ଦେଖିଲା ନନ୍ଦିନୀକି ତାର । କୋଳେ ଧରିଛି ନୃପବର ॥
ସାରସ ଯାଇଁ କ୍ରୋଧଭରେ । ଡାକ ଛାଡ଼ିଲା ଉଚ୍ଚସ୍ୱରେ ॥
ବିକଳ ହୋଇଣ ବୋଲଇ । ଅନୀତି କରୁଛ କପାଇଁ ॥
ନେଉଛ ମୋହୋର ଦୁଲଣୀ । ଅତି ଯତନେ ଥିଲି ପାଳି ॥
ରାଜା ଅଧର୍ମ ଆଚରିଲେ । ନରକେ ପଡ଼ଇ ସେ ଭଲେ ॥
ତୁ ରାଜା ଅଟ ହୋ ଅଜ୍ଞାନୀ । ବଳେ ନେଉଛୁ ମୋ ନନ୍ଦିନୀ ॥
କ୍ଷଣକେ ରହ ଦଣ୍ଡଧାରୀ । ଦେବଇଁ କନ୍ୟା ଦାନକରି ॥
ବିଭା ହୋଇଣ ପଛେ ନିଅ । କୁଶଳେ ଘେନି ପ୍ରାଣୀ ଥାଅ ॥
ଶୁଣିତା ବୋଲଇ ରାଜନ । ତୁ ମୋତେ କର ହୋ ପ୍ରଦାନ ॥
ବିଶେଷ ତୋର ଏଦୁଲଣୀ । ଆପଣେ ଦିଅ ହସ୍ତେ ତୋଳି ॥
ସାରସ ସନମତ କଲା । ରାଜା ହସ୍ତୀରୁ ଓହ୍ଲାଇଲା ॥
ଶୃଗାଳ ଅରଣ୍ୟେ ପଶିଲା । ହରିଡା ବାହାଡ଼ା ଆଣିଲା ।
ନନ୍ଦିନୀ କର ଗୋଟି ଧରି । ଦେଲା ଉପର ହସ୍ତକରି ॥
ରାଜା ପାତିଲା ତଳେହସ୍ତ । ସନ୍ତୋଷେ ନେଲା ନୃପନାଥ ॥
ଶୃଗାଳ ବୋଇଲାକ ରହିଁ । ହୋ ରାଜା ଯାଉଅଛୁ ମୁହିଁ ॥
ବୋଇଲା କନ୍ୟା ଦାନ କରି । ଏଥୁ ମୁଁ ନ ଭକ୍ଷିବି ବାରି ॥
ରାଜା ବୋଲଇ ତୋର ଇଚ୍ଛା । ଯେଣେ ପୂରଇ ମନୋବାଞ୍ଛା ॥
କନ୍ୟାକୁ ଘେନି ରାଜା ଗଲା । ଆପଣା ରାଜ୍ୟରେ ମିଳିଲା ॥
ନିଜ ନଗରେ ପରବେଶ । ଭଣେ ନୃସିଂହ ଦାସ ଶିଷ୍ୟ ॥
ପାମର କୃଷ୍ଣ ଦାସ କହି । ଶୁଣନ୍ତେ ପାପ ହୋଏ ଦହି ॥
ମଳୟ ବସନ୍ତ ନୃପତି । କୃଷ୍ଣରେ ବଢାଇ ଭକତି ॥
ମାଘ ସ୍ନାହାନ କରୁଥାଇ । ବ୍ରାହ୍ମଣେ ବହୁ ଦାନ ଦେଇ ॥
ତେଣୁଟି ଏକନ୍ୟା ପ୍ରାପତ । ସୁଜନେ କର ଏହିବ୍ରତ ॥

---

ଦୁଲଣୀ — ଝିଅ

ମାଘ ସ୍ନାହାନ ଯେବେ କରି । ଗୋହତ୍ୟା କରିଥିଲେ ତରି ॥
ମଦିର ପାନ କରିଥିଲେ । ଖଣ୍ଡଇ ମାଘସ୍ନାନ କଲେ ॥
ଦିବ୍ୟ ସୁବର୍ଣ୍ଣ ଦିବ୍ୟଧନ । ପ୍ରାପତ ହୁଅଇ ଏମାନ ॥
ଅନ୍ତେ ଲଭଇ ସ୍ୱର୍ଗଗତି । ଏମନ୍ତ କହିଲେ ଶ୍ରୀପତି ॥
ସୁଜନେ ଶୁଣି ହୁଅ ତୋଷ । ମୋହୋର ନଘେନବ ଦୋଷ ॥
ପୁରାଣ କହିଲି ମୁଁ ଗୀତେ । ଯାହା କହିଲେ ଜଗନ୍ନାଥେ ॥
ତେଣୁ ମୁଁ କଲଇଁ ଭରସା । ସେ ପ୍ରଭୁ ପୁରାଇବେ ଆଶା ॥
ଶୁଣନ୍ତେ ଚତୁର୍ବର୍ଗ ପାଇ । ସୁଜନେ ତର ଏହା ଗାଇ ॥
ଉଦ୍ଧବେ କହିଲେ ମୁରାରି । ଶଏ ଛପ୍ପନକଶରେ ସରି ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବେ ସମ୍ବାଦେ
ମଳୟ ବସନ୍ତ ରାଜା ପ୍ରସ୍ତାବେ ଶୃଗାଳ କନ୍ୟାଦାନ କଥନେ
ନାମ ପଞ୍ଚମୋଽଧ୍ୟାୟଃ

—×—

ଚତୁର୍ବର୍ଗ — ଧର୍ମ, ଅର୍ଥ, କାମ, ମୋକ୍ଷ ।

# ଷଷ୍ଠ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଭକତ ଶିରୋମଣି ॥
ମଳୟ ବସନ୍ତ ରାଜନ । ଅତି ଆନନ୍ଦ ତାର ମନ ॥
ଶୃଗାଳ ଦୁହିତାକୁ ନେଇ । ନୃପତି ନିଜପୁରେ ଥୋଇ ॥
ସାରସ ବିଚାରଇ ଚିତ୍ତେ । ନଥିବି ଏହାର ସୀମାନ୍ତେ ॥
ଥିଲେ ମୋ ଧର୍ମ ଯିବ ନାଶ । ଆଜ ମୁଁ ଯିବି ପରବେଶ ॥
ଏତେ ବିଚାରି ହୃଦଗତେ । ବାହାର ହୋଇଲା ତୁରିତେ ॥
ଏକାନ୍ତେ କରଇ ଗମନ । ଅଟଇ ବାରସତ୍ୱ ପୁଣ ॥
ମାସକେ ପଥ ନ ସରିବ । ଦିନକେ କେ ଯାଇ ପାରିବ ॥
ପ୍ରଥମେ ଗଲା ଷୋଳକୋଶ । ସେଦିନ କଲା ଉପବାସ ॥
ରହିଲା ବେଲ ବୃକ୍ଷତଳେ । ନିଦ୍ରା ନଆସେ ବେନିଡୋଳେ ॥
ବିଶେଷ ଖାଇନାହିଁ କିଛି । ସକାଳୁ ଉପବାସ ଅଛି ॥
କ୍ଷୁଧାରେ ନିଦ୍ରା ନ ମାଡ଼ଇ । କେତେବେଳେ ବେଳେ ରାତ୍ରିପାହି ॥
ପ୍ରଭାତୁ ଉଠି ଚଳିଗଲା । ଦ୍ୱାଦଶ କୋଶେ ଯାଇଁ ହେଲା ॥
କ୍ଷୁଧା ତୃଷାରେ ପୀଡ଼ାପାଇ । ଅତି ବିକଳ ତାର ଦେହି ॥
ଧର୍ମକୁ କରି ପ୍ରତିଆଶ । ଜଳହିଁ ନକଲାକ ଗ୍ରାସ ॥
ବିକଳେ କେତେ ଦୂର ଯାଇ । ପଥରେ ଫୁଟିଣ ବସଇ ॥
ଅତିହିଁ ଆସକ୍ତ ହୋଇଣ । ଡାକଇ ରଖ ନାରାୟଣ ॥
ରହିଲ ଗୋମତୀ ପର୍ବତେ । ପୁଣିହିଁ ଚଳିଲା ପ୍ରଭାତେ ॥
ନିସତେ ଯାଉଅଛି ପେଲି । ଚରଣ ବଥାଇଲା ଗୁଳି ॥
କ୍ଷୁଧାରେ ପୋଡ଼ୁଅଛି ପେଟ । ଆତ୍ମା ହେଉଛି ଛଟପଟ ॥
ତୃଷାରେ ଶୁଖିଲାଣି ତୁଣ୍ଡ । ଦୁର୍ବଳ ହେଇ ଆସିପିଣ୍ଡ ॥
ତଥାପି ନକରେ ଆହାର । ସତ୍ୟ ରଖିବା ବାଞ୍ଛା ତାର ॥
ନିରତେ କରଇ ଗମନ । ହୋଇଲା ଏକବିଂଶ ଦିନ ॥
ତେବେହେଁ ବାଟ ନସରିଲା । ଶୃଗାଳ କିଛି ନଖାଇଲା ॥
ଅତି ଦୁର୍ବଳ ହେଲାଆସି । ଅଶ୍ୱଥ ତରୁମୂଳେ ବସି ॥
ଡାକଇ ଆତଙ୍କ ହୋଇଣ । ହେ କୃଷ୍ଣ କର ପରିତ୍ରାଣ ॥

ପଦ୍ମ ଚରଣେ ଦେଇ ମନ । ଶରୀରୁ ଗ୍ରଡ଼ନ୍ତି ଜୀବନ ॥
ଶୃଗାଳ ଯେତେବେଳେ ମଲା । ସ୍ୱର୍ଗରୁ ବିମାନ ଆଇଲା ॥
ତାକୁ ବିମାନେ ବସାଇଲେ । ଦେବତାମାନେ ଘେନିଗଲେ ॥
ବହୁତ ଗଉରବ କରି । ଶ୍ରୀହରି ଶବଦ ଉଚ୍ଚାରି ॥
ଆଲଟ ଚାମର ବସନ । ପାଶେ ଢାଳନ୍ତି ଘନଘନ ॥
ସୁନ୍ଦରୀ ସ୍ତ୍ରୀମାନେ ମିଳି । ଆନନ୍ଦେ ଦ୍ୟନ୍ତି ହୁଳହୁଳି ॥
ମଙ୍ଗଳ ଗୀତ କେ ଗାଆନ୍ତି । ଗନ୍ଧର୍ବେ ଦୁନ୍ଦୁଭି ବଜାନ୍ତି ॥
ବଜାନ୍ତି ଭେରୀ ଯନ୍ତ୍ର ତାଳ । ସ୍ୱର୍ଗରେ ମିଳିଲା ଶୃଗାଳ ॥
ହରଷେ ସହସ୍ର ଲୋଚନ । ତାହାକୁ କରାଇଲେ ସ୍ନାନ ॥
ପିନ୍ଧାଇ ଅମଳାନ ବାସେ । ଚନ୍ଦନ ଲେପିଲେ ହରଷେ ॥
ପାରିଜାତକ ପୁଷ୍ପ ଆଣି । ତା ଶିରେ ମଣ୍ଡିଲେକ ପୁଣି ॥
ଅମୃତ ଭୋଜନ କରାଇ । ତା ଅଙ୍ଗେ ଅଳଙ୍କାର ଦେଇ ॥
ବସିଲା ଦେବସଭା ମଧ୍ୟେ । ସର୍ବେ ଅଛନ୍ତି ସୁରସିଦ୍ଧେ ॥
କହନ୍ତି ପ୍ରଭୁ ବାସୁଦେବ । ଶୁଣିଲୁଟିକି ଯେ ଉଦ୍ଧବ ॥
ସେହି ଶୃଗାଳ ମହାଜ୍ଞାତା । ରାଜାକୁ ଦେଲାକ ଦୁହିତା ॥
ଆପଣେ ସତ୍ୟବ୍ରତ ରଖି । ଅନ୍ନ ନ ଖାଇ ମଲା ଭୋକି ॥
ଏବେ ବସିଲା ଯାଇ ସ୍ୱର୍ଗେ । ପୂଜା ପାଇଲା ଦେବସଙ୍ଗେ ॥
କୀର୍ତ୍ତି ରଖିଲା ସର୍ବକାଳେ । ପ୍ରଶଂସା କରନ୍ତି ସକଳେ ॥
ତାହାର ନାମ ଗୋଟି ଧରି । ଯେ ତାକୁ ପ୍ରଭାତେ ସୁମରି ॥
ପଞ୍ଚ ହାତରେ ଲେଖାହୋଇ । ଜୀମୂତ ବାହନଟି ସେହି ॥
କନ୍ୟା ଦାନର ଏତେ ଫଳ । ଆପେ ଉଦ୍ଧରେ ବେନିକୁଳ ॥
ଗଙ୍ଗା ସ୍ନାହାନେ ଫଳଯେତେ । ସୁରଭି ଦାନ ଦେଲେ ତେତେ ॥
ସହସ୍ର ବ୍ରାହ୍ମଣ ବରିଲେ । ତାହାଙ୍କୁ ବିଭା କରାଇଲେ ॥
ତର୍ହିଁ ଯେତେକ ଫଳପାଇ । ମାଘସ୍ନାନ ସେ ଫଳଦେଇ ॥
ଆପଣା ଭଗ୍ନୀର ସୁତକୁ । ବିଭା କରାଇବ ଝିଅକୁ ॥
ତହିଁ ରହିବ ଧର୍ମ ଯେତେ । ମାଘ ସ୍ନାନର ଫଳ ତେତେ ॥
କହଇ ଧାନକୃଷ୍ଣ ଦାସ । ସୁଜନେ ହରିନାମ ଘୋଷ ॥
ଉଦ୍ଧବ କହେ ମହାବାହୁ । ପଞ୍ଚାନବେରେ ଶେଷ ଏହୁ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ଜୀମୂତ ବାହନ ସ୍ୱର୍ଗ ଆରୋହଣେ ନାମ ଷଷ୍ଠୋଽଧ୍ୟାୟ

---

ଜୀମୂତ — ମେଘ, ପର୍ବତ    ଭଗ୍ନୀ — ଭଉଣୀ

# ସପ୍ତମ ଅଧ୍ୟାୟ

ଉଦ୍ଧବ ଉବାଚ

ଉଦ୍ଧବ ଗୋବିନ୍ଦ ବଚନେ । ସନ୍ତୋଷ ହୋଇଲେକ ମନେ ॥
ବୋଇଲା କୃଷ୍ଣ ମୁଖ ଚାହିଁ । ହେ ପ୍ରଭୋ ନମସ୍କରଇ ମୁହିଁ ॥
ଶୁଣିଲ ମାଘର ମାହାତ୍ମ୍ୟ । ଖଣ୍ଡିଲ କଳିକାଳ କର୍ମ ॥
ଆଉ କଥାଏ ଆଜ୍ଞା ହେଉ । ମନୁ ସଂଶୟ ମୋର ଯାଉ ॥
ବେଶ୍ୟାର ହସ୍ତେ ଅନ୍ନ ଖାଇ । କୌଳିକ ଧର୍ମକୁ ବୁଡ଼ାଇ ॥
ଅନ୍ତେଣ ପ୍ରାଭବ ପାଇଲା । ଶୃଗାଳ ରୂପେ ଜାତହେଲା ॥
ପଶୁ ହୋଇଣ ଧର୍ମପାଳ । ପୋଷିଲା ଏକଇ ଦୁଲାଳୀ ॥
ରାଜାକୁ କନ୍ୟା ଦାନକଲା । ଆପଣେ କିଛି ନ ଖାଇଲା ॥
ସତ୍ୟ ପାଳିଣ ଦେଲାପ୍ରାଣ । ବସିଲା ସ୍ୱର୍ଗରେ ଯାଇଣ ॥
ଯେବଣ ବେଶ୍ୟା ମଞ୍ଚେ ଥିଲା । ସେ ପୁଣି କସ କୃତ୍ୟ କଲା ॥
ପୂର୍ବେ ଅର୍ଜିଲା କେଉଁ ପାପ । ମଞ୍ଚେ ହୋଇଲା ବେଶ୍ୟା ରୂପ ॥
ପର ଦ୍ରବ୍ୟରେ କଲା ଆଶ । ପରେ ବଅଇ ରତିରସ ॥
ଧର୍ମ ଅଧର୍ମ ଆଦିକରି । କିଛି ନଜାଣେ ବେଶ୍ୟାନାରୀ ॥
ତାହାର ଗତ ଜନ୍ମ କଥା । ବୁଝାଇ କହିବ ବ୍ୟବସ୍ଥା ॥
ଏତେ ବୋଲିଣ ପାଦେପଡ଼ି । ଉଠି କପୋଳେ କରଯୋଡ଼ି ॥

ଶ୍ରୀ ଭଗବାନୁବାଚ

ଉଦ୍ଧବ ଭକ୍ତି ଭାବ ଦେଖି । ହସି ବୋଲନ୍ତି ପଦ୍ମଆଖି ॥
ତୁ ମୋତେ ପଚାରିଲୁ ଯାହା । ବିସ୍ତାରି କହୁଅଛି ତାହା ॥
ଶୁଣ ଉଦ୍ଧବ ହେତୁକରି । ସେ ବେଶ୍ୟା ସ୍ୱର୍ଗ ଅପସରି ॥
ତାହାର ନାମ ମଦନିକା । ଅତ୍ୟନ୍ତ ସୁନ୍ଦରୀ ନାୟିକା ॥
ପୂର୍ବେ ଯେ ତ୍ରେତୟା ଯୁଗରେ । ସ୍ୱର୍ଗେ ଦେବତା ସଭାପରେ ॥
ସକଳ ଦେବତାଏ ବସି । ଦିନେ ବିଚାର କଲେ ଆସି ॥
ବୋଇଲେ କର ମାଘସ୍ନାନ । କଲେ ବହୁତ ଅଛି ପୁଣ୍ୟ ॥
ଆମ୍ଭେ ତା କର୍ମାଇ ଛାଡ଼ିବା । ସମସ୍ତେ ସ୍ନାହାନ କରିବା ॥

ଏସନ ବୋଲ ବିଚାରିଲେ । ସର୍ବେ ସମ୍ମତ ତହିଁକଲେ ॥
ଧର୍ମ କଥାରେ ଦେଲେ ମନ । ଚଳିଲେ ଯେ ଯାହା ଭୁବନ ॥
ରଜନୀ ପ୍ରଭାତୁ ଉଠିଲେ । ସମସ୍ତେ ମାଘ ସ୍ନାନ କଲେ ॥
ସେ ନାରୀ ତାଙ୍କ ସଙ୍ଗେଯାଇ । ମାଘସ୍ନାନ ଯେ କରୁଥାଇ ॥
ପଡ଼ିଲା ଶୀତ ଅପ୍ରମେୟ । ଶୀତକୁ କରି ମହାଭୟ ॥
ମଦନା ଅଳସ କରଣ । ପ୍ରଭାତୁ ଉଠିଲାକ ପୁଣ ॥
ନୀର ଟିକାଏ ତତାଇଲା । ତହିଁରେ ମାଘସ୍ନାନ କଲା ॥
ତେଣୁ ହୋଇଲା ବଡ଼ଦୋଷୀ । ଜନ୍ମ ହୋଇଲା ମଞ୍ଚେ ଆସି ॥
ପିଙ୍ଗଳା ନାମେ ବେଶ୍ୟା ଥିଲା । ତାହାର ଗର୍ଭେ ଜାତହେଲା ॥
ବଢ଼ିଲା ଧନୁଦନ ନାରୀ । ବେଶ୍ୟା ଆଚାର ସେହୁ କରି ॥
ଅଜ୍ଞାନେ ଗଲା କତିଦିନ । ପୁଣି ଉଦୟ ହେଲାଜ୍ଞାନ ॥
ଦିନେକି ବିଚାରଇ ଚିତ୍ତେ । ଏଥୁଁ ତରିବ ମୁଁ କେମନ୍ତେ ॥
କେବଣ ପାପ କଲି ପୂର୍ବେ । ବେଶ୍ୟା ହୋଇଲି ଆସିଏବେ ॥
ଧର୍ମ ଅଧର୍ମ ନ ଜାଣିଲି । ପଶୁଙ୍କ ପ୍ରାୟେ ଦିନ ନେଲି ॥
ବିଷ୍ଣୁରେ ହୋଇଲି ଅପ୍ରୀତି । କେପରି ପାଇବି ସୁଗତି ॥
ଏବେ କରିବି ମାଘସ୍ନାନ । ପାତକ ହୋଇବ ଦହନ ॥
ଏମନ୍ତେ ବିଚାରି ବିମୋଷ୍ଟି । ନିଶି ପ୍ରଭାତୁଁ ନଟୀ ଉଠି ॥
ପ୍ରୟାଗେ କରଇ ସ୍ନାହାନ । ବିଷ୍ଣୁଙ୍କୁ କରଇ ଦର୍ଶନ ॥
ଏହି ପ୍ରକାରେ ପ୍ରତିଦିନ । କରଇ ମକର ସ୍ନାହାନ ॥
ସ୍ନାହାନ ବିଧିମାନ ଯେତେ । ପାଳନ କଲା.ଦୃଢ଼ ଚିତ୍ତେ ॥
ଅଳପେ ପ୍ରାଣତ୍ୟାଗ ହେଲା । ସେନାରୀ ସ୍ୱର୍ଗକୁ ଚଳିଲା ॥
ଆନନ୍ଦ ହୋଇଣ ମନରେ । ଗମିଲା ଦେବଙ୍କ ମଧରେ ॥
ଏମନ୍ତ ବରଷକ ଗଲା । ମକର ମାସ ଆସି ହେଲା ॥
ସେହି ମଦନା ଅପସରୀ । ପୁଣହିଁ ମାଘସ୍ନାନ କରି ॥
ସଙ୍ଗତେ ସଖୀଗଣ ଘେନି । ବିମାନେ ବସିଲା ତରୁଣୀ ॥
ଗଙ୍ଗା ତୀରକୁ ଗଲାଚଳି । ବିମାନେ ବସି ସର୍ବବାଳୀ ॥
ରଥ ବାହିଲା ଧାଡିକାରେ । ଯାଇଁ ମିଳିଲା ଗଙ୍ଗାତୀରେ ॥
ଗଙ୍ଗାରେ ସ୍ନାହାନ କରିଣ । ବାହୁଡ଼ି ଆସିବା ବେଳେଣ ॥
ମଦନା ପିନ୍ଧିବାର ଶାଢ଼ୀ । ଜଳ ଟୋପାଏ ତହିଁ ପଡ଼ି ॥
ଭୂତ ଯେ ଥିଲେ ରୁଣ୍ଡହୋଇ । ସମସ୍ତେ ବସିଥିଲେ ତହିଁ ॥

ତାଅଙ୍କ ଘର ଖସିଖରେ । ପଡ଼ିଲା ଭୂତର ଉପରେ ॥
ସେ ଭୂତ ନସ୍ତରଣ ଗଲା । ସ୍ୱର୍ଗରେ ଯାଇଣ ବସିଲା ॥
ତା ଦେଖି ଆଉ ଭୂତମାନେ । ଚକିତ ହୋଇଲେକ ମନେ ॥
ଆସ୍ତେ ଡାକଲେ ଉଚ୍ଚସ୍ୱରେ । କେ ଯାଉଅଛି ଆକାଶରେ ॥
ଗୋସାଇଁ ବାରେ ଦୟାକର । ଆମ୍ଭ ଉପରେ ସିଞ୍ଚ ଘର ॥
ଶୁଣି ମଦନା ଅପସରୀ । ବସନ ଚପୁଡ଼ିଲା ଧରି ॥
ପଡ଼ିଲା ଭୂତଙ୍କ ଉପରେ । ନସ୍ତାରି ଗଲେ ଧାଡକାରେ ॥
ଅମର ଆସ୍ଥାନେ ବସିଲେ । ସୁଖେ ଅମୃତ ଭୋଗକଲେ ॥
କହନ୍ତି ପ୍ରଭୁ ଭଗବାନ । ଶୁଣହେ ଭକତ ପ୍ରଧାନ ॥
ମାଘ ସ୍ନାହାନେ ଏତେ ଫଳ । ତୋ ଆଗେ କହିଲୁ ସକଳ ॥
ଶୁଣି ଉଦ୍ଧବ ତୋଷମନ । ଭଣେ ନୃସିଂହ ଦାସନାନ ॥
କହଇ ଘନକୃଷ୍ଣ ଦାସ । ପଞ୍ଚଷଷ୍ଟୀ ପଦରେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ମଦନା ଚରିତେ ଭୂତଗଣ ନସ୍ତାରଣେ ନାମ ସପ୍ତମୋଽଧ୍ୟାୟ

—×—

# ଅଷ୍ଟମ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଉଦ୍ଧବ ସତ୍ୟବାଣୀ ॥
ମାଘ ସ୍ନାନର ଫଳ ଏହି । ତୋ ଆଗେ କହିଲି ବୁଝାଇ ॥
ପୂର୍ବେ ଯେ ମଗଧ ଦେଶରେ । ଥିଲେ ବେଦଜନ ଚହିଁରେ ॥
ଜାତିରେ ଶୂଦ୍ର ସେ ଅଟଇ । ସେ ବେଦଜନେ ଦୁଇଭାଇ ॥
ଜ୍ୟେଷ୍ଠ ଭାଇର ନାମ ଗୋଟି । ସୁକୁଣ୍ଡଳ ବୋଲଣ ସେଟି ॥
କନିଷ୍ଠ ଭ୍ରାତା ନାମ ଶୁଣ । ବିକୁଣ୍ଡଳ ବୋଲି ନାମେଣ ॥
ସେ ବେଦଭାଇ ସୁଖେଥାନ୍ତି । ଦୁର୍ବୁଦ୍ଧି ପଣ ଆଚରନ୍ତି ॥
ବଡ ଦୁର୍ଜ୍ଜନ ସେହି ଦୁଇ । ଅଧର୍ମେ ଥାନ୍ତି ବେଦଭାଇ ॥
ଧର୍ମକୁ ତିଳାର୍ଦ୍ଧେ ନମାନ । ଗର୍ବିତ ପଣ ମନେସ୍ନେହ ॥
କରନ୍ତି ପରଧନ ଚୋରି । ହରନ୍ତି ଗଉରବ ନାରୀ ॥
ନିର୍ଦ୍ଦୟ ପଣ ସମଦମ । କରନ୍ତି ଅଡହିଁ ଅଧର୍ମ ॥
ଦେବତା ଧର୍ମ ନ ମାନନ୍ତି । ପଥ ଜଗି ବାଟ ଗୁଳନ୍ତି ॥
ପଶୁ ସ୍ୱଭାବେ ହନନ୍ତି । ପରର ତୋଟି ସେ କାଟନ୍ତି ॥
ପର ପଦାର୍ଥ ଘେନିଆସି । ନର୍ତ୍ତକୀ ନେ ଭୁଞ୍ଜୁଥାନ୍ତି ବସି ॥
ଦ୍ୟୁତ ଖେଳନ୍ତି ଥୋକେନେଇ । ବେଶ୍ୟା ରମନ୍ତି କଡ଼ି ଦେଇ ॥
ଭଲ ପଦାର୍ଥ ଅନୁସରି । ଆପଣନ୍ତି ହସ୍ତ ବର୍ଦ୍ଧିକରି ॥
ଘୃତ ଲବଣୀ ଦୁଧସର । ଅଧାମ ଗୋଟିକା ଶାକର ॥
ଛେନା ପାୟସ ଖଣ୍ଡଖଜା । ଆମ୍ବ ପଣସ ମିଷ୍ଟ ଗଜା ॥
ମାଛ ମାଉଁସ ନାନା ଦ୍ରବ୍ୟ । ଭୋଜନ କରୁଥାନ୍ତି ସର୍ବ ॥
ଦିବ୍ୟ ବସନମାନ ପିନ୍ଧି । କେଶେ କୁସୁମ ଗନ୍ଧବାନ୍ଧି ॥
କର୍ପୂର କସ୍ତୁରୀ ଚନ୍ଦନ । ଅଙ୍ଗରେ କରନ୍ତି ଲେପନ ॥
ଫୁଲ ପଣରେ ବୁଲୁଥାନ୍ତି । ବହୁତ ଅନ୍ୟାୟ କରନ୍ତି ॥
ହରି ଚରିତ କର୍ଣ୍ଣେ ଶୁଣି । ହସିଣ ନିନ୍ଦାବାକ୍ୟ ଭଣି ॥
ଦେଖିଲେ ବୈଷ୍ଣବମାନଙ୍କୁ । କରନ୍ତି ଉପହାସ ତାଙ୍କୁ ॥

---

ଦ୍ୟୁତ — ଜୁଆ

ହରି ମନ୍ଦର ଚିତା ଗୃହେଁ । ବୋଲନ୍ତି ଦେବନନ୍ଦ କପାଇଁ ॥
ଏଥିରେ ପ୍ରୟୋଜନ କସ । ହୋଇଛି ଏସନ୍ତ ଭବିଷ୍ୟ ॥
ତୁଳସୀ କାଠ କଣ୍ଠମାଳା । କମ୍ପାଇଁ ଭରିଅଛ ଗଳା ॥
ଏଥିରେ କେଉଁ ଫଳ ଅଛି । ଏ ଗୁର କଥା ନୋହେ କିଛି ॥
କି ଅର୍ଥେ କୃଷ୍ଣନାମ ଜପ । ତହିଁରେ ଖଣ୍ଡଇ କି ପାପ ॥
ଏମନ୍ତ ବୋଲି ନିନ୍ଦା କରି । ବିଅର୍ଥେ ଘନଜନ ହସି ॥
ଏମନ୍ତେ କିଛି ଦିନ ଅନ୍ତେ । ବିଚାର କଲେ ବେନି ଭ୍ରାତେ ॥
ବୋଲଇ ସୁକୁଣ୍ଡଳ ସ୍ୱହେଁ । ମିତ୍ର ପୁରକୁ ଯିବି ମୁହିଁ ॥
ସେ ମୋର ଅତି ପ୍ରିୟ ସଖା । ଅନେକ ଦିନୁ ନାହିଁ ଦେଖା ॥
ତହିଁକି ଯାଉଅଛି ମୁହିଁ । ଆସିବି କିଛି ଦିନ ରହି ॥
ଶୁଣି କନିଷ୍ଠ ଭ୍ରାତା ତୋଷ । ବୋଲଇ ତହିଁ ଯାଇ ଆସ ॥
ଶୁଣି ସୁକୁଣ୍ଡଳ ଏ ବାଣୀ । ଘରୁ ବାହାର ସେହିକ୍ଷଣି ॥
ଯେବା ମିଳଲ ତାହା ନେଲ । ସାନନ୍ଦ ମନେ ଚଳିଗଲ ॥
ଧନୁ ଶୁକଳ ଏକାଦଶୀ । ସେ ଦିନୁ ସୁକୁଣ୍ଡଳ ଆସି ॥
ଗମିଲ ପଞ୍ଚବିଂଶ କୋଶ । ମିତ୍ର ଭୁବନେ ପରବେଶ ॥
ତା ନାମ ଅନନ୍ତ କେଶରୀ । ଧାର୍ମିକ ପଣେ ନାହିଁ ସରି ॥
ଦେଖି ହରଷ ବେନିଜନ । କଲେ ଯେ କୋଳ ସମ୍ଭାଷଣ ॥
ଏକଇ ଆସନରେ ବସି । ଅନ୍ୟାନ୍ୟ କୁଶଳ ସମ୍ଭାଷି ॥
ବହୁତ ଗଉରବ ପାଇ । ରହିଲ ସୁକୁଣ୍ଡଳ ତହିଁ ॥
ଆଦିତ୍ୟ ଅସ୍ତ ଯହୁଁ ଗଲ । ରନ୍ଧଣା ବିଧି ମିତ୍ର କଲ ॥
ଅନ୍ନ ସୁକୁଣ୍ଡଳ ରନ୍ଧଣ । ଅଇଲ ସ୍ନାହାନ କରିଣ ॥
ଭକ୍ଷିଣ ସନ୍ତୋଷ ହୋଇଲ । ଉଠିଣ ଆଚମନ କଲ ॥
ଯାଇଁ ମିଳଲ ମିତ୍ରପାଶେ । ତାମ୍ବୁଳ ଭୁଞ୍ଜନ୍ତି ହରଷେ ॥
ଏସନ କଲେ ମିତ୍ର ବେନି । ଏମନ୍ତ ପାହିଲ ରଜନୀ ॥
ସେ ଦିନ ମକର ସଂକ୍ରାନ୍ତି । ସ୍ନାହାନ ଅର୍ଥେ ଲୋକେ ଯାନ୍ତି ॥
ପ୍ରଭାତୁଁ ଅନନ୍ତ ଉଠିଲ । ମାଘ ସ୍ନାହାନ କରି ଗଲ ॥
ବୋଲଇ ସୁକୁଣ୍ଡଳ ଗୃହେଁ । ହେ ମିତ୍ର ଉଠିଲ କମ୍ପାଇଁ ॥
ତା ଶୁଣି ବୋଇଲ ବଚନ । କରିବ ମକର ସ୍ନାହାନ ॥
ଶୁଣି ବୋଲଇ ସୁକୁଣ୍ଡଳ । ଏଥି ଲଭିବ କେଉଁଫଳ ॥

---

ତାମ୍ବୁଳ — ପାନ

ମାଘ ସ୍ନାହାନ କଥା କର । ଏଥିଅର୍ଥେ ଶୀତେ ସିନାମର ॥
ଅନନ୍ତ କହେ ମିତ୍ର ଶୁଣ । ମାଘ ସ୍ନାହାନେ ଯେତେ ପୁଣ୍ୟ ॥
ମାଘ ସ୍ନାହାନ ଯେବେ କର । ସକଳ ପାପରୁ ନସ୍ତର ॥
ଜ୍ଞାନ ଅଥବା ଅଜ୍ଞାନରେ । ଗୋହତ୍ୟା ଯେବେ ପ୍ରାଣୀ କରେ ॥
ତହିଁରେ ଯେତେ ପାପ ହୋଇ । ମାଘ ସ୍ନାହାନ କଲେ ଯାଇ ॥
ଯେ ଅବା ବ୍ରହ୍ମହତ୍ୟା କରେ । ମାଘ ସ୍ନାହାନ କରି ତରେ ॥
ସଂସାରେ ଛନ୍ତି ଯେତେ ଲୋକ । ତା ମଧ୍ୟେ ଯେତେ ଅପୂଜିକ ॥
ସେ ପ୍ରାଣୀ ମହାପାପୀ ଜାଣ । ନରକେ ପଡ଼ନ୍ତି ଅନେଣ ॥
ସେ ପ୍ରାଣୀ ମହାପାପୀ ହୋଇ । ତା ମୁଖ ଚହିଁ ନ ଯୋଗାଇ ॥
ସେ ଯେବେ ଏମନ୍ତ କରିବ । ସେବାରେ ଗୁରୁଙ୍କୁ ତୋଷିବ ॥
ମକର ସ୍ନାନ ଶୁଦ୍ଧ ଚିତ୍ତେ । କରିବ ମାସକ ପର୍ଯ୍ୟନ୍ତେ ॥
ବିଶ୍ୱାସଘାତାଦି କଳୁଷ । ତକ୍ଷଣେ ହୋଇବ ବିନାଶ ॥
ଦୁହିତା ହୋଇଲେ ଦୋଷୀର । ମାଘ ସ୍ନାହାନ ଯେବେ କରି ॥
ଦୁରିତ ଦହେ ଅବହେଳେ । ଅନ୍ତେ ବସଇ ସ୍ୱର୍ଗଆଳେ ॥
ଆବର ଯେତେ ପାପମାନ । ସମସ୍ତ ହୁଅଇ ଦହନ ॥
ଶୁଣିବା ମିତ୍ର ହୁଏ କାନ୍ତି । ମାଘ ସ୍ନାହାନ ଫଳଶ୍ରୁତି ॥
ମାର୍କଣ୍ଡ ଋଷିଙ୍କ ମୁଖରୁ । ଶୁଣି ମୁଁ ଅଛି ତାଙ୍କଠାରୁ ॥
ତୁମ୍ଭେ ପୁଚ୍ଛିଲ ମୋତେ ଯାହା । ଫେଡ଼ିଣ କହିଲି ମୁଁ ତାହା ॥
ଶୁଣି ହରଷ ସୁକୁଣ୍ଡଳ । ବୋଲଇ ଦୁହେଁ ସିବାଗୃଲ ।
ସ୍ନାହାନ କରିବଇଁ ମୁହିଁ । ଯଦ୍ୟପି ଏତେ ଧର୍ମ ତହିଁ ॥
ଏସନ ବୋଲି ମିତ୍ର ଦୁଇ । ସେଠାରୁ ଗଲେ ବେଗ ହୋଇ ॥
ଯାଇଁ ମିଳିଲେ ଗଙ୍ଗାକୂଳେ । ସ୍ନାହାନ କଲେ ପୁଣ୍ୟଜଳେ ।
ସେଠାରୁ ଫେରିଆସି ଦୁହେଁ । ମିଳିଲେ ଆପଣାର ଗୃହେ ॥
ଶୁକଳ ବସନ ପିନ୍ଧିଲେ । ନିର୍ମାଲ୍ୟ ସେବା ଦୁହେଁ କଲେ ॥
ଦ୍ୱାଦଶ ଚିତା କପୋଳରେ । ଦେଲେ ହରଷ ମନରେ ॥
ସେଠାରୁ ଚଳିଲେ ତ୍ୱରିତେ । ଯାଇଁ ଦେଖିଲେ ଜଗନ୍ନାଥେ ॥
ଦର୍ଶନ କରିଣ ଅଇଲେ । ବସିଲେ କୃଷ୍ଣଗାନ ଗୁଲେ ॥
ବୋଲନ୍ତି ଗୋବିନ୍ଦର ନାମ । ଶୁଣନ୍ତି ମକର ମାହାତ୍ମ୍ୟ ॥
ଅରୁଆ ଅନ୍ନ ଏକବେଳେ । ଭୁଞ୍ଜନ୍ତି ରବି ଅସ୍ତକାଳେ ॥

---

କଳୁଷ — ପାପ

ମୁଖେ ଉଚ୍ଚାର ସତ୍ୟବାକ୍ୟେ । ଦାନ ଦଅନ୍ତୁ ଯଥାଶକ୍ୟେ ॥
ଏ ରୂପେ କଲେ ମାସକାଳ । ଅନନ୍ତ ଆଜ ସୁକୁଣ୍ଡଳ ॥
ଯେତେ କଳ୍ମଷ ଦେହେ ଥିଲା । ମାଘ ସ୍ନାନାନେ କ୍ଷୟଗଲା ॥
ସମ୍ପୂର୍ଣ୍ଣ ହେଲା ମାଘମାସ । ବସନ୍ତ ଋତୁ ପରବେଶ ॥
କହନ୍ତି ପ୍ରଭୁ ଆଦମୂଳ । ମାଘେ ରହିଲା ସୁକୁଣ୍ଡଳ ॥
ମିତ୍ରକୁ ମେଳାଣି ମାଗିଲା । ଆପଣା ଭୁବନକୁ ଗଲା ॥
କନିଷ୍ଠ ଭ୍ରାତା ତାକୁ ଦେଖି । ମନରେ ହୋଇ ମହାସୁଖୀ ॥
ବୋଇଲେ ଭ୍ରାତ ମୂର୍ଖବୁଦ୍ଧି । ବିଳମ୍ବ କଲ କାହିଁପାଇଁ ॥
ଶୁଣି ବୋଲଇ ଜ୍ୟେଷ୍ଠ ଭ୍ରାତ । ଗୌରବ କଲେ ମୋତେ ମିତ୍ର ॥
ମାଘେ ରଖିଲେ ମୋତେ ସ୍ନେହେ । ଛାଡ଼ ନ ଦଅନ୍ତି କେବେହେଁ ॥
ହେଣୁ ସେ ବିଳମ୍ବ ହୋଇଲା । ଶୁଣି ସାନୁଜ ପ୍ରତେଗଲା ॥
ସ୍ନାହାନ ଭୋଜନ ସାରିଲେ । ସମସ୍ତେ କୁହାକୁହି ହେଲେ ॥
ସୁଜନ ଜନେ ଏହା ଶୁଣି । ତରିବ ଭବ ତରଙ୍ଗିଣୀ ॥
ଛାଡ଼ି ଅସତ୍ୟ ହୀନମାନ । କୃଷ୍ଣ ଚରଣେ କର ଧ୍ୟାନ ॥
ନମିଷେ ନ ପାଶୋର ମନୁ । ଭଣେ ନୃସିଂହ ଦାସସୁନୁ ॥
ପାମର ଦାସ କୃଷ୍ଣ କହେ । ଏଥୁ ଉଦ୍ଧର ଦେବରାୟେ ॥
ସମ୍ପୂର୍ଣ୍ଣ ଏକଶତ ପଦ । ଶ୍ରୀମୁଖେ କହିଲେ ଗୋବିନ୍ଦ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ସୁକୁଣ୍ଡଳ ମିତ୍ରଗୃହ ଗମନେ ମାଘସ୍ନାନ କରଣେ ନାମ ଅଷ୍ଟମୋଽଧ୍ୟାୟ

— x —

ସାନୁଜ — ସାନଭାଇ

# ନବମ ଅଧ୍ୟାୟ

ଉଦ୍ଧବ ଉବାଚ

ଉଦ୍ଧବ ସନ୍ତ୍ରସ୍ତ ହୋଇଣ । ବୋଲଇ ଶୁଣ ନାରାୟଣ ॥
ହେ ପ୍ରଭୁ କୃପା କର ମୋତେ । ଶରଣ ତୋର ପାଦଗତେ ॥
ଶୁଣି ତୋ ଶ୍ରୀମୁଖ ବଚନ । ଦୂରତ ହୋଇଲା ଦହନ ॥
କହିବା ଆବର କଥାଏ । ମନକୁ ଲାଗୁଛି ସଂଶୟେ ॥
ଯେବଣ ବେନ ଭ୍ରାତା ଥିଲେ । ସେ ପୁଣି କସ କୃତ୍ୟ କଲେ ॥
ଅନ୍ତେ ଲଭିଲେ କେଉଁଗତି । କଦଣ୍ଡ ହେଲା ଜନ୍ମପତି ॥
ଏକଥା କହିବା ଗୋସାଇଁ । ଶୁଣିଲେ ତୃପ୍ତ ହେବ ମୁହିଁ ॥

ଶ୍ରୀ ଭଗବାନୁବାଚ

ଉଦ୍ଧବ ମୁଖୁଁ ଏହା ଶୁଣି । ହସି କହନ୍ତି ଚକ୍ରପାଣି ॥
ଯାହାକୁ ପଚାରିଲୁ ମୋତେ । କହିବା ଶୁଣ ଦୃଢ଼ଚିତ୍ତେ ॥
ସେ ବେନ ଭ୍ରାତା ସୁଖେ ଥାନ୍ତି । ଅସତ୍ୟ ମାର୍ଗରେ ଚଳନ୍ତି ॥
ଅକୃପା ସର୍ବ ଜନଠାରେ । ଅନ୍ୟାୟ ଅନୁକ୍ଷଣେ କରେ ॥
ଯହୁଁ ସେ ଅନ୍ୟାୟ କରନ୍ତି । ତାଙ୍କୁ କେ ଭଲ ନ ବୋଲନ୍ତି ॥
ଏମନ୍ତେ ଗଲା କେତେକାଳ । ପୂରିଲା ସୁକୁଣ୍ଡଳ କାଳ ॥
ତକ୍ଷଣେ ଆସି ଯମଦୂତେ । ବାନ୍ଧିଣ ନେଲେ ସେ ତୁରିତେ ॥
ରାଜା ଛାମୁରେ ଦେଲେ ନେଇ । ଦେଖି କୁପିତ ଜନ୍ମସାଇଁ ॥
ମନ୍ତ୍ରୀକି ବୋଲଇ ବଚନ । ବୁଝ ଏହାର ପାପମାନ ॥
ରାଜା ଆଜ୍ଞାରେ ବେନ ମନ୍ତ୍ରୀ । ପାଞ୍ଜିକୁ ଖୋଲି ସେ ଦେଖନ୍ତି ॥
ବୋଇଲେ ଶୁଣ ଜନ୍ମରାୟ । ପାପ ଏହାର ଅପ୍ରମେୟ ॥
ଆଜକୁ ବୟସ ଏହାର । ବେନବଂଶ ବରଷ ଗୁଣ ॥
ଏହି ଦ୍ୱାପରର ମନୁଷ୍ୟ । ଙ୍କଅନ୍ତ ଦଶଶ ବରଷ ॥
ଏ ମୂଢ଼ ମର୍ତ୍ତ୍ୟପୁରେ ଥିଲା । ଅଧର୍ମେ ଦିନ କାଳ ନେଲା ॥
ଗୃହଣ ବରଷ ଭିତର । ପାତକ ଅର୍ଜିଲା ଅପାର ॥
ପଞ୍ଚ ସହସ୍ର ପରସ୍ତ୍ରୀ । ହରିଲା କପଟ ଆଚରି ।
ସ୍ତମ୍ଭନ ମୋହନ ଉଚ୍ଚାଟ । ଜାଣଇ ନାନା ନଟକୂଟ ॥

ଜ୍ୟେଷ୍ଠ ଭ୍ରାତାଙ୍କୁ ସଙ୍ଗେ ଘେନ । ବାଟରେ ଜଗିଥାନ୍ତି ବେନ ॥
ପଥିକ ଆସିବା ବେଳକୁ । ପ୍ରମାଦ ଚିନ୍ତନ୍ତି ତାହାକୁ ॥
ହାଣନ୍ତି ମାରନ୍ତି ଚୋଡ଼ାନ୍ତି । ପଦାର୍ଥ ଛଡ଼ାଇ ନଅନ୍ତି ॥
ଏହି ପ୍ରକାରେ ପ୍ରତିଦିନ । ମାଇଲେ ସହସ୍ରେକ ଜନ ॥
ମାଉଁସ ଲୋଭେ ଏହି ମୂଢ଼ା । ମେଷ ମାଇଲା ଶତଯୋଡ଼ା ॥
ମେଷ ଯେ ପରଘରେ ଥାଇ । ନିଶାରେ ଆଣନ୍ତି ଚୋରାଇ ॥
ତୋଟି କାଟନ୍ତି ଖୁରଧରି । ସୁଖେ ଭୁଞ୍ଜନ୍ତି ରାନ୍ଧି କରି ॥
ବସୂମେ ହୋଇ ମତ୍ତଗର୍ବ । ହରନ୍ତି ବ୍ରାହ୍ମଣଙ୍କ ଦ୍ରବ୍ୟ ॥
ଆମ୍ବ ପଣସ ଗୁଆ ତାଳ । କଦଳୀ ନାରଙ୍ଗ ଶ୍ରୀଫଳ ॥
ଚୋରି କରିଣ ନିତ୍ୟେ ଖାଇ । ତେଣୁ ହୋଇଲା ଦୋଷଗ୍ରାହୀ ॥
ଏ ମୂଢ଼ ମର୍ତ୍ତ୍ୟପୁରେ ଥାଇ । କଛୁହିଁ ପୁଣ୍ୟ କରିନାହିଁ ॥
ଦିନେ ଗୋବିନ୍ଦ ନ ଭଜିଲା । ଶ୍ରୀଗୁରୁ ବଦନ ତେଜିଲା ॥
ଆମ୍ଭେ ତା ଆଗହୁଁ ଜାଣିଛୁ । ପାଞ୍ଜିରେ ସର୍ବ ଯେ ଲେଖିଛୁ ॥
ପ୍ରାଣୀଙ୍କ ଚକ୍ଷୁଦ୍ୱାରେ ଥାଇ । ଦେଖୁ ପ୍ରତିମା ରୂପ ହୋଇ ॥
ଯେ ହେତୁ ଜାଣୁ ପୁଣ୍ୟପାପ । ଏକଥା ଅଟଇ ସ୍ୱରୂପ ॥
ଦିବସ ଅନ୍ତେ ହୋଏ ରାତି । ପ୍ରାଣୀଏ ଏସନ ମଣନ୍ତି ॥
ଆମ୍ଭେ ଏରୂପେ ତାହାଜାଣି । ପାଞ୍ଜିରେ ଲେଖିଥାଉ ପୁଣି ॥
ଏମନ୍ତେ ପୁଣି ରବିଶିଷ୍ୟ । ମନେ ବହୁତ କରି ରୋଷ ॥
ବୋଇଲେ ଏହିନ ପାମର । ବଦନ ନ ରୁହିଁ ଏହାର ॥
ଦୁର୍ଲଭ ନରଦେହ ବହି । ବିଷ୍ଣୁଙ୍କୁ ନ ଭଜିଲା ଏହି ॥
ଅଧର୍ମେ କଟାଇଲା ଦିନ । ହରିଲା ପରନାରୀ ଧନ ॥
ତହିଁକି ଶାସ୍ତି ଏବେ ପାଉ । ପାମର ପ୍ରାୟଶ୍ଚିତ ହେଉ ॥
ଏହାକୁ ବେଗେ ଘେନିଯାଅ । ଶିମିଳି ବୃକ୍ଷେ ବାନ୍ଧିଥାଅ ॥
ପିଟିବ କଣ୍ଟାଗୁଟ ଘେନ । ଖୋଳ ପକାଅ ଚକ୍ଷୁବେନ ॥
ମାଉଁସ ତୁଳାପ୍ରାୟେ କରି । କାଟିବ ତୀକ୍ଷଣ କ୍ଷୁରଧରି ॥
ଲବଣ ବେଶରେ ମିଶାଇ । ବୋଳିବ ତହିଁପରେ ନେଇ ॥
ଏଦଣ୍ଡ ବରଷକେ ଦେବ । ପୁଣି ନରକେ ପକାଇବ ॥
ଆଉ କରିଛି ପାପ ଯେବା । ତହିଁକ ଆନ ଶାସ୍ତି ଦେବା ॥
ନୃପତି ଆଜ୍ଞା ଦୂତେ ପାଇ । କେଶ ଧରିଣ ତାକୁ ନେଇ ॥
ଶିମିଳି ବୃକ୍ଷରେ ବାନ୍ଧିଲେ । ବିବିଧ ମାଡ଼ହିଁ ମାଇଲେ ॥

ତାହାର ଚଉପାଶେ ବେଢ଼ି । ପ୍ରହାର କଲେ ଲୁହାବାଡ଼ି ॥
ବକୋଳ କାଟିଲେ ଶରୀର । ବୋଳଲେ ଲବଣ ବେଶର ॥
କାନ୍ଦଇ ଅତି ବିକଳରେ । ତକା ପାରଇ ଉଚ୍ଚସ୍ୱରେ ॥
ବନ୍ଧନେ ଥାଇ ବକୁଣ୍ଡଳ । ବହୁତ ହୁଅଇ ବିକଳ ॥
ଏମନ୍ତେ ଷଷ୍ଠମାସ ଗଲା । ପୁଣି ତା ଜ୍ୟେଷ୍ଠ ଭ୍ରାତ ମଲା ।
ଭୁଳ ଶୁକଳ ଏକାଦଶୀ । ସେଦିନ ସୁକୁଣ୍ଡଳ ଆସି ॥
ଜାଣି ତାହାର ମୃତ୍ୟୁକାଳ । ଅଇଲେ ଯମଙ୍କ ଉଗର ॥
ଚର୍ମ ଦଉଡ଼ ଘେନିକରେ । ମିଳିଲେ ସୁକୁଣ୍ଡଳ ପୁରେ ॥
କେହୁ ବୋଲନ୍ତ ତାକୁ ଗୃହି । ଏହାକୁ ବାନ୍ଧିଛ କମ୍ପାଇ ॥
ଗୃଲ ଏହାକୁ ଘେନିଯିବା । ଶିମିଳ ବୃକ୍ଷରେ ବାନ୍ଧିବା ॥
ପିଟିବା କଣ୍ଟାଗୁଟ ଧରି । ଅନେକ ହନ୍ତସନ୍ତ କରି ॥
ନରକେ ପକାଇବା ନେଇ । ମହାପାତକୀ ଅଟେ ଏହି ॥
କେହି ବୋଲନ୍ତି କେଶଧରି । ଅଗ୍ନି କୁଣ୍ଡରେ ଦେବା ଭରି ॥
କେ ବୋଲେ ତପନ ନଦୀରେ । ବାନ୍ଧି ବୁଡ଼ାଇବା ତହିଁରେ ॥
ଏମନ୍ତ ବୋଲ ଯମଦୂତେ । ବିଗୃର କରୁଛନ୍ତି ଚିତ୍ତେ ॥
ବାରତା ପାଇ ବିଷ୍ଣୁଗଣେ । ଆସି ମିଳିଲେ ତତକ୍ଷଣେ ॥
ବୋଲନ୍ତି ଯମର ଦୂତଙ୍କୁ । କି କାର୍ଯ୍ୟେ ଆସିଛ ଏଠାକୁ ॥
ଏହାକୁ ବାନ୍ଧି ଆମ୍ଭେ ନେବୁ । ତହିଁ ଅନେକ ଶାସ୍ତି ଦେବୁ ॥
ଯମ ଦୂତଙ୍କ ବାଣୀ ଶୁଣି । ବିଷ୍ଣୁଦୂତେ ବୋଲନ୍ତି ବାଣୀ ॥
ମାଘ ସ୍ନାହାନ ଏ କରଛୁ । ଆଉ କି ପାପ ତାର ଅଛୁ ॥
ଆମ୍ଭେ ଏହାକୁ ଘେନିଯିବୁଁ । ପ୍ରଭୁଙ୍କ ଆଜ୍ଞା ନ ଲଙ୍ଘିବୁ ॥
ତୁମ୍ଭେ ବାହୁଡ଼ ଯାଅ ବେଗେ । ଯାଇଣ କହ ଯମଆଗେ ॥
ସେ ବିଷ୍ଣୁଗଣଙ୍କର ବୋଲେ । ବାହୁଡ଼ ଯମଦୂତେ ଗଲେ ॥
କହିଲେ ଯମର ଅଗ୍ରତେ । ବୋଇଲେ ଶୁଣ ଜନ୍ତୁନାଥେ ॥
ଏକ ପାପୀ ଏ ମଞ୍ଚେଥିଲା । ଆଜ ସେ ପ୍ରାଣ ତ୍ୟାଗକଲା ॥
ଆମ୍ଭେ ତାହାକୁ ଆଣିଗଲୁ । ଯାଇ ତା ଭୁବନେ ମିଳିଲୁ ॥
ଅଇଲେ ବିଷ୍ଣୁଦୂତେ ଧାଇଁ । ଆମ୍ଭଙ୍କୁ କୋପକଲେ ଗୃହିଁ ॥
ବୋଇଲେ ଯେତେ ପାପକଲା । ମାଘ ସ୍ନାହାନେ କ୍ଷୟଗଲା ॥
ବୋଲଣ ଦେଲେ ସେ ଦଉଡ଼ । ଭୟରେ ଅଇଲୁ ବାହୁଡ଼ ॥
ଶୁଣି ବୋଲନ୍ତି ଜନ୍ତୁବଣ । ଏକଥା ଅଟଇ ପ୍ରମାଣ ॥

ଯଦ୍ୟପି ବ୍ରତକୁ କରନ୍ତି । ଆଜ କ ପାପ ତାର ଅଛି ॥
ଖଣ୍ଡିଲ ଅଶେଷ ଦୁରିତ । ବଧିରେ ହୋଇଲା ମୁକତ ॥
ତାଠାରେ ନାହିଁ ଆତ୍ମପଣ । ଶୁଣି ମଉଳ ଯମଗଣ ॥
ତାହାଙ୍କୁ ବିଷ୍ଣୁଦୂତେ ନେଇ । ପୁଷ୍ପକ ରଥରେ ବସାଇ ॥
କେ ଖେଦ ଚାମର ପକାନ୍ତି । କେ ଦ୍ରବ୍ୟ ବଞ୍ଚଣା କରନ୍ତି ॥
କେହୁ କରନ୍ତି ଆଗେ ନୃତ୍ୟ । ସୁସ୍ୱରେ ଗାଉଛନ୍ତି ଗୀତ ॥
ଶୁଭଇ ହରି ହରି ଧ୍ୱନି । ସମ୍ଭ୍ରମେ ଗଲେ ତାକୁ ଘେନି ॥
ସଧୀରେ ଚଳଇ ବିମାନ । ସାନନ୍ଦ ସୁକୁଣ୍ଡଳ ମନ ॥
ଆକାଶ ମାର୍ଗେ ଯାନ୍ତି ଚଳି । ଶୁଭଇ ନର୍ଘାତ ବୋବାଳି ॥
ଶ୍ରୁତିକି ଶୁଭିଲା ଶବଦ । ଶୁଣି ସୁକୁଣ୍ଡଳ ପ୍ରବଦ ॥
ବିଷ୍ଣୁ ଦୂତଙ୍କୁ ଗୁହାଁ ପୁଚ୍ଛି । ଏ କିସ ଶବଦ ଶୁଭୁଛି ॥
ଉତ୍ତା ପଡ଼ିଲା ପ୍ରାୟ ହୋଇ । ନର୍ଘାତ ବୋବାଳି ଶୁଭଇ ॥
ଶୁଣି ବିକଳ ମୋର ଦେହ । ସେକଥା ଫେଡ଼ି ମୋତେ କହ ॥
ଶୁଣି ବୋଲନ୍ତି ବିଷ୍ଣୁଗଣ । ଯାହା ପୁଚ୍ଛିଲ ତାହାଶୁଣ ॥
ସେହୁ ତୋହୋର ସାନଭ୍ରାତ । ଅର୍ଜିଲା ପାପ ଅପ୍ରମିତ ॥
ସେ ଯେତେବେଳେ ପ୍ରାଣହାରି । ନେଲେ ସେ ଯମଦୂତେ ଧରି ॥
ଯମ ଦେଖିଣ କୋପକଲା । ଅନେକ ଶାସ୍ତି ତାକୁଦେଲା ॥
ତାହାକୁ ନେଇଣ ସତ୍ୱରେ । ବାନ୍ଧିଲେ ଶିମିଳି ବୃକ୍ଷରେ ॥
ନବଘେ କଣ୍ଟା ଗୁଟେ ପିଟି । ଖୁର ଘେନଣ ମାଂସ କାଟି ॥
ଯମ ଆଜ୍ଞାରେ ଘେନଗଲେ । ଏମନ୍ତ ଦଣ୍ଡ ତାକୁ ଦେଲେ ॥
ତେଣୁଟି ଡ୍ରାଉଅଛି ରଡ଼ି । କେହୁ ପାରିବ ତାକୁ ଫେଡ଼ି ॥
ଶୁଣି ସୁକୁଣ୍ଡଳ ବୋଲଇ । ସେ ଯେବେ ମୋର ଭ୍ରାତାହୋଇ ॥
ଆମ୍ଭେତ ଦୁହେଁ ଘରେଥିଲୁ । ଦୁହେଁ ଅଧର୍ମ ଆଚରିଲୁ ॥
କାଳେ ତା ପ୍ରାଣତ୍ୟାଗ ହେଲା । ସେ କର୍ମା ଏଦଣ୍ଡ ପାଇଲା ॥
ମୋତେ ନେଉଛ ସ୍ୱର୍ଗପୁର । କେବଣ ପୁଣ୍ୟଅଛି ମୋର ॥
କହହେ ଶ୍ରୀହରିର ଦାସ । ମନରୁ ଫେଡ଼ି ମୋ ସନ୍ଦେଶ ॥
ଶୁଣି ବୋଲନ୍ତି ବିଷ୍ଣୁଦୂତେ । ସେକଥା କହୁ ଏବେ ତୋତେ ॥
ତୁମ୍ଭେ ସେ ବେନି ଭ୍ରାତଥିଲ । ଅନେକ ପାପ ଆଚରିଲ ॥

---

ଦୁରିତ — ପାପ କଷ୍ଟ     ସତ୍ୱରେ — ଶୀଘ୍ର

ନକଲ ଦାନ ଧର୍ମ କିଛି । ଏକ କଥାଏ ମାତ୍ର ଅଛି ॥
ଦିନେଟି ଏମନ୍ତ ତୁ କଲୁ । ମିତ୍ର ଘରକୁ ଯାଇଥିଲୁ ॥
ସେଠାରେ କଲୁ ମାଘ ସ୍ନାନ । ତେଣୁ ହୋଇଲା ବହୁପୁଣ୍ୟ ॥
ସକଳ ପାପ ନାଶଗଲା । ତୋର ବୈକୁଣ୍ଠେ ଗତିହେଲା ॥
ଶୁଣି ବୋଇଲା ସୁକୁଣ୍ଡଳ । ମୋ ଆତ୍ମା ହେଉଛି ବିକଳ ॥
ସେ ମୋର ସୋଦର କନିଷ୍ଠ । ପାଉଛି ଏଡ଼େ ବଡ଼ କଷ୍ଟ ॥
ତାହା ଶୁଣିଲି ଶ୍ରୁତିପଥେ । ସ୍ୱର୍ଗକୁ ଯିବଇଁ କେମନ୍ତେ ॥
କେହ୍ନେ ସେ ବନ୍ଧରୁ ତରିବ । ଭ୍ରାତା ମୋ ସଙ୍ଗେ ସ୍ୱର୍ଗଯିବ ॥
ଏଥକୁ କହିବା ଉପାୟ । ଯଦ୍ୟପି ହୋଇବ ସଦୟ ॥
ବୋଲନ୍ତି ବିଷ୍ଣୁଗଣେ ଗୃହିଁ । ସେ କିଛି ଧର୍ମ କରିନାହିଁ ॥
ତୋର ପୁଣ୍ୟରୁ ଅଧେ ଦେଲେ । ବନ୍ଧରୁ ତରିବ ସେ ଭଲେ ॥
ଯମ ଦଣ୍ଡରୁ ହେବ ପାର । ନୋହିଲେ ନାହିଁ ପ୍ରତିକାର ॥
ଶୁଣି ସୁକୁଣ୍ଡଳ ବୋଇଲା । ମୋହୋର ସନମତ ହେଲା ॥
ଦେଲି ମୁଁ ଅଧେ ପୁଣ୍ୟ ତାକୁ । ବନ୍ଧରୁ ଫେଡ଼ାଅ ଭ୍ରାତାକୁ ॥
ବହନ କରି ତାକୁ ଆଣ । ଶୁଣି ରହିଲେ ବିଷ୍ଣୁଗଣ ॥
ରଥୁ ଉତୁରି ଜଣଚାରି । ତକ୍ଷଣେ ମିଳି ଯମପୁରୀ ॥
ଯମର ସନ୍ନିଧେ ମିଳିଲେ । ଏସବୁ ବୃତ୍ତାନ୍ତ କହିଲେ ॥
ବୋଇଲେ ଶୁଣ ଜନ୍ତୁସାଇଁ । ଯେ ପାପୀ ଅଛି ବନ୍ଧହୋଇ ॥
ଦଣ୍ଡ ଦେଉଛ ଅପ୍ରମିତ । ପାପୀକି ଦଣ୍ଡହିଁ ଉଚିତ ॥
ତାହାର ଜ୍ୟେଷ୍ଠ ଭ୍ରାତା ମଲା । ଆଜ ତା ପ୍ରାଣତ୍ୟାଗ ହେଲା ॥
ମହା ପାତକୀ ସେହିଜନ । କେବଳ କଲା ମାଘସ୍ନାନ ॥
ତାହାର ଧର୍ମବଳ ଜାଣି । ଆମ୍ଭେ ଯେ ଗଲୁ ତାକୁ ଆଣି ॥
ବିମାନେ ବସାଇ ଆଣନ୍ତେ । ରଡ଼ି ଶୁଭିଲା ଶ୍ରୁତିପଥେ ॥
ଆମ୍ଭମାନଙ୍କୁ ପଚାରିଲା । ଏ କିସ ଶବଦ ଶୁଭିଲା ॥
ଆମ୍ଭେ କହିଲୁ ତା ଅଗ୍ରତ । ସେହୁ ତୋହର ସାନଭ୍ରାତ ॥
ଯମର ଦଣ୍ଡେ ଅଛି ପଡ଼ି । ଆକୁଳେ ଛାଡ଼ଇ ସେ ରଡ଼ି ॥
ଶୁଣି ବୋଇଲା ମହାତମା । ସେ ମୋର ଭ୍ରାତ ନିଜଆତ୍ମା ॥
ମୋର ପୁଣ୍ୟରୁ ଅଧେଦେଇ । ବନ୍ଧରୁ ଆଣ ମୁକୁଳାଇ ॥
ତାହାର ବଚନେ ଅଇଲୁ । ରଜା ତୋ ଛାମୁରେ କହିଲୁ ॥
ତୁ ପାପ ପୁଣ୍ୟ ଅଧିକାରୀ । ବିଚାରି କର ଦଣ୍ଡଧାରୀ ॥

ଶୁଣି ବୋଇଲେ ଜମ୍ବୁପତି । ଏକଥା ଅଟଇ ଯୁକତି ॥
ସେ ଯେବେ ଅଧେ ଧର୍ମ ଦେଲା । ଯାନ ଭ୍ରାତାକୁ ଉଦ୍ଧାରିଲା ॥
ମୋ ଆଜ୍ଞା ରଖ ଲୋକେ କହି । ବନ୍ଧରୁ ନଅ ମୁକୁଳାଇ ॥
ତା ଶୁଣି ବନ୍ଧୁ ଦୂତେ ଗଲେ । ରାଜା ଆଜ୍ଞାରେ ବନ୍ଧନେଲେ ॥
ଯେଉଁଣ ଗଲେ ଅତି ବେଗେ । ମିଳିଲେ ସୁକୁଣ୍ଡଳ ଆଗେ ॥
ଦେଖି ସାନନ୍ଦ ସୁକୁଣ୍ଡଳ । ନିଜ ଭ୍ରାତାକୁ କଲାକୋଳ ॥
ହରଷେ ଗଦଗଦ ହୋଇ । ଲୋଚନୁ ଅଶ୍ରୁ ଜଳ ବହି ॥
ସମସ୍ତେ ହେଲେ କୁହାକୁହି । ବସିଲେ ଏକାଶନ ହୋଇ ॥
ତହୁଁ ଚଳିଲା ଦେବରଥ । ସ୍ୱର୍ଗରେ ମିଳିଲା ତ୍ୱରିତ ॥
ବିମାନୁ ଓହ୍ଲାଇ ବହନ । ବସିଲେ ଅମର ଆସନ ॥
ଅମୃତ ଭୋଗ ତହିଁ କଲେ । ନିଶ୍ଚିନ୍ତ ହୋଇଣ ରହିଲେ ॥
ଶୁଣ ଉଦ୍ଧବ ଦୃଢ଼ଚିତ୍ତେ । ମାଘ ସ୍ନାନର ଧର୍ମ ଏତେ ॥
ଯେ ମାଘ ସ୍ନାହାନ କରିବ । ଆପେ ଆତ୍ମାକୁ ଉଦ୍ଧାରିବ ॥
ସୁଜନେ ମାଘସ୍ନାନ କର । ଭବସାଗରୁ ହେବ ପାର ॥
ନୃସିଂହ ଦାସର ତନୟେ । ନାମ ତା କୃଷ୍ଣଦାସ କହେ ॥
ପୁରାଣ ଗୀତ କରି କହେ । ଶଏ ଷାଠିଏ ପଦ ହୁଏ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ସୁକୁଣ୍ଡଳ ମୋକ୍ଷଣେ ନାମ ନବମୋଽଧ୍ୟାୟ

—×—

# ଦଶମ ଅଧ୍ୟାୟ

ଶ୍ରୀ ଭଗବାନୁବାଚ

ବୋଲନ୍ତ କରୁଣା ସାଗର । ଉଦ୍ଧବ ଶୁଣ ଗ୍ରନ୍ଥସାର ॥
ମାଘ ସ୍ନାହାନେ ଯେତେ ଫଳ । ତୋଆଗେ କହିଲୁ ସକଳ ॥
ପୂର୍ବେ ଯେ ତ୍ରେତୟା ଯୁଗରେ । କୃତାନ୍ତ ବୋଲି ଏକପୁରେ ॥
କୃତ କେଶରୀ ବୋଲି ରଜା । ସୁଖେ ପାଳଇ ଜନପ୍ରଜା ॥
ସହସ୍ରେ ବନତା ତାହାର । କେବଳ ନୋହିଲା କୁମର ॥
ସେ ରଜା ଅପୁର୍ବିକ ହୋଇ । ମନେ ବହୁତ ଚିନ୍ତୁଥାଇ ॥
ବଡଇ ଧାର୍ମିକ ନୃପତି । ନଯାଇ ଅଧର୍ମର କତି ॥
ଧନ ସମ୍ପଦ ଅପ୍ରମିତ । ବଚନେ ନୁହଇ କଥିତ ॥
ଗଜ ତୁରଙ୍ଗ ପାଇକାର । ସୈନ୍ୟ ତା ଅଛଇ ଅପାର ॥
କଟକ ଦଶେ ଶୋଭବନ । ସ୍ୱର୍ଗର ସମ ସେ ଶୋଭନ ॥
ସୁଖେ ବର୍ତ୍ତନ୍ତି ନରନାରୀ । ଧର୍ମ ଆଚରନ୍ତି ମାନ କରି ॥
ସେହୁ ନଗରେ ଥୋକେ ଜନ । କରନ୍ତି ମକର ସ୍ନାହାନ ॥
ପ୍ରଭାତୁଁ ଉଠନ୍ତି ତୁରିତ । ନଦୀରେ ସ୍ନାହାନ କରନ୍ତି ॥
ତାହାଙ୍କ ଆତଯାତ ବାଟେ । ଗ୍ରାମ ବାହାର ନଦୀତଟେ ॥
ତେନ୍ତୁଳି ତରୁବର ଦଳେ । ଥାଇ ସେ ଏକଇ ଚଣ୍ଡାଳେ ॥
ଅଭକ୍ଷ ଦ୍ରବ୍ୟମାନ ଭକ୍ଷି । ହୀନ ବଞ୍ଚଇ ଅତି ଦୁଃଖୀ ॥
ପ୍ରଭାତ ସମୟେ ଉଠଇ । ଅଗ୍ନି ଜାଳଣ ବସିଥାଇ ॥
କ୍ଷୁଧାରେ ହୋଇଣ ବିକଳ । ଗୋମାଂସ କରେ ପୂଜାବଳ ॥
କରଣ ଖଣ୍ଡି ଖଣ୍ଡି ଖାଇ । ଥୋକାଏ ହଅଇ ସିଝାଇ ॥
ଲୋକ ଆସିବା ବେଳଜାଣି । ପଣତେ ହଅଇ ଚାକୁଣି ॥
ବିଚାର କରଇ ତା ମନେ । ଆସିବେ ପୁଣ୍ୟଜନମାନେ ॥
ଏପଥେ ଯିବେ ସ୍ନାନକରି । ଏବାଟ ଥିବ ମୁଁ ପହଁରି ॥
ହୋଇବ କଷ୍ଟ ଧର୍ମ ମୋର । ଏ ଜନ୍ମ ପାଇବ ନିସ୍ତାର ॥

---

ଗଜ — ହସ୍ତୀ　　ତୁରଙ୍ଗ — ଘୋଡ଼ା
ତରୁବର — ବୃକ୍ଷ

ଏତେ ବଚନ ଉଠିଯାଇ । ପଡନେ ବାଟ ପହଁରଇ ॥
ସେ ଅବା ବାଟେ ଥାଇପଡ଼ି । ପକାଇ ଦିଅଇ ତା କାଢ଼ି ॥
ମକର ମାସ ଯିବାଯାଏ । ପଥ ଯତନ କରୁଥାଏ ॥
ଲୋକେ ଯେ ସ୍ନାହାନ ନିମନ୍ତେ । ଆସନ୍ତି ରଜନୀ ପ୍ରଭାତେ ॥
ସ୍ନାହାନ କରି ଜଳଘାଟେ । ପୁଣି ଆସନ୍ତି ଏହିବାଟେ ॥
ଶୀତରେ କମ୍ପୁଥାଇ ଦେହୀ । ଦେଖନ୍ତି ଅଗ୍ନି ଜଳୁଥାଇ ॥
କେ ଅବା ବଗ୍ଭରଇ ମତି । ଯିବଇ ଅନଳର କତି ॥
ପୁଣି ବୋଲନ୍ତି ଧର୍ମମୀବ । ଏ ମୂଢ଼ ଜାତରେ ଅଛିବ ॥
ଏମନ ବଗ୍ଭରଇ ମତି । ଯିବଇଁ ଅନଳର କତି ॥
ତାହାର ଅଧେ ଧର୍ମ ଯାଇ । ସେ ଧର୍ମ ଚଣ୍ଡାଳର ହୋଇ ।
ଯେ ଅବା ବୁଦ୍ଧିମାନ ଜନ । ନଦୀରେ କରଇ ସ୍ନାହାନ ॥
ଆସଇ ଖରତର ହୋଇ । ଅଗ୍ନିକି ବାଞ୍ଛା ନ କରଇ ॥
ତାହାର ଧର୍ମ ନ ତୁଟଇ । ଅନ୍ତେ ଯମକୁ ନ ଭେଟଇ ॥
ବୋଲନ୍ତି ପ୍ରଭୁ ଭଗବାନ । ଉଦ୍ଧବ ଧ୍ରୁବ ବୋଲି ଜାଣ ॥
ଏମନ୍ତ ଗଲା କେତେକାଳ । ମୃତ୍ୟୁ ଲଭିଲା ସେ ଚଣ୍ଡାଳ ॥
ଯମର ଡଗରେ ଅଇଲେ । ଚର୍ମ ରଜ୍ଜୁରେ ବାନ୍ଧିନେଲେ ॥
ଅନେକ ହନ୍ତସନ୍ତ କରି । ରାଜା ଛାମୁକୁ ନେଲେ ଧରି ॥
ଦୂତେ ବୋଇଲେ ଶୁଣରାୟେ । ଆଣିଛୁ ପାତକୀ ଗୋଟିଏ ॥
ମନ୍ତ୍ରୀକି ବୋଲେ ଜନ୍ତୁରାଜ । ଏହାର ପାପ ପୁଣ୍ୟ ବୁଝ ॥
ମନ୍ତ୍ରୀ ବୋଲଇ ପାଞ୍ଜି ବୁଝି । କରିଛି ଧର୍ମ କରିନାହିଁ ॥
ବିଶେଷେ ଅଟଇ ଚଣ୍ଡାଳ । ଦୁଃଖେ ବଞ୍ଚଇ ଦିନକାଳ ॥
ଏକ କଥାଏ କରିଅଛି । ଶୁଣନ୍ତୁ ଆବନ୍ତ୍ୟର ବହି ॥
ଏହୁ ଚଣ୍ଡାଳ ମାଘମାସେ । ଅଗ୍ନି ଜାଳଇ ବାଟପାଶେ ॥
ପହଁରି ଥାଇ ଦାଣ୍ଡପାକେ । କଟୁ ନରଖେ ଆଖପାଖେ ॥
ଲୋକେ ଯେ ମାଘସ୍ନାନ ଅର୍ଥେ । ଯାଆନ୍ତି ଆସନ୍ତି ସେ ପଥେ ॥
ପଥ ଉଜ୍ଜ୍ୱଳ କରିଥାଇ । ଦିନେ ଅଳସ ନ କରଇ ॥
ଏତେକ ମାତ୍ର କରିଅଛି । ଆଉ ନକଲା ଧର୍ମ କିଛି ॥
ଯେତେକ ପାପପୁଣ୍ୟ ତାର । ଆମ୍ଭଙ୍କୁ ନାହିଁ ଅଗୋଚର ॥
ଛାମୁରେ କହିଲୁ ବିଶେଷ । ଶୁଣି ବୋଲଇ ଧର୍ମଶିଷ୍ୟ ॥
ମନ୍ତ୍ରୀ ବଚନେ କହେ ଯମ । ଏହାର ଅଛି କିଛି ଧର୍ମ ॥

ଏ ଯେବେ ମାଘମାସେ ନିତ୍ୟ । ପଡ଼ିଁର ଥାଏ ରାଜପଥ ॥
ଅଗ୍ନି ଜାଳିଣ ବସିଥାଇ । ଯେ ମାଘ ସ୍ନାନକୁ ଆସଇ ॥
ସ୍ନାହାନ କରି ନଦୀଜଳେ । ବାହୁଡ଼ି ଆସିବାର ବେଳେ ॥
ସେ ଅଗ୍ନି ନିରେଖି ନୟନେ । ଯେ ଅବା ଇଚ୍ଛାକରେ ମନେ ॥
ହିମ ଲାଗିଣ କମ୍ପେ କାୟେ । ଦେଖନ୍ତି ଅଗ୍ନି ଜଳୁଥାଏ ॥
ଯିବକି ହୁତାଶନ ପାଶ । ଲୋକେ କରିବେ ଉପହାସ ॥
ଏତେ ବିଗୁରି ହୃଦପଦ୍ମେ । ପଥେ ଗମଇ ମନେ ମନେ ॥
ଏମନ୍ତ ଗୁଣେ ଯେଉଁନର । ଖଣ୍ଡଇ ଧର୍ମ ତାହାଙ୍କର ॥
ଏହାକୁ ଅଧେ ପୁଣ୍ୟ ଦେଇ । ଏକଥା ପ୍ରମାଣ ଅଟଇ ॥
ପଥ ପଡ଼ିଁରୁଥାଏ ଯେଣୁ । ତାହାର ପୁଣ୍ୟଅଛୁ ତେଣୁ ॥
ଏବେ ଏହାଙ୍କୁ ଘେନଯାଅ । ଉତ୍ତମ କୁଳେ ଜନ୍ମ ଦିଅ ॥
ଥିଲା ଯେ ଯେବଣ ରାଜ୍ୟରେ । ଜନ୍ମ ହେଉ ସେ ରାଜାଘରେ ॥
ଏଦେଶ ରାଜା ଅପୁତ୍ରିକ । ଭୋଗ ଏ ଭୁଞ୍ଜିବ ଅନେକ ॥
ଯେହ୍ନ ରାଜ୍ୟରେ ହେଉରାଜା । ସମସ୍ତେ ପାଉ ଦିବ୍ୟ ପୂଜା ॥
ଯମ ଆଜ୍ଞାରେ ଯେହୁ ନେଲେ । କୃତାନ୍ତ ରାଜ୍ୟେ ଜାତ କଲେ ॥
କୃତ କେଶରୀ ରାଜାଘରେ । ଜନ୍ମିଲା ରାଣୀର ଉଦରେ ॥
ଦେଖି ସାନନ୍ଦ ତାତମାତ । ଉତ୍ସବ କଲେକ ବହୁତ ॥
ହୋଇଲା ଏକବଂଶ ଧନ । ଅଇଲେ ପଣ୍ଡିତ ବ୍ରାହ୍ମଣ ॥
ଜନ୍ମ ନକ୍ଷତ୍ର ବୁଝିଲେ । ଚନ୍ଦ୍ରକେଶରୀ ନାମଦେଲେ ॥
ବଢିଲା ଦିନୁଦିନ ଶିଶି । ଶୁକଳ ପକ୍ଷେ ଯେହ୍ନେ ଶଶୀ ॥
ଏମନ୍ତେ କେତେକାଳ ଗଲା । ସପତ ବରଷ ପୂରିଲା ॥
କୃତ କେଶରୀ ରାଜା ପୁଣ । ଏମନ୍ତେ ହୋଇଲା ମରଣ ॥
ଅନ୍ତେ ପାଇଲା ଦିବ୍ୟଗତି । ପୁତ୍ର ତା ହୋଇଲା ନୃପତି ॥
ଚନ୍ଦ୍ରକେଶରୀ ନାମ ତାର । ଭୂପେ ଦିଶଇ ଦିଗୀଶ୍ୱର ॥
ପୃଥ୍ୱୀ ସାଧିଲା ବାହୁବଳେ । ନୃପତି ଖଟିଲେ ସକଳେ ॥
ବସ୍ତୁରେ ବଡ଼ଇ ଭକତ । ହରିତେ ପଦ୍ମପାଦେ ମତି ॥
ଶାନ୍ତ ସୁବୁଦ୍ଧି ଦୟାଶୀଳ । ତପେଣ ସଚ୍ଚା ମହୀପାଳ ॥
ପ୍ରତାପେ ଆଦିତ୍ୟ ସମାନ । ବେଗେଣ ହଟଇ ପବନ ॥
ବୁଦ୍ଧିରେ ବୃହସ୍ପତି ପ୍ରାୟେ । କୁଶଳେ ରାଜ୍ୟ କରୁଥାଏ ॥

ହୁତାଶନ — ଅଗ୍ନି

ଚରଜା ଚାଳ ଶପୁ ଗଞ୍ଜି । ବପୁଳ ସୁଖ ଭୋଗ ଭୁଞ୍ଜି ॥
ବଭ ହୋଇଲ ଲକ୍ଷେ ବାମା । ଘେନଲ ପରରାଜ୍ୟ ସୀମା ॥
ହୋଇଲ ସହସ୍ରେକ ସୁତ । ଦୁହତା ଜାତ ବେନଶତ ॥
ଲକ୍ଷେ ତୁରଙ୍ଗ ଲକ୍ଷେ ହାତ୍ତ । ମତ୍ତେ ଅଛନ୍ତ ପଦାତ ॥
ପାତ୍ର ସାମନ୍ତ ଅମାନାତ୍ୟ । ଖଣ୍ଟଣି ମାନେ ଯେ ସମସ୍ତ ॥
କୁବେର ସମାନ ଯେ ଧନୀ । ନଶ୍ଚିନ୍ତେ ପାଳଇ ମେଦନୀ ॥
ଏମନ୍ତେ ସହସ୍ର ବରଷ । କ୍ଷେମେ ବର୍ତ୍ତିଲ ନରଈଶ ॥
କାଳେ ଯେ ହୋଇଲ ନଧନ । ଅନ୍ତେ ପାଇଲ ସ୍ୱର୍ଗସ୍ଥାନ ॥
କହନ୍ତ ପ୍ରଭୁ ଦଇତ୍ୟାର । ଉଦ୍ଧବ ଶୁଣ ହେତୁ କର ॥
ଏ ମାଘ ମାହାତ୍ମ୍ୟକୁ ଶୁଣି । ହେଲେ ତରବେ ଭବୁ ପ୍ରାଣୀ ॥
ଯେ ଅବା ମତ୍ତଗଙ୍କ ହୋଇ । ନଜାଣି ଏହା ଯେ ନଦଇ ॥
ତାହାର ନାହିଁ ସୁଖଲେଶ । ନରକେ ପଡ଼ଇ ଅବଶ୍ୟ ॥
ସଂକଳ୍ପ କର ଦୃଢ଼ଚତ୍ତେ । ଯେ ଏହା ଶୁଣୁଥିବ ନତ୍ୟେ ॥
ସେ ପ୍ରାଣୀ ମହାଭାଗ୍ୟବନ୍ତ । ପ୍ରାପତ ହୁଏ ସୁତବନ୍ତ ॥
ବର୍ଦ୍ଧିତ ହୁଏ ଯେ ଆୟୁଷ । ସକଳ ରୋଗ ବ୍ୟାଧି ନାଶ ॥
ନୃସିଂହ ଦାସର କୁମର । ନାମଯେ କୃଷ୍ଣ ଦାସ ମୋର ॥
ମୋର ପ୍ରଭୁଙ୍କ ଆଜ୍ଞାପାଇ । ପୁରାଣ ଗୀତ କଲମୁହିଁ ॥
ଉଦ୍ଧବେ କହେ ଚକ୍ରପାଣି । ମାଘ ସ୍ନାହାନ ଧର୍ମବାଣୀ ॥
ଏ ମାଘ ସ୍ନାହାନର କଥା । ଶୁଣି ଛୁଟଇ ଭବବ୍ୟଥା ॥
ଉଦ୍ଧବେ କହଲେ ଗୋବନ୍ଦ । ଦୁଇ ଉତ୍ତରେ ଶତେପଦ ॥

ଇତ ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ଚନ୍ଦ୍ରକେଶର ରାଜା ଉପାଖ୍ୟାନ ନାମ ଦଶମୋଽଧ୍ୟାୟ

—×—

ତୁରଙ୍ଗ — ଘୋଡ଼ା

# ଏକାଦଶ ଅଧ୍ୟାୟ

## ଉଦ୍ଧବ ଉବାଚ

ଜୟ ତୁ ଜୟ ବିଶ୍ୱନାଥ । ତୋ ପାଦେ ରହୁ ମୋର ମାଥ ॥
ଶିରେ ଶୋଭଇ ଦିବ୍ୟଜଟ । ଲଲାଟେ ଶୋଭଇ ମୁକୁଟ ॥
ରବି ଶଶାଙ୍କ ରଶ୍ମି ଯେତେକେ । ତିନି ଲୋଚନ ଦିଶେ ତେତେକେ ॥
କୁଣ୍ଡଳ ମଣିମାଳା ଶୋଭେ । ରୂପ କନ୍ଦର୍ପ ସରି ନୁହେଁ ॥
କଣ୍ଠରେ ରୁଦ୍ରାକ୍ଷର ମାଳ । ବସନ ତେଜି ଦିଗମ୍ବର ॥
ସ୍ଫଟିକ ପ୍ରାୟେ ତନୁବର୍ଣ୍ଣ । ତଥି ବିଭୂତି ବିଲେପନ ॥
ଖଟାଙ୍ଗ ଡମ୍ବରୁ ତ୍ରିଶୂଳ । ଶୋଭଇ ବେନି କରସ୍ଥଳ ॥
ଦେବାଙ୍ଗ ବସନ ତେଜିଣ । ଶାର୍ଦ୍ଦୂଳ ଚର୍ମ ପରିଧାନ ॥
ଗଜ ତୁରଙ୍ଗ କରି ଦୂର । ବୃଷଭ ବାହନ ତୋହର ॥
କୋଳରେ ପାର୍ବତୀଙ୍କୁ ଘେନ । ନିରତେ ଭ୍ରମୁ ଯେ ମେଦିନୀ ॥
ସର୍ବଦା ଅଟୁ ଭୋଳମତ୍ତ । ନମସ୍ତେ ପ୍ରଭୁ ପଶୁପତି ॥
ପ୍ରସନ୍ନେ କୋଟି ଅର୍ଥ ପାଇ । ସକଳ ରୋଗ ନାଶ ଯାଇ ॥
ତୁ ଦେବ ଅଯୋନି ସମ୍ଭୂତ । ବ୍ରାହ୍ମଣ ଭ୍ରୂଲତାରୁ ଜାତ ॥
ଯେ ପାଞ୍ଚ ବଦନ ତୋହୋର । ତୋନାମ ଅପାରୁ ଅପାର ॥
ତୁ ଦେବ ଦେବଙ୍କ ଉତ୍ତମ । ତେଣୁଟି ମହାଦେବ ନାମ ॥
ଚନ୍ଦ୍ରକୁ ଶିରେ ବହୁ ଯେଣୁ । ଚନ୍ଦ୍ରଶେଖର ନାମ ତେଣୁ ॥
ଶଙ୍କର ବିରୂପାକ୍ଷ ହର । ଈଶ୍ୱର କାଶୀ ଗଙ୍ଗାଧର ॥
ଖଟାଙ୍ଗଧର ବାମଦେବ । ରୁଦ୍ର କପାଳୀ ସଦାଶିବ ॥
ଖଣ୍ଡ ପରଶୁ ଟଙ୍କଧର । ଧୂର୍ଜଟି ଶମ୍ଭୁ ଦିଗମ୍ବର ॥
ଯୁଦ୍ଧରେ ତ୍ରିପୁରକୁ ମାରି । ନାମ ବହିଲୁ ତ୍ରିପୁରାରି ॥
ରୂପେ ବିରାଜ ବିଶ୍ୱରୂପୀ । ସକଳ ଜୀବେ ଅଛୁ ବ୍ୟାପି ॥
ଯାର କୋପରେ କାମବାଣ । ଭସ୍ମ ହୋଇଲା ତତକ୍ଷଣ ॥
ଜୟତୁ ପ୍ରଭୁ ଦିଗବାସ । ଖଣ୍ଡ ମୋ ଶରୀରୁ କଳୁଷ ॥

---

ଶଶାଙ୍କ — ଚନ୍ଦ୍ର      ଶାର୍ଦ୍ଦୂଳ — ବାଘ
ବିରୂପାକ୍ଷ — ଶିବ      ମେଦିନୀ — ପୃଥିବୀ

ନମସ୍ତେ ପାର୍ବତୀ ରମଣ । ମୁଁ ତୋର ଚରଣେ ଶରଣ ॥
ନମସ୍ତେ ମହାରୁଦ୍ର ମୂର୍ତ୍ତି । ଅଭୟ ବରଦାତା ନତ୍ତ ॥
ନମସ୍ତେ ତ୍ରିଭୁବନ ଈଶ । ମହେଶ ଈଶ୍ୱର ଗିରୀଶ ॥
ନମସ୍ତେ ପାର୍ବତୀ ବଲ୍ଲଭ । ମୋହୋର ମନ କର ଶୁଭ ॥
କ୍ଷମା କରିବା ମୋର ଦୋଷ । ଭଣଇ ଧନକୃଷ୍ଣ ଦାସ ॥
ଶୁଣ ସୁଜନ ଦେଇ ଚିତ୍ତ । ଯେବେ ପାଇବ ଦିବ୍ୟଗତ ॥
ହରି ଚରିତ ଦିବ୍ୟରସ । ଶ୍ରବଣ ପଥେ କର ଗ୍ରାସ ॥
ଦ୍ୱାରକା ପୁରେ ଦେବରାଜେ । ପଟ୍ଟ ଜଗତି ପୁରେ ବିଜେ ॥
ଏକାନ୍ତ ହୋଇ ବ୍ରହ୍ମଋଷି । ରତ୍ନ ପଲ୍ୟଙ୍କେ ଛନ୍ତି ବସି ॥
କେବଳ ଉଦ୍ଧବ ଅଛଇ । ଆଉ ସେଠାରେ ନାହିଁ କେହି ॥
ହରିର ପ୍ରସନ୍ନ ବେଳରେ । ଉଦ୍ଧବ ଜଣାଇ ଗୁମୁରେ ॥
ହେ ପ୍ରଭୁ ଦୀନଜନ ବନ୍ଧୁ । ଭକତଜନ କୃପାସିନ୍ଧୁ ॥
ମୁଁ ତୋର ଶରଣ ମୁରାରି । କଥାଏ କହିବା ବିସ୍ତାରି ॥
ମାଘ ସ୍ନାହାନର ଚରିତ । ଶୁଣି ମୁଁ ହୋଇଲି ପବିତ୍ର ॥
ତିରିଶ ଦିନେ ମାସେ ହୋଏ । ନିତ୍ୟେ ମୁଁ ଶୁଣିବି ଅଧ୍ୟାୟେ ॥
ତିରିଶ ଅଧ୍ୟା ଯେବେ ହେବ । ମାଘ ସମ୍ପୂର୍ଣ୍ଣ ଯାଏ ଯିବ ॥
ମାଘ ମାହାତ୍ମ୍ୟର ପ୍ରସ୍ତାବେ । ଯାହା କହିଲ ପ୍ରଭୁ ତୁମ୍ଭେ ॥
ପ୍ରଥମୁଁ ଦଶଅଧ୍ୟା ଗଲା । ଦଶ ଦିନକୁ ସିନା ହେଲା ॥
ଆଉ ରହିଲା ବିଂଶ ଦିନ । ଏଣୁ ସ୍ମରଇ ପଞ୍ଚମନ ॥
ଆଉ କୋଡ଼ିଏ ଅଧ୍ୟା କହ । ଶୁଣି କୃତାର୍ଥ ହେଉ ଦେହ ॥
ଏମନ୍ତ ବୋଲି ଯୋଡ଼ିକର । ନମିଲା କୃଷ୍ଣର ପୟର ॥

## ଶ୍ରୀ ଭଗବାନୁବାଚ

ଶୁଣିଣ ଉଦ୍ଧବ ବଚନ । କହନ୍ତି ପ୍ରଭୁ ଭଗବାନ ।
ତୁ ଯାହା ପଚାରିଲୁ ମୋତେ । ସଞ୍ଚପି କହିବି ତା ତୋତେ ॥
ଯେ ମାଘ ସ୍ନାହାନ କରଇ । ସକଳ ପାପରୁ ତରଇ ॥
ପୂର୍ବେ ଯେ ଏକ ବିପ୍ରବର । ଘର ତା ମଗଧ ଦେଶର ॥
ନାମ ତାହାର ଅଜାମିଳ । ଭେଜି ଯେ ନବୋଲନ୍ତି ଭଲ ॥
ତୁଳସୀ ନାମେକ ବ୍ରାହ୍ମଣୀ । ଅଟଇ ତାହାର ଘରଣୀ ॥
ତାହାର ଏକଇ ନନ୍ଦନ । ନାମ ତାହାର ନାରାୟଣ ॥

ବହୁତ ସମ୍ପଦ ଅଟଇ । ମେଷ ମହିଷ ଗୋରୁଗାଈ ॥
ଅଛଇ ତୋଟା ବାଡ଼ ବୃତ୍ତି । ଆପଣେ ଜଗିଥାଇ ନିତି ॥
ମୂଲ ଦେଇଣ ନ ଜଗାଇ । ଏଡ଼େ କୃପଣ ମୂଢ଼ ସେହି ॥
ନଯାଇ ବେଦ ବିଦ୍ୟା କତି । ଧନ ଅର୍ଜନେ ଦେଇ ମତି ॥
ନାନା ବାଣିଜ୍ୟ କରୁଥାଇ । କପଟେ ପ୍ରାଣୀଙ୍କି ଭଣ୍ଡାଇ ॥
ମୁଖରେ ନଭାଷଇ ସତ୍ୟ । କିଛି ନକରେ ବାରବ୍ରତ ॥
ନଥାଇ ସେବା ଦସ୍ଥାପଦ । ଅତ୍ୟନ୍ତ ଦାରୁଣ ଚାହୁଦ ॥
ଧର୍ମ ଶାସ୍ତ୍ର ମାନଙ୍କି ଛାଡ଼ । ଅଧର୍ମେ ଅନୁକ୍ଷଣେ ବଡ଼ି ।
ଗୋବିନ୍ଦ ଚରଣେ ନ ଭଜ । ଗୃହ କୁଟୁମ୍ବ ପାଶେ ମଜ୍ଜି ॥
ଦିନ ବଞ୍ଚଇ ଅକାରଣେ । ଦୁର୍ବୁଦ୍ଧି ନ ଛାଡ଼ଇ କ୍ଷଣେ ॥
ଏମନ୍ତେ କେତେକାଳ ଗଲା । ଚତୁର୍ଥ କାଳ ଆସି ହେଲା ॥
ଦିନେ ପତ୍ନୀର ସାନଭ୍ରାତ । ତାହାର ପୁରକୁ ଆଗତ ॥
ବ୍ରହ୍ମା ସମାନେ ଦ୍ୱିଜବର । ତାହାର ନାମ ବିଷ୍ଣୁକର ॥
ବେଦ ବିଦ୍ୟାରେ ସେ ନିର୍ବିତ । ଜାଣଇ ଆଗତ ନଗତ ॥
ଧର୍ମ ପାଳନ କରୁଥାଇ । ଅସତ୍ୟ ସଙ୍ଗକୁ ନଯାଇ ॥
ଭଗ୍ନିକି ଦେଖିବା ନିମନ୍ତେ । ସେ ବିପ୍ର ଚଳିଲା ତ୍ୱରିତେ ॥
ଭଣୋଇ ପୁରେ ପରବେଶ । ଭଗ୍ନୀକି ଦେଖିଣ ହରଷ ॥
ସାନନ୍ଦ ହୋଇ ଦ୍ୱିଜବର । ଭଗ୍ନୀକି କଲା ନମସ୍କାର ॥
ଭଣୋଇ ପାଦେ ପ୍ରଣମିତ । କଲ୍ୟାଣ କଲା ସେ ବହୁତ ॥
ଯେବଣ ଦ୍ରବ୍ୟ ଆଣିଥିଲା । ଭଗ୍ନୀର ହସ୍ତେ ତାହା ଦେଲା ॥
ଚରଣ ଧୋଇବାକୁ ନୀର । ଭଗ୍ନୀ ତା ଦେଲା ଧାଣ୍ଡକାର ॥
ପାଦ ପଖାଳି ବିପ୍ରମଣି । ଆସନେ ବସିଲେକ ପୁଣି ॥
ଏମନ୍ତେ ରବି ଅସ୍ତ ହେଲା । ଜଗତେ ନିଶି ଆଚ୍ଛାଦିଲା ॥
ସନ୍ଧ୍ୟା ସୁମରି ବିଷ୍ଣୁକର । ପୁଣି ପୂଜିଲା ବୈଶ୍ୱାନର ॥
ଭୋଜନ ସାରି ସୁଖେ ଶୋଇ । କେତେହେଁ ବେଳେ ସ୍ୱଜପାହ୍ୱ ॥
ପ୍ରଭାତୁ ଉଠିଲା ବହନ । ସାରିଲା ଯେ ବିଧି ବିଧାନ ॥
ରବି ଉଦୟ ବେଳ ଜାଣି । ପଢ଼ଇ ସନ୍ଧ୍ୟା ପ୍ରାପ୍ତ ମଣି ॥
ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଇସାରି । ପ୍ରଣାମ ଶତେବାର କରି ॥

---

ବୈଶ୍ୱାନର — ଅଗ୍ନି

ପୁଣି ପଢ଼ଇ ଋଗବେଦ । ନାମ ଜପଇ ଲକ୍ଷେପଦ ॥
ଚଣ୍ଡୀ ସୁମର ବିପ୍ରମଣି । ମୁଖେ ସହସ୍ର ନାମ ଗୁଣି ॥
ଘୃତ ସମିଧ ମାନ ଦେଇ । ଅଗ୍ନି ଦେବତାଙ୍କୁ ତୋଷଇ ॥
ବ୍ରାହ୍ମଣ ଧର୍ମକର୍ମ ଯେତେ । କରଇ ବିଷ୍ଣୁକର ନିତ୍ୟେ ॥
ତାହା ଦେଖଣ ଅଜାମିଳ । ଗୃହିଁଣ ଥାଇ ଜଳଜଳ ॥
ମନରେ ବିଚାର କରଇ । ମହା ପଣ୍ଡିତ ଜ୍ଞାମା ଏହି ॥
ଏମନ୍ତେ ଗଲା ଦିନଦଶ । ମକର ମାସ ପରବେଶ ॥
ଭଗ୍ନି ଭଣେଇଙ୍କି ବସାଇ । ତାହାକୁ ବିଷ୍ଣୁକର କହି ॥
କାଲି ମକର ସଙ୍କରାନ୍ତି । ଯେ ମାଘ ସ୍ନାହାନ କରନ୍ତି ॥
ଗୋହତ୍ୟା ବ୍ରହ୍ମହତ୍ୟା ଯାଇ । ଅନ୍ତେ ବୈକୁଣ୍ଠ ଗତି ପାଇ ॥
ଲଭନ୍ତି କୋଟି ଯଜ୍ଞ ପୁଣ୍ୟ । ତୁମ୍ଭେ କରିବଟି ସ୍ନାହାନ ॥
ସାତ ବରଷ ଦିନୁ ମୁହିଁ । ମକର ସ୍ନାହାନ କରଇ ॥
ପ୍ରଭାତୁ ବେନଜନେ ଯିବା । ଯତ୍ନରେ ସ୍ନାହାନ କରିବା ॥
ଶୁଣି ଅଜାମିଳ ବୋଲଇ । ତେଣେ ମୋ ପ୍ରୟୋଜନ ନାହିଁ ॥
ବିଅର୍ଥେ ଶୀତରେ ମରିବ । ଦେହକୁ କମ୍ପା ଦୁଃଖ ଦେବ ॥
କିଧର୍ମ ଅଛଇ ତହିଁରେ । ଏହା କହିବ ବିଷ୍ଣୁକରେ ॥
ହସିଣ ବୋଇଲେ ଶାଳକ । ତୁମ୍ଭେ ହେ ଏଡ଼େ ଅବିବେକ ॥
ଯେବଣ ମାଘସ୍ନାନ କଲେ । ଏଭବୁ ତରିଯାନ୍ତି ଭଲେ ॥
ଯେ ଅବା ମତ୍ତଗର୍ବ ବହି । ଗୁରୁଙ୍କ ପତ୍ନୀକି ହରଇ ॥
ତହିଁରେ ଯେତେ ଦୋଷପାଇ । ମାଘ ସ୍ନାହାନେ ପାରହୋଇ ॥
ଯେଅବା ପୁରଣ ନିନ୍ଦନ୍ତି । ଶ୍ରୀଗୁରୁ ବଚନ ଲଙ୍ଘନ୍ତି ॥
ସେ ପ୍ରାଣୀ ଚଣ୍ଡାଳରେ ସରି । ମାଘ ସ୍ନାହାନ କଲେ' ତରି ॥
ଯେଅବା ଭଲଲୋକ ହୋଇ । ମଦିରା ପାନ କରୁଥାଇ ॥
ମହାପାତକୀ ସେହିଜନ । କରିପାରିଲେ ମାଘସ୍ନାନ ॥
ତେବେ ସେ ଦୋଷୁ ହୋଏ ପାର । ନୋହିଲେ ନାହିଁ ପ୍ରତିକାର ॥
ମାଘ ସ୍ନାହାନ ଫଳ ଯେତେ । ବିଶେଷ କହିବା ତା କେତେ ॥
ତୁମ୍ଭେ ମୋହର କର ବୋଲ । ଅସତ୍ୟ ମାର୍ଗରେ ନଚଳ ॥
ସ୍ନାହାନ କଲେ କାଲିଠାରୁ । ତରିବ ଏଭବ ସାଗରୁ ॥
ତା ଶୁଣି ଅଜାମିଳ କହେ । ଶୀତକୁ ମୋର ବଡ଼ ଭୟେ ॥

---

ସମିଧ — ଯଜ୍ଞୋପଯୋଗୀ କାଷ୍ଠ

ତେଣୁ ମୁଁ କରୁଅଛୁ ନାସ୍ତି । ତଳାର୍ଦ୍ଧେ ନାହିଁ ମୋର ମତ ॥
ପତ୍ନୀତା ଅନେକ କହିଲା । ସ୍ନାହାନ କରହୋ ବୋଇଲା ॥
ଧର୍ମ ପଥକୁ କଲେ ନାସ୍ତି । ଅନ୍ତେ ହୁଅଇ ନର୍କଗତି ॥
ଏଣାବ ଜଳବମ୍ଭ ପ୍ରାପ୍ତେ । କ୍ଷଣମାତ୍ରକେ ଏଥୁଁ ଯାଏ ॥
ଏଦେହ ନଥାଇ ସର୍ବଦା । ତନସ୍ତ ଦୁହିତା ପ୍ରମଦା ॥
ଯେତେ ପଦାର୍ଥ ସଞ୍ଚିଥିବ । ଯିବା ବେଳକୁ କଏଦେବ ॥
କେବଳ ସାର ଖେଳଘର । ମିଥ୍ୟାକୁ ଭୁଲିଣ ନମର ॥
ଜାଣିଲ କହୁ ନୋହେ ସତ୍ୟ । ଏସବୁ ବଜିଲ ସଂଜାତ ॥
ସଂସାରୁ ତରିବାକୁ ଗତି । କେବଳ ବିଷ୍ଣୁର ଭକତି ॥
ତୁ ଏବେ ଭଜ ନାରାୟଣ । ନୋହିଲେ ନାହିଁ ପରିତ୍ରାଣ ॥
ଶୁଣି ମଉନ ଦ୍ୱିଜବର । ପତ୍ନୀକି ନଦେଲା ଉତ୍ତର ॥
ଯେସାହା ମନ ରୂପେ ଗଲେ । ଗୃହ ବେପାର ମାନକଲେ ॥
ବିଷ୍ଣୁ କରନ୍ତି ଆସିଛନ୍ତି । ଦିବସ ଶେଷେ ହେଲା ନଶି ॥
ଆଦିତ୍ୟ ଅସ୍ତ ଯହୁଁ ହେଲା । ବ୍ରାହ୍ମଣ ସନ୍ଧ୍ୟା ସୁମରିଲା ॥
ଅନ୍ନ ଭୋଜନ ସାରି ଶୋଇ । ଏମନ୍ତେ ରାତ୍ର ଶେଷ ହୋଇ ॥
ରଜନୀ ଅଛୁ ବେନଘଡ଼ି । ଦେଲକ ତାମ୍ର ଚୂଡ଼ ରଡ଼ି ॥
ଗଗନେ ପୂର୍ବା ତାରା ତହିଁ । ଉଠିଣ ବିଷ୍ଣୁକର ଗୃହିଁ ॥
ଦୂରରେ ବସୁରଇ ପୁଣି । ଅଛଇ ଅଳପ ରଜନୀ ॥
ଭଣୋଇ ବୋଲେ ଉଠେ ଡାକ । ସ୍ନାହାନ କରି ଯିବଟିକ ॥
ଡାକଲେ ନ ଶୁଣଇ କଣ୍ଠୁ । ମିଛରେ ଶୋଇ ପଡ଼ିଅଛୁ ॥
ପତ୍ନୀ ତାହାର ଦେଲାପେଲ । ସ୍ନାହାନ କରିଯାଅ ବୋଲ ॥
ଅପାର ବେଳେ ସେ ଉଠିଲା । ତୁ ଏବେ ଯାଅ ଯା ବୋଇଲା ॥
ମୋ ଅଙ୍ଗେ ପ୍ରକାଶିଲା ଜ୍ୱର । ଶୀତରେ କମ୍ପଇ ଶରୀର ॥
ଶୁଣି ତା ବିଷ୍ଣୁକର ହସି । ହସ୍ତ ଧଇଲା ତାର ଆସି ॥
ଆସ ବୋଲିଣ ଓଟାରିଲା । ବଳେ ତାହାକୁ ଘେନଗଲା ॥
ନଦୀରେ ପ୍ରବେଶ ହୋଇଲେ । ମୃତ୍ତିକା ଶଉଚ ସାରିଲେ ॥
ମୃତ୍ତିକା ବାରବେଳ ଘସି । ହସ୍ତ ପଖାଳି ତହୁଁ ଆସି ॥
ଆଣିଲେ ଚୂତପତ୍ର ଧାତି । ଦନ୍ତ ମାର୍ଜନା ହିଁ କରନ୍ତି ॥
ଦ୍ୱାଦଶ କୁଳୁକୁଞ୍ଚା କଲେ । ଜଳରେ ଯାଇଣ ପଶିଲେ ॥

---

ତାମ୍ରଚୂଡ଼ — କୁକୁଟ

ମାଧବ ମାଧବ ସୁମର । ଉଚ୍ଚେ ଡାକନ୍ତ ନାମଧର ॥
ବୁଡ଼ିଲେ ତିନିବେଳ ଯାଏ । କୂଳରେ ଆସି ଉହୁହୁଏ ॥
ଦୋବସନେ ଛନ୍ଦୁଁ ଗଲେ । ଗୃହରେ ଯାଇଣ ପଶିଲେ ॥
ଶୁକଳ ବସ୍ତ୍ର ପହିରଣ । କପୋଳେ ତିଳକ ଘେନଣ ॥
ନିର୍ମାଲ୍ୟ ସେବା ଦୁହେଁ କଲେ । ବିଷ୍ଣୁର ଦର୍ଶନେ ଚଳିଲେ ॥
ଦର୍ଶନ କରି ଦୁହେଁ ଆସି । ନିତ୍ୟ ବଚନ ସତ୍ୟଭାଷି ॥
ଉଆ ତଣ୍ଡୁଳ ଅନ୍ନଭୁଞ୍ଜି । ଆମିଷ ଦ୍ରବ୍ୟମାନ ତେଜି ॥
ଏହି ପ୍ରକାରେ କଲେ ନିତ୍ୟେ । ମାଘ ମାସ ସ୍ତ୍ରୀ ପରିଯନ୍ତେ ॥
ମେଲାଣି ମାଗି ବିଷ୍ଣୁ କର । ଚଳିଲା ତାର ନିଜପୁର ॥
ଏମନ୍ତେ କେତେ ଦିନ ଗଲା । ବ୍ରାହ୍ମଣ ଅଜାମିଳ ମଲା ।
ତତକ୍ଷଣେ ଯମଦୂତ ଆସି । ବେଢ଼ିଣ ଅଛନ୍ତି ଆକର୍ଷି ॥
ମରିବାକାଳେ ଦ୍ୱିଜବର । ପୁତ୍ରକୁ ଡାକ ଦେଲା ତାର ॥
ହେ ନାରାୟଣ ଆସପାଶ । ମୋ ପାଶେ କ୍ଷଣମାତ୍ର ବସ ॥
ଧର୍ମ ତା ବିକଶିଲା ପୁଣ । ତେଣୁ ଡାକିଲା ନାରାୟଣ ॥
ଧର୍ମ ତା ଆସି ବିକାଶିଲା । ତେଣୁ ନାରାୟଣ ବୋଇଲା ॥
ପୁତ୍ରକୁ ଡାକିବା ମାତ୍ରକେ । ବାହୁଡ଼ିଗଲେ ଯମଦୂତେ ॥
ବିପ୍ରକୁ ନେଇ ବିଷ୍ଣୁଗଣେ । ମିଳିଲେ ବୈକୁଣ୍ଠ ଭୁବନେ ॥
ପ୍ରଭୁଙ୍କୁ ଦେଖି ନମସ୍କରିଲା । ପାଦ ସେବାରେ ସେ ରହିଲା ॥
ଶୁଣ ଉଦ୍ଧବ ଦିବ୍ୟରସ । ସକଳ ପାପ ଗଲା ନାଶ ॥
ଯେହୁ କରଇ ମାଘସ୍ନାନ । ନଥାଇ ଯମ ଦରଶନ ॥
ସେ ମୋତେ ଅବଶ୍ୟ ଭେଟଇ । ବିଷୟ ପାଶେ ନ ପଡ଼ଇ ॥
ଏହା ଯେ କର୍ମପଥେ ଶୁଣି । ନିନ୍ଦା କରିବେ ମୂର୍ଖ ପ୍ରାଣୀ ॥
ନରକେ ପଡ଼ଇ ଅବଶ୍ୟ । ଭଣେ ନୃସିଂହ ଦାସ ଶିଷ୍ୟ ॥
ଶଏଷାଠିଏ ପଦ ହୋଏ । ପାମର କୃଷ୍ଣ ଦାସ କହେ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ଅଜାମିଳ ଉପାଖ୍ୟାନେ ନାମ ଏକାଦଶୋଽଧ୍ୟାୟ

—×—

# ଦ୍ୱାଦଶ ଅଧ୍ୟାୟ

**ଶ୍ରୀ ଭଗବାନୁବାଚ**

କହନ୍ତି କମଳ ଲୋଚନ । ଉଦ୍ଧବ ଶୁଣ ମୋ ବଚନ ॥
କେବଣ କଥାକୁ ମନୁଷ୍ୟ । ନିନ୍ଦିଲେ କେତେ ହୁଏ ଦୋଷ ॥
ସେକଥା କହିବ ବୁଝାଇ । ଶୁଣ ତୁ ଏକମନ ହୋଇ ॥
ଉଦ୍ଧବ କହେ ମହାବାହୁ । ଶ୍ରୀମୁଖେ ବାରେ ଆଜ୍ଞାହେଉ ॥
ହସି ବୋଲନ୍ତି ହୃଷୀକେଶ । ଶୁଣ ତୁ ନିନ୍ଦାବାକ୍ୟ ଦୋଷ ॥
ସେକଥା କହିବା ବୁଝାଇ । ଶୁଣ ତୁ ସାବଧାନ ହୋଇ ॥
ମୋର ମହିମା ଯେତେଗ୍ରନ୍ଥ । ତାହାଯେ କରଇ ନିନ୍ଦିତ ॥
ସେ ପ୍ରାଣୀମାନେ ବଡ଼ଦୋଷୀ । ଅନ୍ତେ ହୁଅନ୍ତି ନର୍କବାସୀ ॥
ଶ୍ରୀଗୁରୁ ନିନ୍ଦେ ଯେଉଁପ୍ରାଣୀ । ତାକୁ ନିଶ୍ଚେ ପାପୀ ସଙ୍ଗେ ଗୁଣି ॥
ସପ୍ତମ ଜନ୍ମ ପର୍ଯ୍ୟନ୍ତେ । ଦଣ୍ଡ ଦିଅଇ ଜଗନ୍ନାଥେ ॥
ଯେ ଅବା କନ୍ୟା ନିନ୍ଦା କରେ । ଅନ୍ତେ ଝଡ଼ଇ ତମ ଘୋରେ ॥
ଯେଅବା ନିନ୍ଦଇ ଅକ୍ଷର । ମୂର୍ଖ ହୁଅଇ ସେହୁନର ॥
ଦେବଙ୍କୁ ନିନ୍ଦାକରେ ଯେହୁ । ଶିରଚ୍ଛେଦନ ହୁଏ ସେହୁ ॥
ଯେ ପ୍ରାଣୀ ଦେବଙ୍କୁ ନିନ୍ଦଇ । ସେପ୍ରାଣୀ ବଡ଼ ଦୋଷୀ ହୋଇ ॥
ବିଷ୍ଣୁଙ୍କୁ ନିନ୍ଦଇ ଯେ ନର । ସନ୍ତାନ ନୁହଇ ତାହାର ॥
ଗୃହକୁ ଯେହୁ ନିନ୍ଦାକରେ । ସେପ୍ରାଣୀ ବୁଲେ ଦେଶାନ୍ତରେ ॥
ଯେବା ଯାହାକୁ ନିନ୍ଦାକରେ । ତାହାସେ ନମାନନ୍ତି ନରେ ॥
ନିନ୍ଦା କରଇ କଲ୍ପଗୁଣ । ରାକ୍ଷସ ହୋଇ ହୋଏଜନ୍ମ ॥
ଦୁର୍ବୁଦ୍ଧି ପଣେ ଯେଉଁସୁତ । ନିନ୍ଦା କରଇ ତାତମାତ ॥
ତାହାକୁ କାହିଁ ଦୋଷଅଛି । ଅନ୍ତେ ହୁଅଇ ଶାଖାପକ୍ଷୀ ॥
ପୁଣି ମନୁଷ୍ୟ ଜନ୍ମ ହୁଏ । ଦରିଦ୍ର ଅବସ୍ଥା ସେ ପାଏ ॥
ଦିବ୍ୟ ଗୁରୁଙ୍କୁ ନିନ୍ଦାକଲେ । ପଡ଼ଇ କୁମ୍ଭୀପାକେ ଭଲେ ॥
ଶ୍ୱାନ ହୁଅଇ କେତେଦିନ । ଏକଥା ଧ୍ରୁବ ବୋଲି ଜାଣ ॥
ଯେଅବା ମିତ୍ରକୁ ନିନ୍ଦଇ । ଅବଶ୍ୟ ଦୁର୍ଗତି ଲଭଇ ॥

---

କୁମ୍ଭୀପାକ — ନରକ ବିଶେଷ

ଯେଅବା ପୁତ୍ରକୁ ନିନ୍ଦନ୍ତି । ଯମ ଦଅଇ ତାକୁ ଶାସ୍ତି ॥
ଯେଅବା ଗୁରୁ ନିନ୍ଦାକରେ । ଅନ୍ତେ ଶୂକର ରୂପ ଧରେ ॥
ଧର୍ମକୁ ନିନ୍ଦା କରେ ଯେହୁ । ଶିରଚ୍ଛେଦନ ହୁଏ ସେହୁ ॥
ବ୍ରାହ୍ମଣେ ନିନ୍ଦା ଯେବେକରେ । କୁଷ୍ଠ ବ୍ୟାଧିରେ ସେହୁ ମରେ ।
ଗୁରୁ ନିନ୍ଦନେ ହୋଏ ମୂର୍ଖ । ଦେବ ନିନ୍ଦିଲେ ହୋଏ ଦୁଃଖ ॥
ଏକଥା ନୁହଇ ଯେ ଆନ । ଶ୍ରୀମୁଖ ବଚନ ପ୍ରଚ୍ଛିନ୍ନ ॥
ଯେଅବା ସ୍ତ୍ରିଗକ ନିନ୍ଦଇ । ସେ ପ୍ରାଣୀ ନପୁଂସକ ହୋଇ ॥
ଗର୍ବିତା ପଣେ ଯେ ସର୍ବଥା । ନିନ୍ଦଇ ତପୀଜପୀ କଥା ॥
ତାଙ୍କର ଧର୍ମ ହୋଏ ନାଶ । ନରକେ ପଡ଼ଇ ଅବଶ୍ୟ ॥
ଯେ ପ୍ରାଣୀ ନିନ୍ଦଇ ଶିବଙ୍କୁ । ଚରଣ ବ୍ୟାଧି ହୋଏ ତାକୁ ॥
ବନ୍ଧୁ ଜନକୁ ନିନ୍ଦା କଲେ । ତୁଟଇ ନିଜ ଆୟୁ ଭଲେ ॥
ସ୍ୱରୂପ ଅଟଇ ଯେ କଥା । କେବେହେଁ ନୁହଇଁ ଅନ୍ୟଥା ॥
ସାଧୁଙ୍କୁ ନିନ୍ଦା ଯେ କରନ୍ତି । ଅନ୍ତେ ହୁଅଇ ନର୍କଗତ ॥
ଯେ ନିନ୍ଦା କରଇ ସଂସାର । କର ଛେଦନ ହୁଏ ତାର ॥
ଏକଥା ସତ୍ୟଟି ଉଦ୍ଧବ । ଅନ୍ୟଥା କେ ତାହା କହିବ ॥
ଅଗ୍ନିକ ସେହୁ ନିନ୍ଦାକରେ । ଅଜୀର୍ଣ୍ଣ ବ୍ୟାଧିରେ ସେ ମରେ ॥
ସ୍ୱଜନ ନିନ୍ଦା କରେ ଯେଟି । ସେ ପ୍ରାଣୀ ହୋଏ ମହାକଷ୍ଟୀ ॥
ଆବର ନିନ୍ଦା ବାକ୍ୟ ଯେତେ । ସଂକ୍ଷେପି କହିବା ତା କେତେ ॥
ଏଆଦି ଛନ୍ତି ଯେତେ ଜନ । ଆଚରନ୍ତି ପାପପୁଣ୍ୟ ॥
ଯେ ଯାହା ଦୋଷ ଅନୁରୂପେ । ଆପଣା କର୍ମ କଳାପେ ॥
ତାହା ବିଚାର ଯମଧର୍ମ । କରନ୍ତି ନାନାରୂପେ ଜନ୍ମ ॥
କେଅବା ହୁଅଇ ଚଣ୍ଡାଳ । କାହାକୁ କରନ୍ତି ଶୃଗାଳ ॥
କେଅବା ମୃଗଦେହ ବହେ । ଶାଗୁଣାପକ୍ଷୀ କେବା ହୁଏ ॥
ପନ୍ନଗ ମର୍କଟ ମର୍ଜ୍ଜାର । ଥୋକେ ଏରୂପେ ଜାତକର ॥
ବ୍ୟାଘ୍ର ଭଲ୍ଲୁକ ଗଜ ଅଶ୍ୱ । ମଣ୍ଡୁକ କାକ ଖରହଂସ ॥
ଏରୂପେ ଜନ୍ମନ୍ତି ଥୋକାଏ । ସର୍ବ ସର୍ଜନ ଜନ୍ତୁବସ୍ୱେ ॥
କମଠ ନକୁଳ ଇନ୍ଦୁର । ଗଣ୍ଡାଯେ ଗଯୂଳ ସମ୍ବର ॥

---

ପନ୍ନଗ — ସର୍ପ
କମଠ — କଇଁଛ

ଗାଈ ମନ୍ଥଷ ଶଶାଙ୍କିଙ୍କ । ଏଆଦ ଅଛନ୍ତି ଯେତେକ ॥
ଏଆଦ ଯମର ରଚନା । ଟସନ୍ନ କ ନଜାଣନ୍ତ ଜନା ॥
ତାହାଙ୍କୁ ଅଗୋଚର ଜସ । ଭୁଲଇ ଭଲ କର୍ମଦୋଷ ॥
ଲଲଟେ କରଇ ଲେଖନ । ମେକର୍ମ କେବେ ନୋହେଆନ ॥
ଯେଅବା ପୁଣ୍ୟବନ୍ତ ପ୍ରାଣୀ । ରାଜା ହୁଅଇ ମର୍ତ୍ତ୍ୟେ ଆଣି ॥
ପାପ ସାମନ୍ତ କେବା ହୁଏ । ସ୍ୱକର୍ମ ଗୁଣେ ଭୋଗ ପାଏ ॥
କାହାକୁ ବ୍ରାହ୍ମଣ କରାନ୍ତି । ଜଗତେ ପୂଜା ସେ ପାଆନ୍ତି ॥
ଅଷ୍ଟାଦଶ ପାତକ ଜାତ । ଭୁଆଣ କଲେ ଜନ୍ମୁପନ୍ତ ॥
କେଅବା ହୁଏ ନପୁଂସକ । ରୋଗୀ ହୁଅନ୍ତି ଥୋକେ ଲୋକ ॥
ଖଞ୍ଜ କୁବୁଜ ପାଦହୀନ । କର୍ମଟି ଅଟଇ ପ୍ରମାଣ ॥
କର୍ମେ ଯେତେକ ଅର୍ଜିଥାଇ । ସେଫଳ ଅବଶ୍ୟ ଭୁଞ୍ଜଇ ॥
ଏହା ନଜାଣି ମୂର୍ଖ ଲୋକେ । ନିନ୍ଦନ୍ତି ବିଧାତାକୁ ଥୋକେ ॥
ରାଜ୍ୟ ପାଇଲେ ଜନ୍ମୁରାଜା । କର୍ମେ ସକଳ ହେଲେ ପ୍ରଜା ॥
ପୂର୍ବେ ଯେ ସୂର୍ଯ୍ୟବଂଶେ ହର । ଶ୍ରୀରାମ ରୂପେ ଅବତାର ॥
ଆପଣା କର୍ମଦୋଷ ଯୋଗେ । ଅରଣ୍ୟେ ଗଲେ ଜଣ ତିନି ॥
ରାଜ୍ୟ ପାଇଲେ ହୋନ୍ତେ ରାଜା । କର୍ମ ଦୋଷରୁ କଲେ ତେଜ୍ୟା ॥
ଭାଇ ଭାରିଯା ସଙ୍ଗେ ଗଲେ । ଅରଣ୍ୟେ ବନବାସ କଲେ ॥
ତହିଁ ପାଇଲେ ଯେତେ କଷ୍ଟ । କାଳେ ହୋଇଲା ପତ୍ନୀକଷ୍ଟ ॥
ସୀତାଙ୍କୁ ନେଲା ଦଶମୁଖ । ନଦେଖି ଉଚ୍ଚେ କଲେ ଶୋକ ॥
ବନେ ବୁଲିଣ ଅତି ଦୁଃଖେ । ଭାଗ୍ୟେ ମିଳିଲେ ଋଷ୍ୟମୁକେ ॥
ସୁଗ୍ରୀ ସଙ୍ଗତେ ମିତ୍ର ହେଲେ । ବାଳିକି ନାରାଚେ ମାଇଲେ ॥
ସୁଗ୍ରୀବରକୁ ରାଜାକରି । ରହିଲେ ମାଲ୍ୟବନ୍ତ ଗିରି ॥
ବୃକ୍ଷ ତଳରେ କଲେ ବସା । ଦୁଃଖେ ବଞ୍ଚିଲେ ଚତୁର୍ମାସ୍ୟା ॥
ଶରତ କାଳେ ସୁଗ୍ରୀବର । ଅଇଲେ ଥାଟ ଯେନି ତାର ॥
ପେଷିଲେ ଚାରିଦିଗେ ଦୂତ । ଲଙ୍କାକୁ ଗଲା ହନୁମନ୍ତ ॥
ସୀତାଙ୍କୁ ଖୋଜିଣ ଅଇଲା । ରାମକୁ ବାରତା କହିଲା ॥
ସମୁଦ୍ରେ ବାନ୍ଧି ସେତୁବନ୍ଧ । ପାର ହୋଇଲେ କପିବୃନ୍ଦ ॥
ଦୈତ୍ୟ ସଙ୍ଗତେ ଯୁଦ୍ଧ କଲେ । ଦୁଷ୍ଟ ରାବଣକୁ ମାଇଲେ ॥
ବିଭୀଷଣକୁ ରାଜା କରି । ଆଣିଲେ ଜନକ କୁମାରୀ ॥
କାଳେ ସେ ପ୍ରାପତ ନୋହିଲା । ପୁଣିହିଁ ବିଚ୍ଛେଦ ହୋଇଲା ॥

ସୃଷ୍ଟି ଆସନ୍ତେ କେତେକାଳେ । ସେ ସଖି ପଶିଲେ ପାତାଳେ ॥
ଶୁଣହେ।କର୍ମର ବାରତା । କେବେହେଁ ନୁହଇ ଅନ୍ୟଥା ॥
କର୍ମଟି ସବୁ ମୂଳ ଜାଣ । କର୍ମରୁ ନାହିଁ ବଡ଼ ଆନ ॥
ଯେତେ କହିଲି ପାପପୁଣ୍ୟ । ଏ ଅନୁରୂପେ ପ୍ରାଣୀ ଜନ୍ମ ॥
ପାଳିଲେ ମାଘସ୍ନାନ ଧର୍ମ । ଖଣ୍ଡଇ ସକଳ ଅକର୍ମ ॥
ଯମ ନ ଲଙ୍ଘେ ତାର ସୀମା । ସେ ପ୍ରାଣୀ ଅଟେ ପୁଣ୍ୟଆତ୍ମା ॥
ସୁଜନେ ମାଘ ସ୍ନାନ କର । ସକଳ ପାପ ପରିହର ॥
ଭଣଇ ଧନକୃଷ୍ଣ ଦାସ । ଅଣନଜ ପଦରେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ପାପପୁଣ୍ୟ କର୍ମାନୁସାରେ କଥନେ ନାମ ଦ୍ୱାଦଶୋଽଧ୍ୟାୟ

— × —

# ତ୍ରୟୋଦଶ ଅଧ୍ୟାୟ

**ଶ୍ରୀ ଭଗବାନୁବାଚ**

କହନ୍ତି ପ୍ରଭୁ ଭଗବାନ । ଶୁଣହୋ କର୍ମର ବିଧାନ ।
ଅତି ରହସ୍ୟ କଥା ଏହି । ତୋଆଗେ କହିବା ବୁଝାଇ ॥
ତୁ ତାହା ସ୍ଥିରକର ଶୁଣ । ପୂର୍ବେ ଏକଇ ସେ ବ୍ରାହ୍ମଣ ॥
ନୀଳକଣ୍ଠ ପଣ୍ଡା ତା ନାମ । ଅଟଇ ସୁଗୁଣର ଧାମ ॥
ତୁଳସୀ ବୋଲିଣ ବ୍ରାହ୍ମଣୀ । ଅଟଇ ତାହାର ଗୃହିଣୀ ॥
ପାଞ୍ଚ ଦୁହିତା ପାଞ୍ଚ ସୁତ । ସେ ବିପ୍ର ବଡ଼ହିଁ ଦୁଃଖିତ ॥
ନମିଳେ ଅନ୍ନ ବସ୍ତ୍ର କିଛି । ଭିକ୍ଷା ମାଗିଣ ଦିନବଞ୍ଚି ॥
ଦିନେକ ବସିଣ ଏକାନ୍ତେ । ବ୍ରାହ୍ମଣ ବିଚାରଇ ଚିତ୍ତେ ॥
କେବୁଦ୍ଧି ଉପାୟ କରିବି । କୁଟୁମ୍ବ କେମନ୍ତେ ବଞ୍ଚାଇବି ॥
ଶିବଙ୍କୁ ସେବିବଇଁ ଏବେ । ସେଅବା ଏ ଦୁଃଖ ଫେଡ଼ିବେ ॥
ଏସନ ବିଚାରି ମନକୁ । ସେବା କରଇ ଈଶ୍ୱରଙ୍କୁ ॥
ନିତ୍ୟେ ସେ ଉଠଇ ପ୍ରଭାତେ । ସ୍ନାହାନ ସାରିଣ ତ୍ୱରିତେ ॥
ମିଳଇ ମହାଦେବ ସ୍ଥାନେ । ପୂଜା କରଇ ଶୁଦ୍ଧମନେ ॥
ଅରଖ ଦୁଦୁରି ଗୟୂସ । ଗନ୍ଧ ଚନ୍ଦନ ଚମ୍ପାପୁଷ୍ପ ॥
ଅଖଣ୍ଡ ବିଲ୍ୱ ପତ୍ର ଦେଇ । ବହୁତ କରଇ ବିନୟୀ ॥
ହେ ସଦାନନ୍ଦ ପଞ୍ଚମୁଖ । ସୁଦୟା କର ଖଣ୍ଡଦୁଃଖ ॥
ପ୍ରସନ୍ନ ହୋଇ ଦିଅ ବର । ଶରଣ ତୋହର ପୟର ॥
ତୁ ଦେବ କରି ମୋତେ ରକ୍ଷା । କ୍ଷଣେ ପୂରାଅ ମନୋବାଞ୍ଛା ॥
ବହୁତ ସ୍ତୁତି ବାକ୍ୟ ଭଣି । ନିଜ ପୁରକୁ ଆସେ ପୁଣି ॥
ସକାଳୁ ବେଳବୁଡ଼ି ଯାଏ । ଶିବଙ୍କୁ ସେବା କରୁଥାଏ ॥
ଶତେ ବରଷ ପରଯନ୍ତେ । ଏମନ୍ତେ ସେବା ଦେଲା ନିତ୍ୟେ ॥
ପ୍ରସନ୍ନ ନୋହିଲେ ଧୂର୍ଜଟି । ବିମୁଖ ହୋଇ ବିପ୍ରଗୋଟି ॥

---

ଧୂର୍ଜଟି — ମହାଦେବ
ପଞ୍ଚମୁଖ — ଶିବ

ବସିଲ ଚିନ୍ତାଭର ହୋଇ । ଲୋଚନୁ ଅଶ୍ରୁଜଳ ବହି ॥
ବୋଲଇ ଭକ୍ଷିବ ମୁଁ ବିଷ । ଆଜମୁଁ ମରିବ ଅବଶ୍ୟ ॥
ଏତେ ଦୁଃଖରେ ଯାଇ କରି । କମ୍ପାଇ ଦେହ ଥିବ ଧରି ॥
ଏହି ଠାବରେ ପ୍ରାଣ ଛାଡ଼ୁ । ହର ଉପରେ ହତ୍ୟାହେଉ ॥
ଏମନ୍ତ ବିଚାରିଣ ମନ । ଗୃହକୁ ନ ଗଲା ସେଦିନ ॥
ଶୋଇଲ ଉପବାସ କରି । ହୃଦରେ ବୈରାଗ୍ୟ ସୁମରି ॥
ତାଦେଖି ପାର୍ବତୀ ବିକଳ । ନମିଲେ ହର ପାଦତଳ ॥
କର ଯୋଡ଼ିଣ ଦେବୀ କହି । ଶୁଣହେ ତ୍ରୈଲୋକ ଗୋସାଇଁ ॥
ଏ ବିପ୍ର ବହୁ ସେବାକଲା । କମ୍ପାଇ ସୁଦୟା ନୋହିଲା ॥
ନଦେବ ଅନ୍ନବସ୍ତ୍ର କଷ୍ଟୁ । ସଂସାର ବୋଲବେଟି ଛୁଟୁ ॥
ଏଠାରେ ହେଲେ ପ୍ରାଣନାଶ । ଲଭିବ ବ୍ରହ୍ମହତ୍ୟା ଦୋଷ ॥
ଈଶ୍ୱର ବୋଲନ୍ତି ବଚନ । ଏହାର କର୍ମ ବଡ଼ ହୀନ ॥
ତେଣୁ ପାଉଛି ଏତେ ଦୁଃଖ । ଏଜନ୍ମେ ନାହିଁ ତାକୁ ସୁଖ ॥
ଉମା ବୋଇଲେ ତୁମ୍ଭେ ଶୁଣ । ଯେବେ ଭୁଞ୍ଜିବ କର୍ମଗୁଣ ॥
ତୁମ୍ଭଙ୍କୁ କମ୍ପା ସେବାକଲା । ତୁଷ୍ଟକୁ ଗଞ୍ଜି ହୋଇ ମଲା ॥
ତୁ ଦେବ ଅଇଶ୍ୱର୍ଯ୍ୟ ଦାତା । ଅକର୍ମ କର୍ମ ସେ କରତା ॥
ତାହାର କର୍ମେ ନାହିଁ ଯେବେ । ତୁମ୍ଭେ କରୁଣା କର ତେବେ ॥
ଦାରିଦ୍ର୍ୟ ଅବସ୍ଥା ତାହାର । ତୁମ୍ଭ ପ୍ରସାଦେ ଯାଉ ଦୂର ॥
ହସି ବୋଲନ୍ତି ଦେବଶୂଳୀ । ଯାହାକୁ କହିଲୁରେ ବାଳୀ ॥
ଯାହାର ଯଶ କର୍ମନାହିଁ । ସମ୍ପଦ ଲଭିବ ସେ କାହିଁ ॥
ଦେଲେହେଁ ପ୍ରାପତ ନୋହିବ । ଯାହାସେ ଲେଖିଛି ଦଇବ ॥
ପାର୍ବତୀ ବୋଇଲେ ଗୋସାଇଁ । ଦେଖିଲେ ପ୍ରତେ ଯିବ ମୁହିଁ ॥
ଦିଅ ଥୋକାଏ ଧନ ଆଜ । କେମନ୍ତେ ନୋହିବ ଗ୍ରାହର୍ଯ୍ୟ ॥
ହର ବୋଇଲେ ଭଲ ଯିବା । ପ୍ରତ୍ୟକ୍ଷ ତୋତେ ଦେଖାଇବା ॥
ଏମନ୍ତ କହି ଶୂଳଧାରୀ । ଭଣ୍ଡାର ଘରେ ବିଜେକରି ॥
ଲକ୍ଷେ ସୁବର୍ଣ୍ଣ ତହିଁ ଆଣି । ହୀରା ମାଣିକ୍ୟ ରତ୍ନମଣି ॥
ଲକ୍ଷକେ ମୁକୁତା ମିଶାଇ । ଘେନି ଚଳିଲେ ଉମାସାଇଁ ॥
ପଛେ ପାର୍ବତୀ ଶିବ ଆଗେ । ମିଳିଲେ ଯାତାୟାତ ମାର୍ଗେ ॥
ପଦାର୍ଥ ଥୋଇଲେ ପଥରେ । ରହିଲେ ଲତା ଅଭ୍ୟନ୍ତରେ ॥

---

ଶୂଳୀ — ମହାଦେବ    ଶୂଳଧାରୀ — ମହାଦେବ

ଏଥୁ ଅନ୍ତରେ କଥା ଶୁଣ । ତେଣେ ଯେ ଥିଲାକ ବ୍ରାହ୍ମଣ ॥
କ୍ଷୁଧା ସେ ରହି ନ ପାରିଲା । ଶୋଇଲାଠାବରୁ ଉଠିଲା ॥
ଆସଇ ଖରତର ହୋଇ । ଅନ୍ନ ଭୋଜନ ମନଦେଇ ॥
ଗମନ କରୁ କରୁ ବାଟେ । ମିଳିଲା ପଦାର୍ଥ ନିକଟେ ॥
ଏକଥା ବିଚାରଇ ମନେ । ଅନ୍ଧଯେ ଚାଲଇ ଯେସନେ ॥
ନେତ୍ରକୁ ଅଦୃଶ୍ୟ ବିଶେଷେ । ଘୋର ଅନ୍ଧାର ମସ୍ତ ଦିଶେ ॥
ପଥ ଚାଲନ୍ତେ କେତେ ଯିବ । ଦେଖି ମୁଁ ଚକ୍ଷୁ ବୁଜି ଥିବି ॥
ଯଦ୍ୟପି ନ ପାରିବି ଯାଇ । କୁଆଡ଼େ ଯିବି ବଣା ହୋଇ ॥
ଜାଣିବା ତାଙ୍କ ଅନୁମାନ । କେମନ୍ତେ କରନ୍ତି ଗମନ ॥
ଏତେ ବିଚାରି ମୂଢ଼ମତି । ନୟନ ବୁଜିଲା ତତ୍ପତି ॥
ଚାଲଇ ଅନ୍ଧ ପ୍ରାୟ ହୋଇ । ନିବିଡ଼େ ବୁଜ ଚକ୍ଷୁଦୁଇ ॥
କୋଡ଼ିଏ ଭେଡ଼ା ପରଯନ୍ତେ । ଗଲା ନୟନ ବୁଜି ପଥେ ॥
ପଦାର୍ଥଠାରୁ ବଳିଗଲା । କର୍ମଟି ଏତେ ଦୁଃଖ ହେଲା ॥
ବାଟରେ ପଡ଼ିଲାକ ଝୁଣ୍ଟି । ଶୋଣିତ ବାହାରିଲା ଫୁଟି ॥
ତହୁଁ ଗୁହିଁଲା ନେତ୍ରଫେଡ଼ି । ବିକଳେ ଶିରେ କରତାଡ଼ି ॥
ବିମୁଖ ହୋଇ ତହୁଁ ଗଲା । ପଛଆଡ଼କୁ ନ ଚାହିଁଲା ॥
କହନ୍ତି ପ୍ରଭୁ ନାରାୟଣ । ଦେଖହୋ କର୍ମର କଷଣ ॥
ବ୍ରାହ୍ମଣ କଲା ଉଦଯୋଗ । ମନେ ବାଞ୍ଛିତ ସୁଖଭୋଗ ॥
ତାହାର କର୍ମେ ଯେବେଥାନ୍ତା । ସେ ଅର୍ଥ ପ୍ରାପତ ହୁଅନ୍ତା ॥
ଯାହାର କର୍ମ ବାମ ହୋଏ । ସେ କାହିଁ ସୁଖ ଭୋଗ ପାଏ ॥
ଯେଯାହା କର୍ମେ ଯଗପତ । ଅବଶ୍ୟ ଫଳଇ ନିୟତ ॥
ବ୍ରାହ୍ମଣ ଯହୁଁ ଚଳିଗଲା । ସଦନେ ପ୍ରବେଶ ହୋଇଲା ॥
ମନରେ ବିରସ ହୋଇଣ । ବସିଣ ଭାଳଇ ବ୍ରାହ୍ମଣ ॥
ଈଶ୍ୱର ପ୍ରାପ୍ତେ ଦେବତାଙ୍କୁ । ଅନେକ ସେବାକଲି ତାଙ୍କୁ ॥
ସେ ମୋତେ ନୋହିଲେ ପ୍ରସନ୍ନ । ମୋହୋର କର୍ମ ବଡ଼ହୀନ ॥
ଏମନ୍ତେ ମନେ ବିଚାରଇ । ଦୁଃଖ ସୁଖରେ ମଜ୍ଜିଥାଇ ॥
ଏମନ୍ତେ କେତେକାଳ ଗଲା । ସେ ଦ୍ୱିଜ ପ୍ରାଣ ବିସର୍ଜିଲା ॥
ଯମ ଦୂତରେ ଘେନିଗଲେ । ରାଜା ଛାମୁରେ ନେଇ ଦେଲେ ॥
ଚିତ୍ରଗୁପତ ବେଳମନ୍ତ୍ରୀ । ବୋଇଲେ ଶୁଣହୋ ନୃପତି ॥

---

ଶୋଣିତ — ରକ୍ତ    ସଦନ — ଘର

ଏ ବିପ୍ର ମଞ୍ଚପୁରେ ଥିଲା । ଅତି ଦୁଃଖରେ ଦିନନେଲା ॥
କିଛିହିଁ ଧର୍ମ କରିନାହିଁ । ଦେବା ପଦକୁ ଶକ୍ୟ କାହିଁ ॥
ଏକ କଥାଏ କରିଅଛି । ଶୁଣହେ ଆଦ୍ଧବର ବନ୍ଧି ॥
ଏନନ୍ତେ ପ୍ରଭାତୁ ଉଠଇ । ନଦୀରେ ସ୍ନାହାନ କରଇ ॥
ମହାଦେବଙ୍କୁ ପୂଜା କରେ । ବିବିଧ ପୁଷ୍ପ ଦେଇ ଶିରେ ॥
ଅନେକ କାଳ ସେବାକଲା । ଏହାର ବାଞ୍ଛା ନପୂରିଲା ॥
ଏବେ ହୋଇଲା ପ୍ରାଣେ ନାଶ । ଦୂତେ ଆଣିଲେ ତୁମ୍ଭପାଶ ॥
ହେଦେବ ତୁମ୍ଭ ନଗରକୁ । କେମନ୍ତେ ଯୋଗାଇ ମନକୁ ॥
ଯମ ବୋଇଲା ଅଛି ପୁଣ୍ୟ । କଲା ଏ ବାରମାସ ସ୍ନାନ ॥
ତହୁଁ ଏଗାର ମାସ କାଠ । ମକର ମାସ ସବୁ ଶ୍ରେଷ୍ଠ ॥
ମାଘ ସ୍ନାହାନ ଯେ କରଇ । ତେଣେହେଁ ଧର୍ମ ସେହୁପାଇ ।
ରୁଦ୍ରଙ୍କୁ ସେବା କରିଅଛି । ଏଣୁ ଏହାର ପୁଣ୍ୟଅଛି ॥
ଏବେ ଏହାକୁ ଘେନଯାଅ । ସେହି ମନୁଷ୍ୟ ଜନ୍ମ ଦିଅ ॥
ଉତ୍ତମ ସୁଖ ଭୋଗ ପାଉ । ମଞ୍ଚ ମଣ୍ଡଳେ ଜାତ ହେଉ ॥
ଯମ ଆଜ୍ଞାରେ ତାକୁ ନେଲେ । ବ୍ରାହ୍ମଣ ଘରେ ଜନ୍ମ ଦେଲେ ॥
ନାମ ହୋଇଲା ବିଷ୍ଣୁକର । ପାଠେ ନିପୁଣ ଦ୍ୱିଜବର ॥
ଏକଚର୍ଣ୍ଣୀ ନାମେଣ ପୁର । ତହୁଁ ହୋଇଲା ନୃପବର ॥
ବିପୁଳ ସୁଖ ଭୋଗ କଲା । ନିଶ୍ଚିନ୍ତ ହୋଇ ଦିନ ନେଲା ॥
କହନ୍ତି ଶ୍ରୀ ପୁରୁଷୋତ୍ତମ । ମାଘ ସ୍ନାହାନ ମହାତମ ॥
ଯେ ଜନ ମାଘ ସ୍ନାନ କରି । ଦୂରିତୁ ଅବହେଳେ ତରି ॥
ସ୍ନାନକୁ ଦୃଢ଼ କରି ଚିତ୍ତେ । ଅନ୍ତେ ପାଇବ ଶିର ମୋତେ ॥
ପାମର କୃଷ୍ଣଦାସ ବାଣୀ । ଏକଣ ଦୁଇପଦେ ଭଣି ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
କଣ୍ଠୁପତି ବ୍ରାହ୍ମଣ କଥା ବର୍ଣ୍ଣନେ ନାମ ତ୍ରୟୋଦଶୋଽଧ୍ୟାୟଃ

— × —

---

ରୁଦ୍ର — ଶିବ

# ଚତୁର୍ଦ୍ଦଶ ଅଧ୍ୟାୟ

## ଉଦ୍ଧବ ଉବାଚ

ଉଦ୍ଧବ ବିନୟ ହୋଇଣ । ନମିଲେ ଗୋବିନ୍ଦ ଚରଣ ॥
ସହସ୍ରେ ପ୍ରଣିପାତ କରି । ବୋଲଇ ଶୁଣ ଦେବହରି ॥
ଏ ମାଘ ସ୍ନାନର ଚରିତ । କେମନେ ଜାଣିଲେ ଜଗତ ॥
କାହିଁ ହୋଇଲା ଉତପନ୍ନ । କେ କଲା ଜଗତେ ସୃଜନ ॥
ଏକଥା କହ ଦାମୋଦର । ମନୁ ସଂଶୟ ଯାଉ ଦୂର ॥
ଉଦ୍ଧବ ବାକ୍ୟେ ଦୟାନିଧି । ପ୍ରସନ୍ନ କରୁଣା ଜଳଧି ॥
ହସିଣ ବୋଲନ୍ତି ଅନନ୍ତ । ଚହିଁର କହିବା ବୃତ୍ତାନ୍ତ ॥
ଶୁଣହୋ ପୂର୍ବର ବ୍ୟବସ୍ଥା । ତ୍ରେତୟା ଯୁଗର ଯେକଥା ॥
ଆମ୍ଭେ ଯେ ସୂର୍ଯ୍ୟବଂଶେ ଜାତ । ନାମ ବହିଲୁ ରଘୁନାଥ ॥
ସେ ବଂଶେ ରଜା ଏକଥିଲା । ତ୍ରିଭୁବନେ ସାଧ କଲା ॥
ଦିଲୀପ ଅଟଇ ତା ନାମ । ସହସ୍ରେ ସିଂହ ପରାକ୍ରମ ॥
ଦିନେକ ଦିଲୀପ ରାଜନ । ମୃଗୟା ଅର୍ଥେ ଗଲାବନ ॥
ସଙ୍ଗତେ ସୈନ୍ୟ ଅପ୍ରମିତ । ପାତ୍ର ଯେ ସାମନ୍ତ ଅମାତ୍ୟ ॥
ରାଉତ ମାହୁନ୍ତ ପଦାତି । ଅନେକ ଅଛି ଘୋଡାହାତୀ ॥
ବାଜଇ ବୀର ତୂର ଘୋଷ । ଶବଦେ ପୂରଇ ଆକାଶ ॥
ସମସ୍ତ କୃତବର୍ଣ୍ଣ ଅଂଶ । ଦିଶଇ ସାଗର ସଦୃଶ ॥
କଳା ବସନମାନ ପିନ୍ଧି । ଶିରରେ କଳାପାଗ ବାନ୍ଧି ॥
ଧନୁ ସହିତେ କଳା ଦିଶେ । ସକଳେ ଧାମନ୍ତି ହରଷେ ॥
ଥୋକାଏ ଦୂର ଚଳଗଲେ । ପୁଣିହିଁ ନିଶବଦ ହେଲେ ॥
ବାଜଣା ମାନ ନବଜାଇ । ତୂଣ୍ଡ ଶବଦ ନ ଶୁଭଇ ॥
ସର୍ପୀରେ କରନ୍ତି ଗମନ । ମିଳିଲେ ଗହନ କାନନ ॥
ଥୋକେ ଜଗିଲେ ଚଉକତ । ଥୋକାଏ ବନେ ବିହରନ୍ତ ॥
ଯୋଦ୍ଧା ଶସ୍ତ୍ରମାନ ଧରି । ଉଚେ ଡାକନ୍ତି ରୋଷକରି ॥
ବାଦ୍ୟ ଶବଦ ମୁଖଗୋଳ । ଅନେକ ଶୁଭଇ ଚହଳ ॥
କୁରଙ୍ଗୀ କଛି ନ ଦେଖିଲେ । କ୍ଷଣକେ ଅଶ୍ବ ଛୁଟାଇଲେ ॥

ବନେ ଚଳନ୍ତ ବେଗ ବେଗ । ଦେଖିଲେ ଚରୁଅଛୁ ମୃଗ ॥
ନୃପତ ହରଷ ହୋଇଲେ । କ୍ଷଣକେ ଅଶ୍ୱ ଛୁଟାଇଲେ ॥
ଭୟେ କୁରଙ୍ଗ ପଳାଇଲେ । ନୃପତ ପଛେ ଗୋଡ଼ାଇଲେ ॥
ତାହାଙ୍କ ପଛେ ପଛେ ସୈନ୍ୟ । ଧାମନ୍ତ ଅଛନ୍ତି ବହନ ॥
ସ୍ୱଭାବେ ଶାଳଶିଳ ଭୂମି । ଚରଣ ବଥାଇଲ ଭ୍ରମି ॥
ପୃଷ୍ଟିଣ ନ ପାରନ୍ତି ଯାଇ । ବକଳେ ଅଛନ୍ତି ଗୋଡ଼ାଇ ॥
ନମିଷ ମାତ୍ର ମହାବ୍ୟସ୍ତେ । ଖେଦିଲା ପାଞ୍ଚପୂର୍ଣ ଯାଏ ॥
ନୃପତ ଅଦୃଶ୍ୟ ହୋଇଲା । ମୃଗ ଯେ କେଉଁଆଡ଼େ ଗଲା ॥
ତୃଷାରେ କଣ୍ଠଓଷ୍ଠ ଶୁଖି । ସୈନ୍ୟଙ୍କୁ ଖୋଜଇ ନରେଖି ॥
ଲୋଡ଼ଣ ନ ପାଇଲା ପୁଣି । ପୁଣି ଖୋଜଇ ନରମଣି ॥
ଦେଖିଲା ସୁଣକ ଅନ୍ତରେ । ଅଛଇ ଏକ ସରୋବରେ ॥
ପଦ୍ମ କୁମୁଦ ଫୁଟିଅଛୁ । କ୍ରୀଡ଼ା କରନ୍ତି ନାନାପକ୍ଷୀ ॥
ଶଜଚ ପବନ ନର୍ମଳ । ଅମୃତ ସମାନେ ସେ ଜଳ ॥
ମୁଗୁନ ଶିଳା ଚଜକତ । ଙ୍ଗରେଣ ବଳପଙ୍କ ନାସ୍ତି ॥
ସେ ସରୋବର ରାଜା ଦେଖି । ମନେ ହୋଇଲା ମହାସୁଖୀ ।
ଅଶ୍ୱ ପିଠିରୁ ଓହ୍ଲାଇଲା । ଜଳ ପାଖକୁ ବେଗେ ଗଲା ॥
ଦେଖି ଆନନ୍ଦ ଚାରମନ । ଜଳରେ ପଶିଲା ବହନ ॥
ଶ୍ରୀଅଙ୍ଗ ଙ୍ଗିନବାସେ ଭୋଟୁ । କୂଳରେ ଉଭା ହୋଇଅଛୁ ॥
ବସ୍ତ୍ର ପାଲଟି ବୀରମଣି । ପିନ୍ଧିଲେ ଆନବସ୍ତ୍ର ଆଣି ॥
ଏମନ୍ତ ବେଳେ ସବସୈନ୍ୟ । ମିଳିଲେ ରାଜା ସନ୍ନିଧାନ ॥
ବୋଲନ୍ତି ରାଜ ମୁଖ ଗୁହିଁ । ଏବଡ଼ କୁପଥ ଅଟଇ ॥
ତେଣୁ ସେ ନ ପାରିଲା ଆସି । ବଣା ହୋଇଲୁ ବନେପଶି ॥
ହସ୍ତ ଚରଣ ଚଇ ଗୁହିଁ । ଗୋଡ଼ାଇ ଅଇଲୁ ଗୋସାଇଁ ॥
ଶୁଣି ବୋଲନ୍ତି ନୃପବର । ଏକଥା ଅଟଇ ପ୍ରମାଣ ॥
ଏମନ୍ତ କହଣ ବସିଲେ । ସମସ୍ତେ ଜଳପାନ କଲେ ॥
ରାଜାର ମଣୋହି ନମନ୍ତେ । ଶୀତଳ ଦ୍ରବ୍ୟମାନ ଯେତେ ॥
ଅନ୍ତଃପୁରରୁ ନେଇଥିଲେ । ସମସ୍ତେ ସେଠାରେ ଭୁଞ୍ଜିଲେ ॥
ଆଚମନ ସାରଣ ବସି । ଆଦିତ୍ୟ ଅସ୍ତଗଲା ଆସି ॥
ବୋଲଇ ନୃପତ ଶେଖର । ଆଜ ରହିବା ଏହିଠାର ॥

---

ନମିଷ — କ୍ଷଣ ଆଦିତ୍ୟ — ସୂର୍ଯ୍ୟ

ସବେ ଜଗିବା ଜଳଘାଟ । ତେବେ ପାଇବା ଜନ୍ତୁଭେଟ ।
ଆସିବେ ଜଳପାନ କରି । ଗୋଟିଏ ଜୀବେ କି ଉବୁରି ॥
ସେ ଯାହା ସୁଖେଣ ମାରିବା । ପ୍ରଭୁଙ୍କ ନିଜପୁରେ ଯିବା ॥
ରାଜାର ଆଜ୍ଞା ଶିରେ ଧରି । ସମସ୍ତେ ସନମତ କରି ॥
ପୂର୍ବ ଉତ୍ତର ବେନି ଦିଗେ । ଯାଇ ଜଗିଲେ ବେନି ଭାଗେ ॥
ଦକ୍ଷିଣ ପଶ୍ଚିମର କତି । ଲୋଧାଏ ଜାଲ ବାଡ଼ଦ୍ୟନ୍ତି ॥
ଦେଇଣ ବସିଛନ୍ତି ବେଢ଼ି । ଅଳପ ମାତ୍ର ବାଟ ଛାଡ଼ି ॥
ଯେଯାହା ଆୟୁଧ ଧରିଣ । ଅଛନ୍ତି ଗୁପତ ହୋଇଣ ॥
ଶୁଣ ଉଦ୍ଧବ ଦିବ୍ୟରସ । ରଜନୀ ହୋଇଲା ପ୍ରବେଶ ॥
ସପତ ଘଡ଼ି ହୋଏ ନିଶି । ମିଳିଲେ ବନଜୀବେ ଆସି ॥
ମୃଗ ଶୁକର ବାହ୍ମଟିଆ । ଶଶା ସମ୍ବର ସେ ଶାଲେହା ॥
ଖୁରାଣ୍ଟି ଭଲ୍ଲୁକ ଶାର୍ଦ୍ଦୁଳ । ଗଣ୍ଡାଯେ ହରିଣ ଗୟଳ ॥
ଅଇଲେ ତୃଷାର ଆରତେ । ପଶିଲେ ଜଳପାନ ଅର୍ଥେ ॥
ଦେଖିଣ ସମସ୍ତେ ଧାଇଁଲେ । ଆସିଣ ପଥ ନିରୋଧିଲେ ॥
ଯେଯାହା ଶସ୍ତ୍ରକୁ ମାରିଣ । ନେଲେ ଜନ୍ତୁଙ୍କର ପ୍ରାଣ ॥
ମୃତ ପିଣ୍ଡକୁ ତଳେ ଥୋଇ । କେତେହେଁ ନେଲେ ରାଜପାଖ ॥
ମୃତ ଜୀବକୁ ଘେନିକରି । ଆନନ୍ଦ ମନ ସଭିଙ୍କରି ॥
ଭାର କରିଣ ବୁହାଇଲେ । ନୃପତି ବିଜେ କରି ଗଲେ ॥
ଆଗେ ବଜାଇ ଖୀରତୁର । ପଛେ ବିଜୟେ ନୃପବର ॥
ବଡ଼ାଇ ସମ୍ଭାରେ ଚଳନ୍ତି । ପଥେ ଦେଖିଲେ ଏକଯତି ॥
ହାରିତ ମୁନି ତାଙ୍କ ମନ । ତପୀ ଅଟନ୍ତି ହରିସମ ॥
ଶରୀର ଗୋଟି ଅତିକ୍ଷୀଣ । ସ୍ଫଟିକ ପ୍ରାୟେ ତାଙ୍କ ବର୍ଣ୍ଣ ॥
ବସି ଅଛନ୍ତି ମୃଗଛାଲେ । ଦ୍ୱାଦଶ ତିଳା ଶୋହେଭାଲେ ॥
ଶିରେ ଶୋଭିତ ଜଟାଭାର । ତମ୍ବାର କୁଣ୍ଡଳ କର୍ଣ୍ଣର ॥
କଣ୍ଠେ ତୁଳସୀ ମାଳ ଶୋହେ । ଦିଶେ ଦୁର୍ବାସା ମୁନି ପ୍ରାୟେ ॥
ପରିଧାବନ କଷାବାସ । ସର୍ବାଙ୍ଗେ ବିଲେପନ ଭସ୍ମ ॥
ସ୍ଫଟିକମାଳ କରେ ଧରି । ବିଷ୍ଣୁର ନାମ ଜପକରି ॥
ବାମେଣ ପୀଠ କମଣ୍ଡଳ । ଥୋଇ ଅଛନ୍ତି ତତଃଶୀଳ ॥

---

ଆୟୁଧ — ଅସ୍ତ୍ର    ଶଶା — ଠେକୁଆ
ପୀଠ — ହଳଦିଆ

ବସିଣ ଅଚ୍ଛନ୍ତି ଏକାନ୍ତେ । ନୃପତି ଦେଖିଲେ ସାକ୍ଷାତେ ॥
ଅଶ୍ୱ ପିଠିରୁ ଓହ୍ଲାଇଲା । ମୁନିଙ୍କୁ ନମସ୍କାର କଲା ॥
କଲ୍ୟାଣ କଲେ ମୁନିବର । ବୋଲନ୍ତି ଶୁଣ ଦଣ୍ଡଧର ॥
ଏତେ ପ୍ରଭାତୁ ମହାଶୟ । କି କାର୍ଯ୍ୟେ ଏଥକୁ ବିଜୟ ॥
ହସି ବୋଲନ୍ତି ନୃପମଣି । ଶ୍ରୀମୁନି ସାବଧାନେ ଶୁଣ ॥
ଆମ୍ଭେ ଯେ ମୃଗୟା ଅଇଲୁ । ପଥ ନଜାଣି ବଣାହେଲୁ ॥
ତୃଷାରେ ଲୋଡ଼ନ୍ତେଣି ନୀର । ଦେଖିଲୁ ଏକ ସରୋବର ॥
ସେଠାରୁ କଲୁ ଜଳପାନ । ନୋହିଲେ ହାରନ୍ତ ଜୀବନ ॥
ରାତ୍ରେ ରହିଲୁ ସରୋବର । ମାଇଲୁ ହରିଣ ସମ୍ବର ॥
ରଜନୀ ପ୍ରଭାତୁ ଅଇଲୁଁ । ଯୋଗେଣ ତୁମ୍ଭଙ୍କୁ ଦେଖିଲୁ ॥
ଶ୍ରୀମୁନି ଭାଗ୍ୟ ଥିଲା ମୋର । ଦେଖିଲି ବଦନ ତୁମ୍ଭର ॥
ମୁନି ବୋଲନ୍ତି ଶ୍ରୀ ରାଜନ । ସେ ତୀର୍ଥେ ନକଲୁ ସ୍ନାହାନ ॥
ବିଶେଷ ମାଘ ମାସ ଏହୁ । ପ୍ରଭାତୁ ସ୍ନାନ ଯେ କରଇ ॥
କେ କହିପାରେ ତାର ଧର୍ମ । ଅନ୍ତେଣ ନ ଦଣ୍ଡଇ ଯମ ॥
ତୁ ଯେଉଁ ତୀର୍ଥକୁ ଦେଖିଲୁ । କପାଇଁ ସ୍ନାନ ତୁ ନକଲୁ ॥
ତହିଁ ସ୍ନାହାନ କଲେ ନର । ଅନେକ ଧର୍ମ ହୋଏ ତାର ॥
ଲଭଇ କୋଟି ଜନ୍ମ ଫଳ । ଅନ୍ତେ ବହଇ ସୁରଆଳ ॥
ମୁନି ବଚନେ ରାଜା କହି । ମୁଁ ଗୁରୁ କିଛି ନ ଜାଣଇ ॥
କେବଳ ମାଘ ସ୍ନାନ ବୋଲି । ଏତେକ ମାହାତ୍ମ୍ୟ ନ ଜାଣିଲି ॥
ସ୍ନାହାନ ମାର୍ଗ ନ ଜାଣଇ । ସଂକ୍ଷେପି କହିବ ଗୋସାଇଁ ॥
ମୁନି ବୋଲନ୍ତି ଶୁଣ ତାହା । ଯାହା ପୁଚ୍ଛିଲୁ ନରନାହା ॥
ଯେଅବା ଧର୍ମକୁ ବିଗୃହ । ଯାଆନ୍ତି ତୀର୍ଥ ଯାତ୍ରା କରି ॥
ସ୍ନାହାନ କରି ସଙ୍କଳ୍ପେ । ଦାନ ଦିଅନ୍ତି ବିପ୍ରହସ୍ତେ ॥
ଏଥିରେ ଧର୍ମ ହୋଏ ଯେତେ । ମାଘ ସ୍ନାହାନେ ଫଳ ତେତେ ॥
ଶୁଣ ଶ୍ରୀପାଳ ନୃପମଣି । ଭକତ ହୋଏ ଯେଉଁ ପ୍ରାଣୀ ॥
ଗୃହ କୁଟୁମ୍ବ ଆଶା ତେଜି । ହରି ଚରଣେ ଚିତ୍ତ ମଜି ॥
ଆହାର ନିଦ୍ରା ମଇଥୁନ । ମିଥ୍ୟା ବୈରାଗ୍ୟ ଲୋଭମାନ ॥
ଯେ ପଞ୍ଚମନ ଦୃଢ଼କରି । ତପ ସାଧନେ ବନ ହରି ॥

---

ମୃଗୟା — ଶିକାର | ତୃଷା — ଶୋଷ
ଓହ୍ଲାଇଲା — ଓହ୍ଲାଇଲା | ସରୋବର — ପୋଖରୀ

ଯେ ପ୍ରାଣୀ ଯେଉଁ ଗତି ପାଇ । ମାଘ ସ୍ନାହାନେ ତେତେହୋଇ ॥
ଯେ ଅବା ଧର୍ମ ନମେନ୍ତେଣ । ଦାନ ଦଅଇ ତା ମନେଣ ॥
ଲକ୍ଷେକ ଧେନୁ ଦେଲେ ଦାନ । ଉର୍ଦ୍ଧ୍ୱ ହୁଅଇ ଯେତେ ପୁଣ୍ୟ ॥
ମାଘ ସ୍ନାହାନ ତେତେ ଫଳ । ପୁଣ ଅଯୋଧା ମହୀପାଳ ॥
ଆବର ଧର୍ମ ହୋଏ ଯେତେ । ବଚନେ କହିବା ତା କେତେ ॥
ସମସ୍ତ ନାହିଁ କହିବାକୁ । ଏବେ ମୁଁ ଯିବ ସ୍ନାହାନକୁ ॥
ବଶିଷ୍ଠ ମୁନଙ୍କୁ ପୁଚ୍ଛିବୁ । ସେହି କହିବ ଯିନା ସବୁ ॥
ଏସନ ବୋଲି କହି ଗଲେ । ନୃପତି ତହୁଁ ବାହୁଡ଼ିଲେ ॥
ନଜ ନବରେ ପରବେଶ । ଭଣେ ନୃସିଂହ ଦାସ ଶିଷ୍ୟ ॥
ପାମର କୃଷ୍ଣ ଦାସ କହେ । ପଦ ହୋଇଲା ବଶାଶଏ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ମାଘସ୍ନାନ ଧର୍ମ କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟ

—×—

ଧେନୁ — ଗାଈ     ମହୀପାଳ — ରଜା

# ପଞ୍ଚଦଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତ ପ୍ରଭୁ ଶିଖିପଚ୍ଛ । ଉଦ୍ଧବ ପୁଣି ଲଭମୁକ୍ତ ॥
ଦାଶରଥ ମୁନି ମୁଖୁଁ ପୁଣି । ଗଲା ଦିଲୀପ ନୃପମଣି ॥
ଅଯୋଧ୍ୟା ନଗରେ ମିଳିଲା । ହୟ ପିଠିରୁ ଉତ୍ତରିଲା ॥
ଘଟରେ ହୋଇଲା ପ୍ରବେଶ । ପଦେ ଖଟିଲା ରାଣୀହଂସ ॥
କହଇ ଅଯୋଧ୍ୟାର ସାଇଁ । ମହାଦେଈ ମାନଙ୍କୁ ଗୃହିଁ ॥
ଶୁଣ ଅବଳା ଗଣ ତୁମ୍ଭେ । ମୃଗୟା ଯାଇଥିଲୁ ଆମ୍ଭେ ॥
ତୃଷାରେ ଲୋଡ଼ିଲଇଁ ପାଣି । ଦେଖିଲୁ ଏକ ପୁଷ୍କରଣୀ ॥
ତହିଁରେ ଜଳପାନ କଲୁ । ସମସ୍ତେ ସେଠାରେ ରହିଲୁ ॥
ନିଶାରେ ସରବର ଜଗି । ମାଇଲୁ ବହୁତ କୁରଙ୍ଗୀ ॥
ପ୍ରଭାତେ ଆସିବାର ବେଳେ । ଯତିଏ ଦେଖିଲୁ ପଥରେ ॥
ସେମାନେ ପୁଚ୍ଛିଲେ ସମସ୍ତ । କହିଲି ସକଳ ବୃତ୍ତାନ୍ତ ॥
ମୁନିଏ ବୋଇଲେ ବଚନ । କର ନାହିଁକି ମାଘସ୍ନାନ ॥
ମୁହିଁ ବୋଇଲି ଦେବନାସ୍ତି । ମୁଁ ତାହା ନ ଜାଣଇ ଯତି ॥
କେମନ୍ତେ ମକର ସ୍ନାହାନ । ଶୁଣି ବୋଇଲେ ମହାପୁଣ୍ୟ ॥
ଆବର କଥାଏ କହିଲେ । ଅସର ନାହିଁ ଯେ ବୋଇଲେ ॥
ବୋଇଲେ ବଶିଷ୍ଠଙ୍କୁ ଯାଇ । ଏଧର୍ମ ପଚାରବୁ ତୁହି ॥
ସେ ତୋତେ ସମସ୍ତ କହିବେ । ମାଘ ସ୍ନାହାନ ଯେ ପ୍ରସ୍ତାବେ ॥
ରାଜା ମୁଖରୁ ଏହା ଶୁଣି । ବୋଲନ୍ତି ସକଳ ତରୁଣୀ ॥
ଆମ୍ଭେ କରିବୁ ମାଘସ୍ନାନ । ଶ୍ରୀଦେବ ପଚାର ବହନ ॥
ତକ୍ଷଣେ ସାରି ଆଚମନ । ପିନ୍ଧିଲେ ଦେବାଙ୍ଗ ବସନ ॥
ପଲଙ୍କ ପରେ ବିଜେକଲେ । କର୍ପୂର ତାମ୍ବୁଳ ଭୁଞ୍ଜିଲେ ॥
ଏମନ୍ତ ଦଶଖଣ୍ଡ ବେଳ । ବାହାରେ ବିଜେ ମହୀପାଳ ॥

---

ହୟ — ଅଶ୍ୱ　　　କୁରଙ୍ଗୀ — ମୃଗୀ ହରିଣୀ
ଶିଖିପଚ୍ଛ — କୃଷ୍ଣ　　　ଯତି — ସନ୍ନ୍ୟାସୀ
ପଲଙ୍କ — ଖଟ

ଆସ୍ଥାନେ ରାଜେ୍ନ ଅଛୁ ବସି । ମିଳିଲେ ପାତ୍ରମନ୍ତ୍ରୀ ଆସି ॥
କୁଳର ଗୁରୁ ବଶିଷ୍ଠଙ୍କୁ । ଡକାଇ ଆଣିଲେ ସଭାକୁ ॥
ସଧୀରେ କହିଲେ ବଚନ । ଶ୍ରେମୁନ ବ୍ରହ୍ମାଙ୍କ ନନ୍ଦନ ॥
ତୁମ୍ଭେ ପଣ୍ଡିତ ମହାତ୍ମତା । ଜାଣତ ସକଳ ବ୍ୟବସ୍ଥା ॥
ସୂର୍ଯ୍ୟ ବଂଶରେ ପୁରୋହିତ । ବଖାଣ ଆଗତ ଅନାଗତ ॥
ଧର୍ମଶାସ୍ତ୍ର ଶାରଦ୍ୱତ । ଯେତେ କହିଲେ ତପୋବନ୍ତ ॥
ଦୃଢ଼ କରଣ ଆତ୍ମମନ । ପାଳନ୍ତୁ ତୁମ୍ଭର ବଚନ ॥
କଥାଏ ଅଛୁ କହିବାକୁ । କାଲି ଯେ ଗଲି ମୃଗୟାକୁ ॥
ମୃଗ ଯୂଥକୁ ଦେଖି କରି । ଲୋଭେଣ ଗୋଡ଼ାଇଲି ମାରି ॥
ପାଞ୍ଚ ଯୋଜନ ଯାଏ ଗଲୁ । ମୃଗ ନପାଇ ବଣାହେଲୁ ॥
ତୃଷାରେ ଶୁଖିଗଲା ତୁଣ୍ଡ । ଅତି ବ୍ୟାକୁଳ ହେଲି ପିଣ୍ଡ ॥
ନୀର ଖୋଜନ୍ତେ ବହୁଦୂର । ଦେଖିଲୁ ଏକ ସରୋବର ॥
ତହିଁରେ ଜଳପାନ କଲୁ । ସମସ୍ତେ ସେଠାରେ ରହିଲୁ ॥
ଭୁଞ୍ଜିଲୁ ସକଳ ପଦାର୍ଥ । ଦେହ ହୋଇଲା ଅତି ସୁସ୍ଥ ॥
ସେ ଘାଟେ ଜଗିଣ ନିଶାରେ । ମାଇଲୁ ହରିଣ ଶରରେ ॥
ଅଇଲୁ ରଜନୀ ପ୍ରଭାତେ । ଯତିଏ ଦେଖିଲୁ ସେପଥେ ॥
ତାହାଙ୍କୁ କଲୁ ପ୍ରଣିପାତ । କଲ୍ୟାଣ କଲେ ତପୋବନ୍ତ ॥
ମୋତେ ପୁଚ୍ଛିଲେ ତପସ୍ୱୀ । କକାର୍ଯ୍ୟେ ବନେ ଦଣ୍ଡଧାରୀ ॥
ତାହାଙ୍କୁ ବଚନ କହିଲୁ । ମୃଗୟା ଅର୍ଥେ ଆସିଥିଲୁ ॥
ଶୁଣି ବୋଇଲେ ତପୋବନ୍ତ । ପାଳନ୍ତୁ କ କ ଶାରଦ୍ୱତ ॥
ମକର ସ୍ନାହାନ ତ କରି । ଅଚ୍ଛୁତ ଧର୍ମକୁ ଆଚରି ॥
ମୁଁ ତାହା ନାସ୍ତି କଲି ଶୁଣି । ତାହାମୁଁ ନ ଜାଣଇ ମୁନି ॥
କେମନ୍ତେ ମାଘସ୍ନାନ ଫଳ । ଋଷିଶ୍ରେ କହ ତପଃଶୀଳ ॥
ମୁନି ବୋଇଲେ ରାଜେ୍ନ ଶୁଣ । ମାଘ ସ୍ନାହାନେ ବହୁପୁଣ୍ୟ ॥
ପୁଚ୍ଛିବୁ ବଶିଷ୍ଠ ମୁନିଙ୍କି । ସ୍ନାହାନ କରନ୍ତୁ ଏଣିକି ॥
ତାହାଙ୍କ ବଚନେ ଅଇଲୁ । ଶ୍ରେମୁନ ତୁମ୍ଭଙ୍କୁ କହିଲୁ ॥
ମାଘ ସ୍ନାହାନ ଧର୍ମକଥା । ଫେଡ଼ି କହନ୍ତୁ ଧର୍ମବେତ୍ତା ॥

---

ଆସ୍ଥାନେ — ସିଂହାସନରେ     ରାଜେ୍ନ — ରାଜା
ଦଣ୍ଡଧାରୀ — ରାଜା     ବଖାଣ — କହ
ନାସ୍ତି — ନାହିଁ

ଯେବେ ଏପରି ବ୍ରତ ଅଛି । କହ୍ମା ନକହ ବ୍ରହ୍ମଋଷି ॥
ବଶିଷ୍ଠ ବୋଲନ୍ତି ବଚନ । ଶୁଣହେ ଅଯୋଧ୍ୟା ରାଜନ ॥
ମାଘ ସ୍ନାହାନ ଧର୍ମ ଅର୍ଥ । ଯାହା ପୁଚ୍ଛିଲୁ ନରନାଥ ॥
ସେକଥା କହିବା ବିସ୍ତାରି । ଶୁଣନ୍ତୁ ମନେ ହେତୁ କରି ॥
ସଂସାରେ ପ୍ରାଣୀ ଛନ୍ତି ଯେତେ । ଧର୍ମ ବାଞ୍ଛିତ ଯାର ଚିତ୍ତେ ॥
ମକର ସ୍ନାହାନ ସେ କଲେ । ତରେ ଗୋହତ୍ୟା କରିଥିଲେ ॥
ଯେଅବା ଅପୂର୍ବିକ ପ୍ରାଣୀ । ମାଘ ସ୍ନାହାନେ ତରେ ପୁଣି ॥
ଖଣ୍ଡଇ ଅପୂର୍ବିକ ଦୋଷ । ଅନ୍ତେ ଲଭଇ ସ୍ୱର୍ଗବାସ ॥
ମଇଷ ଦୋହୀ ହୋଇଥିଲେ । ସେ ମହାପାପୀ ତରେ ଭଲେ ॥
ସେ ଯେବେ ଏବ୍ରତ କରଇ । ମଇଷ ଦୋହ ନାଶଯାଇ ॥
ଯେଜନ ମତ୍ତଗର୍ବ ପଣେ । ନସେବେ ଶ୍ରୀଗୁରୁ ଚରଣେ ॥
ଲଙ୍ଘନ ଗୁରୁଙ୍କ ବଚନ । ମହାପାତକୀ ସେହୁଜନ ॥
ତାହାଙ୍କୁ କେବେ ନୋହେ ପାର । କଥାଏ ଅଛି ପ୍ରତିକାର ॥
ଯେବେ ମକର ସ୍ନାନ କରେ । ସେ ମହା ପାପରୁ ନିସ୍ତରେ ॥
କେଅବା ଭଲଲୋକ ହୋଇ । ମଦିରା ପାନ କରୁଥାଇ ॥
ତାହାର ନାହିଁ ସଦଗତି । ମହାପାତକୀ ସେ ଅଟନ୍ତି ॥
ତାହସ୍ତେ ଜଳ ନ ଛୁଇଁବ । ତା ସଙ୍ଗେ ସଙ୍ଗହିଁ ନୋହିବ ॥
ତାମୁଖ ପ୍ରଭାତେ ନ ଚାହିଁ । ଚାହିଁଲେ ବିରୋଧ ପଡ଼ଇ ॥
ତହିଁକ ପରିତ୍ରାଣ ଦାନ । କରି ପାରିଲେ ମାଘସ୍ନାନ ॥
ସ୍ନାହାନ କଲେ ବିଧିମତେ । ସେଦୋଷ ଖଣ୍ଡଇ ତ୍ୱରିତେ ॥
ଆହୁରି ଧର୍ମ ଯେତେ ହୋଇ । ବଚନେ କେ ପାରିବ କହି ॥
କୃଷ୍ଣ ଭଜନ ଏକଚିତ୍ତେ । ସ୍ନାହାନ ବିଧିମାନ ଏତେ ॥
ମକର ସଙ୍କ୍ରାନ୍ତି ଠାରୁ । ଉଠିବ ନିଶି ପ୍ରଭାତରୁ ॥
ମାଧବ ନାମ ଘୋଷୁଥିବ । ତକ୍ଷଣେ ସ୍ନାହାନ କରିବ ॥
ତଇଳ ନ ଘେନିବ ଗାତ୍ରେ । ଦନ୍ତ ମାର୍ଜନା ଚୂତପତ୍ରେ ॥
ସ୍ନାହାନ କରି ନଦୀ ଜଳେ । ମଥା ପୋଛିବ ଆସି କୂଳେ ॥
ଆସିବ ଓଦା ବସନରେ । ପ୍ରବେଶ ହୋଇଲେ ପୁରରେ ॥
ଶୁକଳ ବସନ ପିନ୍ଧିବ । ଲଲାଟେ ତିଳକ ଘେନିବ ।

---

ନରନାଥ — ରାଜା
ପରିତ୍ରାଣ — ମୁକ୍ତି
ନିସ୍ତରେ — ମୁକ୍ତିପାଏ
ନିଶି — ରାତି
ଚୂତପତ୍ରେ — ଆମ୍ବପତ୍ରରେ

ନିର୍ମାଲ୍ୟ ସେବା ବିଧିସାର । ଯାଇ ଦେଖିବ ନରହରି ॥
ସତ୍ୟ ଭାଷିବ ପ୍ରତି ଦିନ । ମିଥ୍ୟାକୁ ତେଜିବ ବଦନ ॥
ଉଆ ତଣ୍ଡୁଳ ରାନ୍ଧି ଭାତ । ଉତ୍ତମ ଗୁଆଘୃତ ଯୁକ୍ତ ॥
ଅଦା କଦଳୀ ମୁଗ ସାରୁ । ଦୁଗ୍ଧ ଦହି ଏହିଆଦିରୁ ॥
ଏରୂପେ କରି ବିଧିମତ । ଆତ୍ମାକୁ କରିବ ତୃପତ ॥
ଆମିଷ ଦ୍ରବ୍ୟ ନ ଭକ୍ଷିବ । ମୂଳା ଦଦଖି ଉପେକ୍ଷିବ ॥
ଯଦ୍ୟପି କରିବ ଭକ୍ଷଣ । ଶୂକର ମାଂସର ସମାନ ॥
ଏହି ପ୍ରକାରେ ମାସେ ଯାଏ । ଏବ୍ରତ ଆଚରି ଯେଥାଏ ॥
ତାହାର ବହୁପୁଣ୍ୟ ହୁଏ । ମନ ବାଞ୍ଛିତ ଫଳପାଏ ॥
ଅନ୍ତେ ବସଇ ବ୍ରହ୍ମଲୋକେ । ଅମୃତ ପାନକରେ ସୁଖେ ॥
ଶୁଣହୋ ଅଯୋଧ୍ୟା ଈଶ୍ୱର । ପାଳିଲେ ଏହି ବ୍ରତ କର ॥
ଶୁଣି ନୃପତି ତୋଷମନ । କଲକ ମକର ସ୍ନାହାନ ॥
ତାହାର ଯେତେ ନାରୀ ଥିଲେ । ସେହି ସେ ବ୍ରତ ଆଚରିଲେ ॥
ଆବର ଯେତେକ ଅମାତ୍ୟ । ସମସ୍ତେ କଲେ ଏହିବ୍ରତ ॥
ସେ ଦିନୁ ଜାଣିଲେ ସମସ୍ତ । ତ୍ରୈଲୋକ୍ୟ ହୋଇଲ ଏବ୍ରତ ॥
ଜାଣିଲେ ତିନପୁର ଯାକ । ସକଳ ନର ନାରୀ ଲୋକ ॥
ମୁଁ ଏହା ରାମ ଅବତାରେ । ଶୁଣିଛି ବଶିଷ୍ଠ ମୁଖରେ ॥
ଆମ୍ଭେ ଅନାଦି ନାରାୟଣ । ସମସ୍ତ ଆମ୍ଭର ଭିଆଣ ॥
ଆମ୍ଭେ ସକଳ କଥା ଜାଣୁ । ତୋ ଆଗେ କହୁଅଛୁ ତେଣୁ ॥
ଉଦ୍ଧବ ପାଳ ଏହିଧର୍ମ । ଉପେକ୍ଷି ସାଂସାରିକ କର୍ମ ॥
ପାଳିଲେ ଏ ଧର୍ମ ଆଚର । ମାୟା ସଂସାରୁ ଏବେ ତର ॥
ଶୁଣି ଉଦ୍ଧବ ତୋଷଚିତ୍ତେ । ନମଇଁ କୃଷ୍ଣ ପାଦଗତେ ॥
ସେ କୃଷ୍ଣ ପାଦେ କରିଆଶ । ଭଣେ ନୃସିଂହ ଦାସ ଶିଷ୍ୟ ॥
ପାମର କୃଷ୍ଣ ଦାସ କହେ । ଉଦ୍ଧବ ଭକ୍ତ ଦେବରାୟେ ॥
ଉଦ୍ଧବେ କହିଥିଲ ମାଧବ । ଏ ଅଧ୍ୟା ଶଏ ଦୁଇ ପଦ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ବଶିଷ୍ଠ ଗନ୍ନ ମୁଏନ୍ନେ ମକର ସ୍ନାହାନ ଧର୍ମ କଥନେ ନାମ ପଞ୍ଚୋଦଶୋଽଧ୍ୟାୟ

—X—

ନିର୍ମାଲ୍ୟ ... ଶୁଖିଲା ଅଭଡ଼ା
ଦଦଖି ... ବରକୋଳି
ଅମାତ୍ୟ ... ମନ୍ତ୍ରୀ
ତୋଷ ... ଆନନ୍ଦ
ଉପେକ୍ଷି ... ତ୍ୟାଗକରି

# ଷୋଡ଼ଶ ଅଧ୍ୟାୟ

ଶ୍ରୀ ଭଗବାନୁବାଚ

କହନ୍ତି ଜଗତ କରତା । ଉଦ୍ଧବ ଶୁଣ ଧର୍ମକଥା ॥
ନାରଦ ଆଗେ ବେଦପତ୍ତି । ଏଧର୍ମ କହନ୍ତି ସେ ନିତି ॥
ଦଳୀପ ରଜାଙ୍କୁ ବଶିଷ୍ଠ । କହିଲେ ଏହି ଧର୍ମବାଟ ॥
ତୁ ତହିଁ ପୁଚ୍ଛାକଲୁ ଏବେ । ଥୋକାଏ କହିଲୁ ପ୍ରସ୍ତାବେ ॥
ଆବର କଥାଏ ଅଛଇ । ତୋ ଆଗେ କହିବା ବୁଝାଇ ॥
ପୂର୍ବେ ଯେ ମଣିଗିରି ପାଶ । ଥିଲାକ ନାମ ବ୍ରହ୍ମଦେଶ ॥
ସେ ଦେଶେ କଲା ଅପାଳକ । ଦୁଃଖୀ ହୋଇଲେ ସର୍ବଲୋକ ॥
ବୃଷ୍ଟି ନକଲା ଯହିଁ ପାଣି । ଶସ୍ୟ ନ ଉପୁଜିଲା ପୁଣି ॥
ସେ ପାର ଉପେକ୍ଷିଣ ଗଲେ । ଆନ ନଗ୍ରେକ ବସାଇଲେ ॥
ତେଣୁ ଭଜିଲାକ ସେପୁର । ହୋଇଲେ ଅତି ନାରଖାର ॥
ସେ ମଣି ପର୍ବତ ଶିଖରେ । ଥିଲେ ଯେ ଭୃଗୁ ମୁନିବରେ ॥
ଆଶ୍ରମ କରି ତହିଁ ଥାନ୍ତି । ତପ ସାଧନେ ଦିନନ୍ୟନ୍ତି ॥
ଭୁଞ୍ଜନ୍ତି ବନ ଫଳମୂଳ । ଦୁଃଖେ ବଞ୍ଚନ୍ତି ଦିନକାଳ ॥
ସେ ମୁନି ବ୍ରହ୍ମାର ନନ୍ଦନ । ହରି ଚରଣେ କରିଧ୍ୟାନ ॥
ଭୂତ ଭବିଷ୍ୟ ମହାଜ୍ଞାତା । ଜାଣନ୍ତି ସର୍ବ ଶାସ୍ତ୍ର କଥା ॥
ବନେଟି ଭୃଗୁ ମହାଋଷି । ମଡ଼ିଆ ଦ୍ୱାରେ ଛନ୍ତି ବସି ॥
ଏମନ୍ତେ ମୁନିଙ୍କ ସ୍ଥମୁରେ । ମିଳଲେ ଏକ ବିଦ୍ୟାଧରେ ॥
ନାମ ତାହାର ବିଶ୍ୱାବସୁ । ପଥିକ ଅଇଲା ଆକାଶୁ ॥
ସେ ହାଦେ ସ୍ୱର୍ଗର ଗନ୍ଧର୍ବ । ବିଶଇ ଅତହିଁ ସମ୍ଭବ ॥
ଦେବତା ଦେହ ବ୍ୟାଘ୍ରମୁଖ । ତେଣୁ ତା ମନରେ ବିମୁଖ ॥
ସଙ୍ଗରେ ଘେନି ନିଜନାରୀ । ସ୍ୱର୍ଗୁ ଅଇଲା ଶୀଘ୍ରକରି ॥

---

ବେଦପତି — ବ୍ରହ୍ମା
ଶିଖରେ — ଅଗ୍ରଭାଗରେ
ନନ୍ଦନ — ପୁଅ
ସ୍ଥମୁରେ ··· ନିକଟରେ
ମାଡ଼ିଆ — କୁଟୀର, କୁଡ଼ିଆ

ବସିଛୁ ରତ୍ନମୟ ରଥେ । ଯାନ ଚଳଇ ଶୂନ୍ୟପଥେ ॥
ମୁନିଙ୍କ ଆଶ୍ରମରେ ମିଳିଲି । ଦୂରୁଁ ନମସ୍କାର କଲି ॥
କଲ୍ୟାଣ କଲେ ବ୍ରହ୍ମବେତ୍ତା । ପୁଚ୍ଛିଲେ ସକଳ ବାରତା ॥
କିଅର୍ଥେ ଅଇଲୁ ଏଥକୁ । ସଙ୍ଗତେ ଆଣିଛୁ ପ୍ରିୟାକୁ ॥
ଶୁଣି ବୋଲଇ ବିଦ୍ୟାଧର । ହେ ମୁନି ମୋତେ ଦିଅ ବର ॥
କଥାଏ ପଚାରିବି ମୁହିଁ । ବିସ୍ତାରି କହିବା ଗୋସାଇଁ ॥
ପୂର୍ବେ ମୁଁ କଲି ଯେଉଁ ପାପ । ଏମନ୍ତ ହୋଇଲି ସ୍ୱରୂପ ॥
ଦେଖ ମୋ ଦଶା କପାଳର । ଶାର୍ଦ୍ଦୂଳ ମୁଖ ମୋ ଶରୀର ॥
ଏତ ସଂସାରେ ଲଜ୍ଜା କଥା । ସେ ଘେନି ମନେ ଗୁରୁଚିନ୍ତା ॥
ଦେବଙ୍କ ସଭାକୁ ନ ଆସି । ନିଜ ଭୁବନେ ଥାଏ ବସି ॥
ସବୁରି ସୁନ୍ଦର ବଦନ । ମୋହର ଶାର୍ଦ୍ଦୂଳ ଆନନ ॥
ଏଣୁ ସଂକୋଚ ଭାବପାଇ । ଚଉର୍ଯ୍ୟ ପ୍ରାୟେ ହୋଇଥାଇ ॥
ଏଯେ ମୋହର ନିଜ ପ୍ରିୟା । ରୂପେଣ ପଟାନ୍ତର ଏହା ॥
ସ୍ୱର୍ଗରେ ଯେତେ ଅପସରୀ । ଏହାକୁ ନୋହେ କେହି ସରି ॥
ଏହାର ଚନ୍ଦ୍ରମା ବଦନ । ଲଜେ ନ ଦିଅଇ ଚୁମ୍ବନ ॥
ଅଧର ସୁଧାରସ ପାନ । ନପାଇ ବିରସ ମୋ ମନ ॥
ହୃଦରେ ଭାବୁଥାଇ ନିତ୍ୟେ । ବିଧାତା ଏହା କଲି ମୋତେ ॥
ଉତ୍ତମ ଦିବ୍ୟ ଦେହ ଦେଲି । କି ଦୋଷେ ବ୍ୟାଘ୍ର ମୁଖ କଲି ॥
ଏଣୁ ଏ କଥା ଜାଣିବାକୁ । ଅଇଲି ତୁମ୍ଭର ଆଶ୍ରମକୁ ॥
ବିଧାତାର ବଚନେ ଋଷି । ବୋଇଲେ କ୍ଷଣେ ଥାଅ ବସି ॥
ଏମନ୍ତ କହି ମୁନିବର । ଧ୍ୟାନେ ବସିଲେ ତପଃଶୀଳ ॥
ବିଦ୍ୟାଧରର ପୂର୍ବ ଦୋଷ । ଯୋଗେଣ ହୋଇଲାକ ଦୃଶ୍ୟ ॥
ମୁନି ବୋଇଲେ ଆହେ ଶୁଣ । ତୁ ଯାହା ପଚାରିଲୁ ପୁଣ ॥
ତାହା ଜାଣିଲୁ ଆମ୍ଭେ ଯୋଗେ । ସେ କଥା କହିବା ତୋ ଆଗେ ॥
ପୂର୍ବେ ଯେ ନରଦେହ ବହି । ମଞ୍ଚରେ ଥିଲୁ ଜାତହୋଇ ॥
ମାଘ ସ୍ନାହାନ କରୁଥିଲୁ । ବହୁତ ଧନ ଆଚରିଲୁ ॥
ମକର ଶୁକଳ ପକ୍ଷରେ । ଦଶମୀ ହେଲା ଗୁରୁବାରେ ॥
ଏକାଦଶୀ ବ୍ରତକୁ ଭଲୁ । ନିର୍ଜନେ ଉପବାସେ ଥିଲୁ ॥

---

ଶାର୍ଦ୍ଦୂଳ — ବାଘ    ଭୁବନେ  ଘରେ
ବଦନ ... ମୁଖ    ଚଳଇ  ଚଳେ

ଶ୍ରୀ ଏକାଦଶୀ ଯହୁଁ ଗଲା । ଦ୍ୱାଦଶୀ ଆରମ୍ଭନ ହେଲା ॥
ପ୍ରଭାତୁ ଉଠି ତତକ୍ଷଣ । ତଇଲ ସୁଖେ ଲଗାଇଣ ॥
ସ୍ନାହାନ କରି ନଦୀଜଳେ । ବୁଡ଼ିଲୁ ଯାଇ ପୁଣ୍ୟଜଳେ ॥
ସମୟେ ମର୍ତ୍ତ୍ୟପୁରେ ଥାଇ । କାଳେ ନିଧନ ହେଲୁ ଭୁଇ ॥
ଧରିଣ ନେଲେ ଯମଦୂତେ । ନେଇଣ ରାଜାର ଅଗ୍ରତେ ॥
ଯମ ଧର୍ମଙ୍କ ବିଗ୍ରହଣେ । ମନ୍ତ୍ରୀଙ୍କ ପାଞ୍ଜି ପରମାଣେ ॥
ଶୁଣି ବୋଇଲେ ସୂର୍ଯ୍ୟଶିଷ୍ୟ । ଏହୁଯେ କଷ୍ଟାର୍ଯୀ ମନୁଷ୍ୟ ॥
ଏହାକୁ କର୍ମା ଅନୁଧରି । ମାଘ ସ୍ନାହାନ ଅଛୁ କରି ॥
ଏବେହୋ ଛାଡ଼ିଦିଅ ଯାଉ । ସ୍ୱର୍ଗେ ଗନ୍ଧର୍ବ ହୋଇଥାଉ ॥
କେବଳ ଅଛୁ ନୈଳ ଦୋଷ । ସେପାପ ଭୁଞ୍ଜିବ ଅବଶ୍ୟ ॥
ମାଘ ସ୍ନାହାନ କଲାକାଳେ । ଅଜ୍ଞାନ ପଣ କଲାହେଳେ ॥
ଦିନଟି ପ୍ରଭାତୁ ଉଠିଲା । ତଇଲ ସୁଖେ ଲଗାଇଲା ॥
ଏତେ ମାସକ ଦୋଷଅଛୁ । ଆଉ ଅଧର୍ମ ନାହିଁ କିଛୁ ॥
ତହିଁକ ଶାସ୍ତି ଏବେପାଉ । ଏହାର ବ୍ୟାଘ୍ରମୁଖ ହେଉ ॥
ଦେବତା ଅଙ୍ଗେ ବ୍ୟାଘ୍ରମୁଖ । ଏମନ୍ତ ଭାବେ ସ୍ୱର୍ଗେ ରଖ ॥
ଯମ ଆଜ୍ଞାରେ ସେହିଗଲେ । ଅମର ପୁରେ ଜାତକଲେ ॥
ଶାର୍ଦ୍ଦୂଳ ମୁଖ ବିବ୍ୟକାୟେ । ଦେଖି ଚକିତ ଦେବରାୟେ ॥
ଫଳିଲା ଗତଜନ୍ମ ପାପ । ତେଣୁଟି ହୋଇଲୁ ବିରୂପ ॥
ଶୁଣହୋ ପଚ୍ଛିଲୁ ଯାହା । ବିଗୃହି କହିଲି ମୁଁ ତାହା ॥
ଶୁଣି ବୋଇଲା ବିଦ୍ୟାଧର । ହେମୁନି କର ପ୍ରତିକାର ॥

ଗନ୍ଧର୍ବ ଉବାଚ

ଭୁଞ୍ଜିଲି ଗତଜନ୍ମ ପାପ । କେମନ୍ତେ ହୋଇବ ମୁକତ ॥
ମୁନି ବୋଇଲେ ରହରଥ । ଏଯେ ଅଟଇ ରେବା ତୀର୍ଥ ॥
ମାସକ ମାଘ ସ୍ନାନକର । ଏଦୋଷ ଉପେକ୍ଷିବ ତୋର ।
ଶୁଣି ଗନ୍ଧର୍ବ ମନତୋଷେ । ରହିଲା ମୁନିଙ୍କର ପାଶେ ॥
ମକର ମାସକ ରହିଲା । ରେବା ତୀର୍ଥରେ ସ୍ନାନକଲା ॥

---

ସୁଧାରସ — ଅମୃତରସ ବିଦ୍ୟାଧର — ଗନ୍ଧର୍ବ
କାୟେ ... ଦେହରେ ଶାସ୍ତି ... ଦଣ୍ଡ
ଅମରପୁରେ ... ସ୍ୱର୍ଗପୁରେ

ଗତ ଦୋଷରୁ ହେଲାପାର । ଗଲା ବ୍ୟାଘ୍ରମୁଖ ତାହାର ॥
ବଦନ ହୋଇଲା ସୁନ୍ଦର । ଯେସନେ ମଦନ କୁମର ॥
କସେ ଲକ୍ଷଣ ଦଶେ ଶଶୀ । ତେସନ ପ୍ରାପ୍ତେ ମୁଖଦଶି ॥
ସେପତ ପତ୍ନୀ ବେନଜନ । ଦେଖି ସାନନ୍ଦ କଲେ ମନ ॥
ଭୃଗୁ ଋଷିଙ୍କ ପାଦତଳେ । ପ୍ରଣାମ ଶତେବାର କଲେ ॥
ତବ ପ୍ରସାଦେ ଗଲାଦୁଃଖ । ଏବେ ହୋଇଲା ଦବ୍ୟମୁଖ ।
ମୁନି ବୋଇଲେ ଏବେଯାଅ । ନିର୍ଶ୍ଚିନ୍ତ ହୋଇ ସ୍ୱର୍ଗେରହ ॥
ଶୁଣି ଗନ୍ଧର୍ବ ତୋଷମନେ । ତକ୍ଷଣେ ବସିଲା ବିମାନେ ॥
ସ୍ୱର୍ଗକୁ ଗଲା ବଦ୍ୟାଧର । ଦେଖି ସାନନ୍ଦ ସର୍ବସୁର ॥
ତାହାକୁ ବୋଲନ୍ତି ବଚନ । ଏବେଶୁ ସୁନ୍ଦର ବଦନ ॥
ଗନ୍ଧର୍ବ ନମସ୍କାର କଲା । ଏସର୍ବ ବୃତ୍ତାନ୍ତ କହିଲା ॥
ଶୁଣି ସାନନ୍ଦ ସର୍ବଦେବ । ତାହାକୁ କଲେ ଗଉରବ ॥
ବ୍ରହ୍ମା ଈଶ୍ୱର ଦେବଚନ୍ଦ୍ର । ଅଗ୍ନି ପବନ ସୁରଇନ୍ଦ୍ର ॥
ବରୁଣ କୁବେର ସହିତେ । ସେବ୍ରତ କଲେଟି ସମସ୍ତେ ॥
ଏଣୁ ତାହାଙ୍କ ବଡ଼ପଣ । ମାଘ ସ୍ନାହାନେ ଏତେ ପୁଣ୍ୟ ॥
ଏମାଘ ମହାତମ ଶୁଣି । ଭବସାଗରୁ ତରେ ପ୍ରାଣୀ ॥
ନୃସିଂହ ଦାସର ତନୟେ । ପୁରାଣ ଗୀତ କରି କହେ ॥
ସୁଜନେ ନଦେଖିବା ଦୋଷ । ଭାବେ ଭଣଇ କୃଷ୍ଣ ଦାସ ॥
ଉଦ୍ଧବ କହିଲେ ମାଧବ । ଏଅଧ୍ୟା ଗୋଁସାଇଁ ପଦ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ଭୃଗୁଋଷି କଥନ ଗନ୍ଧର୍ବ ବ୍ୟାଘ୍ରମୁଖ ନିସ୍ତାରଣେ ନାମ ଷୋଡ଼ଶୋଽଧ୍ୟାୟ

— X —

| | | | | |
|---|---|---|---|---|
| ବଦନ | ଶୀଘ୍ର | ମଦନ | ... | କନ୍ଦର୍ପ |
| ତବ | ଭ୍ରମର | ପ୍ରସାଦେ | ... | ଅନୁଗ୍ରହରେ |
| ଭବ | ... ସଂସାର | ତନୟ | | ପୁଅ |
| ବେନ | ... ଦୁଇ | ଶତେବାର | ... | ଶହେଥର |

# ସପ୍ତଦଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

ବୋଲନ୍ତି ପ୍ରଭୁ ଜଗଦୀଶ । ଉଦ୍ଧବ ଶୁଣ ଦିବ୍ୟରସ ॥
ତୁମ୍ଭେ ଯେ କର ଏହିବ୍ରତ । ଖଣ୍ଡିବ ସକଳ ଦୁରିତ ॥
ମାଘ ସ୍ନାହାନ ଫଳଯେତେ । ବଚନେ କହିବା ତା କେତେ ॥
ଆଉ କଥାଏ ଏବେ ଶୁଣ । ଏକ ରଜାଏ ଥିଲପୁଣ ॥
କାର୍ତ୍ତିକ ବ୍ରତ ତାର ନାମ । ରୂପେଣ ପଞ୍ଚାନ୍ତର କାମ ॥
ଦୟାରେ ସମ କଳ୍ପତରୁ । ଧଇର୍ଯ୍ୟପଣେ ସମମେରୁ ॥
ବେଗେଣ ଅଟଇ ପବନ । ତେଜେଣ ଆଦିତ୍ୟ ସମାନ ॥
ରଜାମାନଙ୍କୁ ଜିଣି ହେଲେ । ଖଟାଇ ନିଜ ପାଦତଳେ ॥
ଅନ୍ୟାୟ ଉପଦ୍ରବ ନାହିଁ । ଧର୍ମେ ପାଳଇ ରଜାମହୀ ॥
ଧାର୍ମିକ ସତ୍ୟବ୍ରତ ରାୟେ । ମାଘସ୍ନାହାନେ ଇଚ୍ଛାହୋଏ ॥
ଦିନେକ ନୃପତି ଶେଖର । ନବରୁ ହୋଇଲେ ବାହାର ॥
ହସ୍ତି କନ୍ଧରେ କଲେ ବିଜେ । ଅନେକ ବୀରତୂର ବାଜେ ॥
ସଙ୍ଗରେ ପାତ୍ରମନ୍ତ୍ରୀ ଘେନ । ଆବର ଯେତେକ ସଇନ ॥
ସମ୍ଭ୍ରମେ ଗଲେ ତହିଁ ଚଳି । ସତ୍ୟ ପର୍ବତେ ଯାଇଁମିଳି ॥
ସେଗିରି ଉପରେଣ ବସି । ଅଛନ୍ତି ଦତ୍ତାତ୍ରେୟ ଋଷି ॥
ମଢ଼ିଆ ଗୋଟିଏ କରିଣ । ସର୍ବଦା ଥାନ୍ତି ତହିଁ ପୁଣ ॥
କୃଷ୍ଣର ଅଭୟ ଚରଣ । ଚିନ୍ତନ୍ତି ବସି ଅନୁକ୍ଷଣ ॥
ଯୋଗ ସାଧନ୍ତି ତପଃଶୀଳ । ଜ୍ଞାନ ଖଡ଼ଗେ ଛେଦିକାଳ ॥
କରନ୍ତି କନ୍ଦମୂଳ ଗ୍ରାସ । ପୟଃ ପାନରେ ଆତ୍ମାତୋଷ ॥
ଦିନେ ପ୍ରଭାତୁ ଉଠିକରି । ତକ୍ଷଣେ ନିତ୍ୟକର୍ମ ସାରି ॥
ସନ୍ଧ୍ୟା ତର୍ପଣ ସାରିଯତି । କୁରଙ୍ଗ ଚ୍ଛଲେ ବସିଛନ୍ତି ॥
ବିଷ୍ଣୁଙ୍କୁ କରିଛନ୍ତି ଧ୍ୟାନ । ଏମନ୍ତେ ମିଳିଲ ରଜନ ॥

---

| | | | |
|---|---|---|---|
| କଳ୍ପତରୁ — ବାଞ୍ଛାବଟ | | ଶେଖର — ଶ୍ରେଷ୍ଠ | |
| ଜଗଦୀଶ — ଭଗବାନ | | ଯତି — ସନ୍ନ୍ୟାସୀ | |
| କୁରଙ୍ଗ — ମୃଗ | | ପୟଃ — ପାଣି | |

| | | | |
|---|---|---|---|
| ଗଜ ପିଠିରୁ ଉତ୍ତୁରିଲ | । | ମୁନିଙ୍କ ପାଦେ ପୂଜାକଲ | ॥ |
| ବୋଲଇ ଯୋଡ଼ ବେନିକର | । | କୁଶଳ ଟିକି ମୁନିବର | ॥ |
| ମିଳଇଟିକି ଫଳ ଆଣି | । | ହସି ବୋଲନ୍ତି ମୁନିମଣି | ॥ |
| ହେ ରଜା ତୋର ପରସାଦେ | । | କୁଶଳେ ଅଛୁ ଅପ୍ରମାଦେ | ॥ |
| ତୁ ରଜା ଅଛୁଟିକି ଷେମେ | । | ମେଦିନୀ ପାଳୁ କି ଧରମେ | ॥ |
| ପରଜା ପୁତ୍ର ସମକରି | । | ପାଳୁଅଛୁ ନା ଦଣ୍ଡଧାରି | ॥ |
| ମନ୍ତ୍ରୀ ତୋ କେଡ଼େ ବୁଦ୍ଧିମନ୍ତ | । | ଜାଣେ କି ଆଗତ'ନିଗତ | ॥ |
| ଅନ୍ତଃପୁରର କଥାମାନ | । | ତୁ ବୁଝୁଟିକି ପ୍ରତିଦିନ | ॥ |
| କେତେଅଛନ୍ତି ଘୋଡ଼ାହାତୀ | । | ତାହାଙ୍କୁ ବୁଝୁଟିକି ନିତି | ॥ |
| ନୋହୁନା ଅତି ନିଦ୍ରା ଭୋଗୀ | । | ନିଶାରେ ଥାଉଟିକି ଜଗି | ॥ |
| କାମିନୀ ମାନଙ୍କ ସଙ୍ଗତେ | । | ଲମ୍ପଟ ନୋହୁ ନା ନିରତେ | ॥ |
| ଶୁଣି ବୋଇଲେ ମହୀପାଳ | । | ହେ ମୁନି ସମସ୍ତ କୁଶଳ | ॥ |
| ଯେତେ କହିଲ ତପୋଧନ | । | ଏସବୁ କରଇ ପାଳନ | ॥ |
| ଅନେକ କର୍ମ ଧର୍ମ କଲି | । | ମାଘ ସ୍ନାହାନ ନ ଯାଣିଲି | ॥ |
| ଯେ ମାଘ ବ୍ରତ କରିବାକୁ | । | ପଚାରି ଅଇଲି ଶ୍ରୀମୁଖକୁ | ॥ |
| ବୋଲନ୍ତି ତପୀ ମହାମତି | । | କହିବା ଶୁଣ ହେ ନୃପତି | ॥ |
| ମାଘ ସ୍ନାହାନ ଯେଉଁବ୍ରତ | । | ତହିଁରେ ଗୁଣ ଅପ୍ରମିତ | ॥ |
| ଏ ରବିତଳେ ଦେହଧରି | । | ମାଘ ସ୍ନାହାନ ଯେ ନ କରି | ॥ |
| ତାହାର ଜୀବନ ବୃଅର୍ଥ | । | ଧିକ ତାହାର ଗୁଣଅର୍ଥ | ॥ |
| ଧିକ ତାହାର ସବୁକର୍ମ | । | ଯେବେ ନକଲା ଏଡ଼େଧର୍ମ | ॥ |
| ଏ ମାଘବ୍ରତ ନ କରଇ | । | ଦେହ ବହଇ ଅକାରଣ | ॥ |
| ଆଦିତ୍ୟ ନଥିଲେ ଆକାଶେ | । | ସେ ଯେହ୍ନେ ନିର୍ମଳ ନଦିଶେ | ॥ |
| ଯେଉଁ ପ୍ରକାରେ ପ୍ରାଣୀମାନେ | । | ଅଶୋଭ ଏବ୍ରତ ବିହୀନେ | ॥ |
| ପୁତ୍ର ବିହୀନେ ଯେତେଅର୍ଥ | । | ସେ ଯେହ୍ନେ ହୁଅଇ ବୃଅର୍ଥ | ॥ |
| ବ୍ରତ ବିହୀନେ ତେହ୍ନେ ଦେହ | । | ଛାଡ଼ି ନପାରେ ମାୟାମୋହ | ॥ |
| ଅନ୍ତେ ଲଭଇ ଅଧୋଗତି | । | ସେକାହିଁ ପାଇବ ମୁକତି | ॥ |
| ପତ୍ନୀ ବିହୀନେ ପୁତ୍ରସଧ | । | କାଳେ ହୁଅଇ ଯେ ବିରୁଦ୍ଧ | ॥ |

---

| | | | | | |
|---|---|---|---|---|---|
| ଗଜ | — | ହାତୀ | ମେଦିନୀ | — | ପୃଥିବୀ |
| କାମିନୀ | — | ସ୍ତ୍ରୀ | ନିରତେ | — | ସବୁବେଳେ |
| ରବି | — | ସୂର୍ଯ୍ୟ | ବିହୀନେ | ··· | ବ୍ୟତୀତ |

ମାଘ ସ୍ନାହାନ ବ୍ରତକୁ । ଥିଲେହେଁ ବିଫଳ ତାହାକୁ ॥
ନାଶିଲେ ଯେସନ୍ତେ କୁଳଧର୍ମ । ସେପ୍ରାଣୀ ମୃତ ଶବ ସମ ॥
ମାଘ ସ୍ନାହାନ ଯେ ନକଲା । ସେ ପ୍ରାଣୀ ଜାଉଁ ଜାଉଁ ମଲା ॥
ଦୃଢ଼ ନଥାଇ ଯେ ଭଜନ । ତହିଁରେ ନାହିଁ ପ୍ରୟୋଜନ ॥
ଯେ ମାଘବ୍ରତ ନ କରିବ । ସେ ପ୍ରାଣୀ ଥିଲେ କିସହେବ ॥
ସତ୍ୟ ବଚନ ଯେତେ କଥା । ଯେ ମୁଖେ ଉଚାରନ୍ତି ମିଥ୍ୟା ॥
ସେ ଯେତେ ଅକାରଣ ହୋଏ । ବ୍ରତ ବିହୀନେ ତେସନ୍ତେ କାୟେ ॥
ଦେଖ ଏ ଅନିତ୍ୟ ସଂସାର । ଜୀବନ ଅଟଇ ଅଚିର ॥
ଏଦେହେ ଶୋଣିତ ମାଉଁସ । ଅସ୍ଥି ପୂରିଛି ଚଉପାଶ ॥
ନାଡ଼ି ଲୁଚିଏ ଅନ୍ତପିତ୍ତ । ମଧ୍ୟରେ ଅଛଇ ପୂରିତ ॥
ବଳହିଁ ପ୍ରାଣ ଲିଙ୍ଗଆଦି । ପୂରିଛି ଚଉଷଠି ବ୍ୟାଧି ॥
ଅନ୍ତ ଦୁର୍ଗନ୍ଧ ମଳମୂତ୍ର । ଲାଳ ଛେପରେ ସେ ପୂରିତ ॥
ଏମନ୍ତ ଭାବେ ଦେହକଲା । ଉପରେ ଚର୍ମ ଆଚ୍ଛାଦିଲା ॥
ଦେହ ଭିତରେ ପଞ୍ଚମନ । ବିଧାତା ଥୋଇଲା ନେଇଣ ॥
ପଚିଶ ପ୍ରକୃତି ଆବର । ମିଥ୍ୟା ବୈରାଗ୍ୟ ଅହଙ୍କାର ॥
ଲୋଭ କପଟ କାମକ୍ରୋଧ । ଆଣି ଥୋଇଲା ଦେହମଧ୍ୟ ॥
ଦେହ ମଧ୍ୟରେ ବସ୍ତୁ ଆପେ । ଖେଳୁ ଅଛଇ ଆତ୍ମାରୂପେ ॥
ପାପ ପୁଣ୍ୟକୁ ସାକ୍ଷିସେହି । ମୂଢ଼ତା ଜାଣି ନ ପାରଇ ॥
ବିଷୟ ଦ୍ୱନ୍ଦ ଆଚରଣ । ଭ୍ରମଇ କୁଟୁମ୍ବ ପୋଷିଣ ॥
ନିଶି ଦିବସେ କରେ ଖେଦ । ଯଦ୍ୟପି ଅର୍ଜ୍ଜଇ ସମ୍ପଦ ॥
ସମ୍ପଦେ ମତ୍ତଭ୍ରମ ହୋଇ । କେବଳ ସୁଖ ଭୋଗ ପାଇ ॥
ଉତ୍ତମ ମିଷ୍ଟ ଶାଳୀଅନ୍ନ । ଅବା ସୁସ୍ୱାଦୁ ଦ୍ରବ୍ୟମାନ ॥
ଭୁଞ୍ଜି ସନ୍ତୋଷ ଚିତ୍ତହୋଇ । ବସ୍ତୁ ଭଜନ୍ତ ନ ଜାଣଇ ॥
ବସ୍ତୁରେ ନୋହେ ଉପଗତ । କିଛି ନକରେ ବାରବ୍ରତ ॥
ସମୟେ ରବିତଳେ ଥାଇ । ପ୍ରକୃତି ହେତୁ ନାଶଯାଇ ॥
ଅନ୍ତେ ଲଭଇ ନର୍କଗତି । ନାନା ଯୋନିରେ ଭ୍ରମୁଥାନ୍ତି ॥

---

ପଞ୍ଚମନ — ଅମନ, ସୁମନ, କୁମନ, ମନ, ବିମନ

ପଚିଶ ପ୍ରକୃତି — ପ୍ରକୃତି ମହତ୍ତ୍ୱ ମନ, ଅହଙ୍କାର, ପଞ୍ଚତନ୍ମାତ୍ର,
ଏକାଦଶ ଇନ୍ଦ୍ରିୟ, ପଞ୍ଚଭୂତ

ଅହଙ୍କାର — ଗର୍ବ

ଖେଦ — ଦୁଃଖ

ପୁଣି ଜନ୍ମଇ ପୁଣ୍ୟକ୍ଷୟେ । କେବଳ ପଥଶ୍ରମ ହୋଏ ॥
ସେପ୍ରାଣୀ ମନୁଷ୍ୟରେ ହୀନ । ଧାନରେ ଅଗାଡ଼ ଯେସନ ॥
ଯେଅବା କରେ ବାରବ୍ରତ । ମାଗି ଆଣଇ ପରଅର୍ଥ ॥
ସେ ଯେସ୍ନେ ନିଷ୍ଫଳକୁ ଯାଇ । ବିଅର୍ଥେ ମରେ ଶ୍ରମ ପାଇ ॥
ନକଲେ ମକର ସ୍ନାହାନ । ଜାଣିବେ ଦେହ ଅକାରଣ ॥
ଯେଅବା ଯେ ବିଦ୍ୟା ସାଧଇ । ନିତ୍ୟ ଅଭ୍ୟାସ ନ କରଇ ॥
ସେଯେସ୍ନେ ହୋଏ ଅକାରଣ । ଅଯୋଗ୍ୟ ବୋଲି ତାକୁ ଜାଣ ॥
ଏଦେହ ତେମନ୍ତ ପ୍ରକାରେ । ମାଘସ୍ନାହାନ ଯେ ନକରେ ॥
କୃପଣ ହସ୍ତେ ଥିଲେ ଧନ । ସେ ଯେସ୍ନେ ହୋଏ ଅକାରଣ ॥
ନଦେଇ ନଖାଇ ସଞ୍ଚୁଛି । ମଧୁ ସଞ୍ଚଇ ଯେସ୍ନେମାଛି ॥
ତାମୁଖେ ଦେଇ ହୁତାଶନ । ମଧୁ ଭକ୍ଷଇ ନେଇଆନ ॥
ଯେସ୍ନେ ସେ ହୁଅଇ ବିଅର୍ଥ । ତେମନ୍ତ କୃପଣର ଅର୍ଥ ॥
ମାଘ ସ୍ନାହାନ ଯେ ନକରେ । ସେ ହୋଏ ସେହି ପ୍ରକାରେ ॥
ଅଗ୍ନି ବିହୁନେ ଭସ୍ମଥିବ । ତହିଁରେ ଘୃତ ଯେବାଦେବ ॥
ସେ ଯେସ୍ନେ ବିଫଳ ହୁଅଇ । ବ୍ରତ ବିହୀନେ ତେସ୍ନେ ଦେହୀ ॥
ଏଜୀବ ଜଳବିମ୍ବ ଜାଣି । କ୍ଷଣେ ମାତ୍ରକେ ଯାଇପୁଣି ॥
ଏହା ନଜାଣି ମୂଢ଼ଜନ । ଦୁର୍ବୁଦ୍ଧି ବିସ୍ତରନ୍ତି ମନ ॥
ସେ କାହିଁ ହୋଇବ ନିସ୍ତାର । ଇହ ଲୋକରେ ତା ବିସ୍ତାର ॥
ଯେ ପ୍ରାଣୀ ମାଘ ସ୍ନାନ କରେ । ଛୁଟଇ ବ୍ରହ୍ମହତ୍ୟା ଥିଲେ ॥
ଗୋହତ୍ୟା କରିଥିଲେ ଜନ । ଯେଯେବେ କରେ ମାଘସ୍ନାନ ॥
ତକ୍ଷଣେ ଖଣ୍ଡଇ ତା ଦୋଷ । ବୈକୁଣ୍ଠେ ବସେ ସେ ଅବଶ୍ୟ ॥
ଯେଅବା ସ୍ତ୍ରିୟ ହତ୍ୟା କରେ । ସେ ମହା ପାତକୀ ସଂସାରେ ॥
ଯେତେହେଁ ଦାନଧର୍ମ କଲେ । ଏଦୋଷ ନଖଣ୍ଡଇ ଭଲେ ॥
ତହିଁକି ଅଛି ପରିହାର । ତାହା କହିବା ଏବେ ଶୁଣ ॥
ସେ ଯେବେ ମାଘସ୍ନାନ କରେ । ସେ ମହାପାପରୁ ନିସ୍ତରେ ॥
ଯେଅବା ସୁବର୍ଣ୍ଣ ହରଇ । ପାପକୁ ଭସ୍ମ ନ କରଇ ॥
ମହାପାତକୀ ସେହୁ ଲୋକ । ଅନ୍ତେ ପଡ଼ଇ କୁମ୍ଭୀପାକ ॥
ସେ ଯେବେ ମକର ମାସରେ । ପ୍ରଭାତେ ନିତ୍ୟେ ସ୍ନାନ କରେ ॥

---

କୃପଣ — ମଚ୍ଛିଆ, ଗାଣ୍ଡି, ଗଣ୍ଡିଆ
ହୁତାଶନ — ନିଆଁ    କୁମ୍ଭୀପାକ — ଏକ ନର୍କର ନାମ

ତେବେ ଖଣ୍ଡଇ ସେହୁ ଦୋଷ । ଅନ୍ତେ ଲଭଇ ସ୍ୱର୍ଗବାସ ॥
ଯେବଣ ପ୍ରାଣୀ କାମଭରେ । ଗୁରୁ ପତ୍ନୀକ ରତିକରେ ॥
ସେ ଲୋକ ମହାପାପୀ ହୋଇ । ଅନ୍ତେ ପଡ଼ଇ ନର୍କେଯାଇ ॥
କଥାଏ ଅଛି ପ୍ରତିକାର । ମାଘ ସ୍ନାହାନ କଲେପାର ॥
ଯେ ଅବା ଭଲଲୋକ ହୋଇ । ମଦିର ପାନ ଯେ କରଇ ॥
ସେ ପ୍ରାଣୀମାନେ ବଡ଼ ଦୋଷୀ । ତାହାଙ୍କ ସଙ୍ଗେ ଯେ ନବସି ॥
ଜାଅନ୍ତେ ନଚାହିଁ ତା ମୁଖ । ଅନ୍ତେଣ ନାହିଁ ତାର ମୁଖ ॥
ସେ ଯେବେ ଏହା ଆଚରିବେ । ମକର ସ୍ନାହାନ କରିବେ ॥
ଆହୁରି ଯେତେ ଧର୍ମ ହୋଇ । ବିଶେଷ କେ ପାରିବ କହି ॥
ଶୁଣ କାର୍ତ୍ତିକବ୍ରତ ରାଜା । ଏବେଠୁ ସେ ବ୍ରତ କରଯା ॥
ମୁନିଙ୍କ ମୁଖୁ ଏହା ଶୁଣି । ସନ୍ତୋଷ ହେଲ ନୃପମଣି ॥
ଋଷିଙ୍କୁ କଲ ନମସ୍କାର । ବାହୁଡ଼ି ଗଲ ଦଣ୍ଡଧର ॥
ନିଜ ଭୁବନେ ପରବେଶ । ଭଣେ ନୃସିଂହ ଦାସ ଶିଷ୍ୟ ॥
ପାମର କୃଷ୍ଣ ଦାସ କହେ । ଶଏ,ଉନବିଂଶେ ଶେଷଏ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
କାର୍ତ୍ତିକବ୍ରତ ରାଜା ମାଘସ୍ନାନ ଧର୍ମ ଶ୍ରବଣେ ନାମ ସପ୍ତଦଶୋଽଧ୍ୟାୟ

—x—

ମଦିର ••• ମଦ

# ଅଷ୍ଟାଦଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଉଦ୍ଧବ ଧର୍ମବାଣୀ ॥
ମକର ସ୍ନାହାନ ମହିଁମା । ଯାହାକୁ ସର୍ଜିଥିଲା ବ୍ରହ୍ମା ॥
ନାରଦ ମୁନି ଏହା ଶୁଣି । ସେ କଥା ସଂସାରେ ବଖାଣି ॥
ତେଣୁ ଜାଣିଲେ ସର୍ବଜନ । କରନ୍ତି ମକର ସ୍ନାହାନ ॥
ଯେଅବା କରେ ସେହୁବ୍ରତ । ସେପ୍ରାଣୀ ଅଟଇ ପବିତ୍ର ॥
ଆଉ କଥାଏ ଶୁଣ ବାବୁ । ଯେଣୁଁକି ପ୍ରଶସ୍ତ କରିବୁ ॥
ତାହା କହିବା ତୋର ଆଗେ । ବିପ୍ରେକ ଥିଲା ସତ୍ୟଯୁଗେ ॥
ତାହାର ନାମ ଶଶୀକର । ଅତି ଧାର୍ମିକ ଦ୍ୱିଜବର ॥
ଭାରିଯା ନାମ କାନ୍ତିଆଭା । ରୂପେ ଚଞ୍ଚଳା ପରି ଶୋଭା ॥
ସେପତି ପତ୍ନୀ ସୁଖେ ଥାନ୍ତି । ତାବତ କର୍ମ ଆଚରନ୍ତି ॥
ବିଷ୍ଣୁରେ ବଢ଼ାଇ ଭକତି । କାଳେ ପ୍ରାପତ ଏକସୁତା ॥
ରଷକା ବୋଲି ତାର ନାମ । ରୂପେ ପାର୍ବତୀ ସରିସମ ॥
ସେ କନ୍ୟା ନିତ୍ୟେ ବଢ଼ଇ । ସପ୍ତ ବରଷ ଗଲାବହି ॥
ତାତ ଜନନୀ ବିଚକ୍ଷଣ । ବରିଲେ ଉତ୍ତମ ବ୍ରାହ୍ମଣ ॥
ବୋଲନ୍ତି ଆମ୍ଭର ଏ ଝିଅ । ଏହାକୁ ଉପଦେଶ ଦିଅ ॥
ଶୁଣି ବ୍ରାହ୍ମଣ ମନତୋଷ । କନ୍ୟାକୁ ଦେଲା ଉପଦେଶ ॥
ତାହାର ରୂପ ଗୁଣ ଦେଖି । ତାତ ଜନନୀ ମହାସୁଖୀ ॥
ଉତ୍ତମ ବିପ୍ର ବରିଆଣି । ବିଭା କଲେକ ସେ ତରୁଣୀ ॥
ଏମନ୍ତେ କେତେ ଦିନ ଗଲା । ସେ କନ୍ୟା ବିଧବା ହୋଇଲା ॥
ଦେଖିଣ କୁମାରୀ ଅବସ୍ଥା । ବସି ଭାବନ୍ତି ପିତାମାତା ॥
ତାହାର ରୂପ ଅନୁକରି । କପାଳେ ବେନିକର ମାରି ॥
ଅତ୍ୟନ୍ତ ସୁନ୍ଦର ଦୁହିତା । ଏକଷ୍ଟ ଦେଲୁ ହେ ବିଧାତା ॥
ଏମନ୍ତ ବୋଲି ଚନ୍ଦ୍ରାକରି । ତାତଜନନୀ ଭାଳି ମରି ॥
ଦୁଃଖ ଅପାର ଦିନୁଦିନୁ । କ୍ଷୀଣ ହୁଅଇ ତାଙ୍କ ତନୁ ॥

---

ତାତ — ପିତା    ଦ୍ୱିଜବର — ବ୍ରାହ୍ମଣ

ଦେଖହୋ ବିଧାତାର ଯୋଗ । ଶରୀରେ ଆକର୍ଷିଲା ରୋଗ ॥
ତୁଟିଲା ବଳଯେ ଆୟୁଷ । ସେ ବୈଦ୍ୟ ଜନେ ଗଲେନାଶ ॥
ପିତୃର ଜନମ ନିଧନ । ସେ କନ୍ୟା ବିଚଳିତ ମନ ॥
ରଷକା ହୋଇଲାକ ଏକା । ସଙ୍ଗତେ କେହି ନାହିଁ ସଖା ॥
ନଣୀ ଦିବସେ ଭାଳୁଥାଇ । କୁବୁଦ୍ଧି କରିବଇଁ ମୁହିଁ ॥
ବିଧାତା ମୋତେ ବାମ ହେଲା । ମାନବ ଜନ୍ମ କିମ୍ପା ଦେଲା ॥
ସ୍ୱଭାବେ ସ୍ତ୍ରୀ ଜନ୍ମ ଲଭି । ସ୍ୱାମୀ ଚରଣ ନାହିଁ ସେବି ॥
କିପାଇଁ ହୋଇଲି ବିଧବା । ଏବେ ବୟସ ନବଯୁବା ॥
କେମନ୍ତେ ଧରିବଇଁ ଦେହ । ନୂବେ ଭାଙ୍ଗିଲା କାହାଗୃହ ॥
ସେଦୋଷ ହୋଇଲାକ ଆସି । ଏବେ ଭୁଞ୍ଜିବି ଦୁଃଖରାଶି ॥
ପତିଯେ ସ୍ତ୍ରୀଙ୍କୁ ସୁଲଭ । ସର୍ଜନା କରିଛି ଦଇବ ॥
ଗୃହସ୍ଥ ବିହୀନେ ସୁବସ୍ତ୍ର । ସେ ହାଦେ ନିର୍ମାଣ ଅଟନ୍ତି ।
ମୁଁ ଏବେ ହୋଇଲି ନିରେଖ । ଏଜନ୍ମ ହୋଇଲା ବିଅର୍ଥ ॥
ମୋହର କର୍ମ ବଡ଼ହୀନ । କେମନ୍ତେ ବଞ୍ଚିବଇଁ ଦିନ ॥
ବିଧବା ଅବସ୍ଥା ମୋକାପେ । ମୋହର ମଲେ ବାପମାଏ ॥
ଏସନ ଭାଳୁଁଭାଳୁଁ ବସି । ବୁଦ୍ଧିଏ ସ୍ଫୁରିଲାକ ଆସି ॥
ହୃଦରେ କଲାକ ବିଚାର । ଏହାଯେ ଅନିତ୍ୟ ସଂସାର ॥
ପୁରୁଷ କୁମାର କୁମାରୀ । ତାତ୍‌ଜନନୀ ଆଦିକରି ॥
ବନ୍ଧୁ ବାନ୍ଧବ ଇଷ୍ଟଜନ । ସେସବୁ ବିଦ୍ୟୁତ ସମାନ ॥
ଓକେହି କାହାରି କହୁଁନୋହେ । ବନ୍ଧ ହୋଇଛି ମାୟାମୋହେ ॥
ମିଥ୍ୟାକୁ ସତ୍ୟପ୍ରାୟେ ମଣି । ଭୁଲଣ ମରୁଛନ୍ତି ପ୍ରାଣୀ ॥
ଏହା ବିଚାରି ମୁନିଜନେ । ତେଜନ୍ତି ପୁତ୍ର ଦାରାଧନେ ॥
ଭ୍ରମନ୍ତି ଏକାନ୍ତେ ସଂସାରେ । ଶରଣ ପଶନ୍ତି କୃଷ୍ଣରେ ॥
ହେଲେ ତରନ୍ତି ଭବବାସ । ମୁକତି ଲଭନ୍ତି ଅବଶ୍ୟ ॥
ମୁଁ ଏବେ ଏମନ୍ତ କରିବି । କୃଷ୍ଣ ଚରଣେ ଚିତ୍ତଦେବି ॥
ଏମନ୍ତ ବିଚାରି ସୁନ୍ଦରୀ । ଶ୍ରୀଗୁରୁ ଆଜ୍ଞା ଶିରେ ଧରି ॥

---

ସର୍ଜନା ... ସୃଷ୍ଟି
ବିଦ୍ୟୁତ୍ ବିଜୁଳି
ଦାରା ... ସ୍ତ୍ରୀ
ସ୍ଫୁରିଲା ଜାଗ୍ରତ ହେଲା
ମଣି ... ମନେକରି
ନିରେଖ ... ଅରକ୍ଷ
ଭବବାସ ... ସଂସାର ଭୟ

ସ୍ଫଟିକ ମାଳା କରେ ଘେନି । କୃଷ୍ଣଙ୍କୁ ଭଜଇ କାମିନୀ ॥
କଲା ସକଳ ବାରବ୍ରତ । ଭଜିଲା ଦୃଢ଼କରି ଚିତ୍ତ ॥
ଯାହିଁ ତା ହୃଦେ ହେଲା ଜ୍ଞାନ । ତେଜିଲା କାମକ୍ରୋଧମାନ ॥
ହିଂସା କପଟ ଲୋଭ ରୋଗ । ଏସବୁ କଲା ପରିତ୍ୟାଗ ॥
ସତ୍ୟ ବଚନ ପ୍ରକାଶଇ । ମୁଖରେ ମିଥ୍ୟା ନ ଭାଷଇ ॥
ଅତିଥି ଦେଖିଲେ ନୟନେ । ପୂଜଇ ଦେବତା ସମ୍ମାନେ ॥
କରଇ ଷଷ୍ଠକାଳ ବ୍ରତ । ଭୋଜନେ ନଥାଇ ତା ଚିତ୍ତ ॥
ବେନି ଦିବସ ଉପବାସେ । ରହଇ ମୁକ୍ତି ଲୋଭଆଶେ ॥
ଶନି ଦିବସେ ଅନ୍ନ ବେଳେ । ଭୁଞ୍ଜଇ ରବି ଅସ୍ତକାଳେ ॥
ଅଳପ ଆହାରେ ସନ୍ତୋଷ । ବହୁତ ନ କରଇ ଗ୍ରାସ ॥
ହୃଦରେ ନୁହଇ ବିମୁଖ । ସହିଲା ଅପ୍ରମେୟ ଦୁଃଖ ॥
ନିଶି ଦିବସେ ଅନୁକ୍ଷଣେ । ଭଜଇ ଗୋବିନ୍ଦ ଚରଣେ ॥
ଏମନ୍ତେ କେତେକାଳ ଗଲା । ସେ କନ୍ୟା ବନବାସ କଲା ॥
ସଦନେ ଥିଲା ଯେତେ ଦ୍ରବ୍ୟ । ବାହ୍ମଣେ ଦାନ ଦେଲା ସର୍ବ ॥
ମିଳିଲା ରେବା ତୀର୍ଥେ ଯାଇ । ଆଶ୍ରମ କରି ତହିଁ ରହି ॥
ଭୁଞ୍ଜଇ ଫଳ ମୂଳମାନ । ସେ ଦିନୁ ଉପେକ୍ଷିଲା ଅନ୍ନ ॥
ଆବର ତେଜିଲା ଦୁକୂଳ । ପିନ୍ଧିଲା ବୃକ୍ଷର ବକଳ ॥
ମକର ମାସେ ପ୍ରତିଦିନ । ରେବାରେ କରଇ ସେ ସ୍ନାନ ॥
ସ୍ନାନର ବିଧିମତ ଯେତେ । ଆଚରି ଥାଇ ଶୁଦ୍ଧଚିତ୍ତେ ॥
ସେ ରେବା ତୀର୍ଥ ସନ୍ନିଧିରେ । ଅଛନ୍ତି ଭୃଗୁ ମୁନିବରେ ॥
ତାହାଙ୍କ ଆଶ୍ରମକୁ ଯାଇ । ମୁନିଙ୍କୁ ସେବା କରିଥାଇ ॥
ତାର ଭକତି ଭାବଦେଖି । ଋଷି ମନରେ ମହାସୁଖୀ ॥
କନ୍ୟାକୁ ପ୍ରସନ୍ନ ହୋଇଲେ । ଯାବତଜ୍ଞାନ ବୁଝାଇଲେ ॥
ସେହି ପ୍ରକାରେ ପ୍ରତିଦିନ । ରଷକା କରଇ ସେ ସ୍ନାନ ॥
ମୁନିଙ୍କ ସନ୍ନିଧିକୁ ଆସି । ସେବା କରଇ ଅହର୍ନିଶି ॥
ଶୁଣଇ ମାଘ ମହାତମ । ତେଣୁ ଜାଣଇ ସବୁଧର୍ମ ॥
ଖଣ୍ଡିଲା କୋଟିଜନ୍ମ ପାପ । ଶୁଦ୍ଧ ହୋଇଲା ତାର ତପ ॥
ଷାଠିଏ ମାଘସ୍ନାନ କଲା । ଚତୁର୍ଥ କାଳ ଆସିହେଲା ।
ସେ କନ୍ୟା ହୋଇଲା ନିଧନ । ସ୍ୱର୍ଗରୁ ଆଇଲା ବିମାନ ॥

---

ଦୁକୂଳ — ରେସମୀ ଲୁଗା, ପଟ୍ଟବସ୍ତ୍ର

ତାହାଙ୍କୁ ରଥେ ବସାଇଲେ । ବିଷ୍ଣୁଙ୍କ ଦୂତେ ଘେନଗଲେ ॥
ସାନନ୍ଦ ସମସ୍ତଙ୍କ ଚିତ୍ତ । କରୁଅଛନ୍ତି ନୃତ୍ୟଗୀତ ॥
ଆଗେ ବାଜଇ ତୀରତୂର । ଚାଲନ୍ତି ଆଲଟ ଚାମର ॥
ଶୁଭଇ ହରି ହରି ଧ୍ୱନି । ସ୍ୱର୍ଗେ ଦେଖନ୍ତି ସୁରମୁନି ॥
ଏଥୁ ଅନ୍ତରେ ସ୍ୱର୍ଗଯାନ । ସଧୀରେ ଚଳଇ ବହନ ॥
ବୈକୁଣ୍ଠ ପୁରେ ପରବେଶ । ରକ୍ଷକା ମନରେ ହରଷ ॥
ବିମାନୁ ଓହ୍ଲାଇ ବହନ । ବିଷ୍ଣୁଙ୍କୁ କଲା ଦରଶନ ॥
ଭୂମିରେ ଗଡ଼ିଧାଇ ଶୋଇ । ଉଠିଣ ଶିରେ କର ଦେଇ ॥
କଲାକ ଶତେ ପ୍ରଣିପାତ । ବୋଇଲା ହୋଇ କୃତ୍ୟକୃତ୍ୟ ॥
ହସି ବୋଲନ୍ତି ପୀତବାସ । ତୁ ଏବେ ଥାଅ ତୁମ୍ଭ ପାଶ ॥
ମୋ ପାଦେ ସେବା କରୁଥିବୁ । ଅମୃତ ଭୋଗ ବିଳାସିବୁ ॥
ରକ୍ଷକା ସନମତ କଲା । ବୈକୁଣ୍ଠ ଭୁବନେ ରହିଲା ॥
ବିଷ୍ଣୁର ଅଭୟ ଚରଣ । ସର୍ବଦା ଭଜୁଥାଏ ମନ ॥
ତୃତ ସହସ୍ର ଯୁଗଯାଏ । ବ୍ରହ୍ମଣୀ ରହିଲା ସେଠାଏ ॥
କହନ୍ତି ପ୍ରଭୁ ନାରାୟଣ । ମାଘ ସ୍ନାହାନ ଧର୍ମ ଶୁଣ ॥
ଯେ ମାଘସ୍ନାନ ନ କରଇ । ସଂସାରୁ ତରି ନ ପାରଇ ॥
ଯେହୁ କରଇ ମାଘସ୍ନାନ । ତାକୁ ସନ୍ତୋଷ ମୋର ମନ ॥
ସେ ପ୍ରାଣୀ ହୁଅଇ ମୁକତ । କହେ ନୃସିଂହ ଦାସସୁତ ॥
ଗୀତ ଭଣଇ କୃଷ୍ଣ ଦାସ । ଅଠାଶୋଇ ପଦରେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ରକ୍ଷକା ମକର ସ୍ନାହାନ କଥନେ ବୈକୁଣ୍ଠେ ଗମନେ ନାମ ଅଷ୍ଟାଦଶୋଽଧ୍ୟାୟ

—×—

ପ୍ରଣିପାତ — ସାଷ୍ଟାଙ୍ଗ ପ୍ରଣାମ

# ଊନବିଂଶ ଅଧ୍ୟାୟ

ଉଦ୍ଧବ ଉବାଚ

ଉଦ୍ଧବ ଯୋଡ଼ କର ବେନ । କୃଷ୍ଣଙ୍କୁ ପଚ୍ଚରଇ ପୁଣି ॥
ହେ ପ୍ରଭୁ କମଳା ବିଳାସ । ସେ କନ୍ୟା ପୁଣ କଲ୍ଲକସ ॥
କାହିଁ ହୋଇଲା ଜନ୍ମତାର । କହ ହେ ଦେବ ଚକ୍ରଧର ॥
ଉଦ୍ଧବ ବଚନେ ମୁରାରି । କହନ୍ତି ଅନୁରାଗ କରି ॥
ଶୁଣ ଉଦ୍ଧବ ମନ ସ୍ଥିରେ । ରକ୍ଷକା ଥିଲା ବୈକୁଣ୍ଠରେ ॥
ଚାରି ସହସ୍ର ଯୁଗଯାଏ । ସେବଣ ଥିଲା ପଦ୍ମପାଏ ॥
ଏମନ୍ତେ ଗଲା କେତେକାଳ । ଅସୁରେ ହୋଇଲେ ପ୍ରବଳ ॥
ସିଦ୍ଧୁ ଉପସିଦ୍ଧୁ ବୋଲଣ । ଥିଲେ ଅସୁର ବେନଜଣ ॥
ସେ ବେନଭାଇ ବଡ଼ ଦୁଷ୍ଟ । ଦେବଙ୍କୁ ଦେଲେ ବଡ କଷ୍ଟ ॥
ତ୍ରୈଲୋକ୍ୟ ଭୁଜବଳେ ଜିଣି । ସ୍ୱର୍ଗ ସମ୍ପଦ ଜୁରିଆଣି ॥
ପର ଦୁହିତା ପରନାରୀ । ବଳେ ରମିଲେ ଆଣିଧରି ॥
ତାହାଙ୍କ ଭୟେ ସୁରମାନେ । ସମସ୍ତେ ବଚାରିଲେ ମନେ ॥
ବୋଇଲେ କବୁଦ୍ଧି କରିବା । କେଉଁ ପୁରକୁ ପଳାଇବା ॥
ସହିବା କେତେ ଦୁଃଖ ଏବେ । କେମନ୍ତେ ମରିବେ ଦାନବେ ॥
ବିଧାତା ବୋଲଇ ନଗ୍ରଳ । ଆମ୍ଭର ପ୍ରଭୁ ଆଦିମୂଳ ॥
ତାଙ୍କ ଶ୍ରୀମୁକୁ ଚାଲିଯିବା । ଏସବ ବୃତ୍ତାନ୍ତ କହିବା ॥
ସେ ଯେ ସଂହାରିବେ ଦୈତକୁ । ନୋହିଲେ ମୃତ୍ୟୁ ନାହିଁ ତାକୁ ॥
ଏତେ ବିଚାରି ସୁରଗଣ । ଗମନ କଲେ ତତକ୍ଷଣ ॥
ବୈକୁଣ୍ଠ ପୁରେ ଯାଇମିଳି । ଦେଖିଲେ ପ୍ରଭୁ ବନମାଳୀ ॥
ଅନନ୍ତ ଶଯ୍ୟା ଉପରେଣ । ପହୁଡ଼ଛନ୍ତି ନାରାୟଣ ॥
ପଦ୍ମନୟନ ଗଦାଧର । ଶ୍ରୀମୁଖ ପଙ୍କଜ ସୁନ୍ଦର ॥

---

କମଳା — ଲକ୍ଷ୍ମୀ    ଚକ୍ରଧର ... ବିଷ୍ଣୁ
ଭୁଜ — ବାହୁ    ଜୁରି ... ବଳଙ୍କାରେ
ଅନୁରାଗ — ସ୍ନେହ

ଶ୍ରୀବିମ୍ବ ଅଧର ସୁରଙ୍ଗ । ଚନ୍ଦନ ଭୂଷିତ ଶ୍ରୀଅଙ୍ଗ ॥
କଣ୍ଠେ କୌସ୍ତୁଭ ମଣି ଶୋହେ । ରୂପେ ଜଗତଜନ ମୋହେ ॥
ହୃଦରେ ଶ୍ରୀବତ୍ସର ଚିହ୍ନ । ଦିଶଇ ଅତି ଶୋଭାବନ ॥
ପଟ୍ଟଧାବନ ପୀତବାସ । ରୁଚିର ଗୃହ୍ଣ ଦିବ୍ୟବେଶ ॥
ରାଜୀବ ଲୋଚନ ସୁନ୍ଦର । ଆବର ଚରଣେ ନୂପୁର ॥
ଦିଶଇ ଅତି ମନୋହର । ଏ ରୂପେ ରାଜେ ସୁରେଶ୍ୱର ॥
ସୃଷ୍ଟି କରତା ଭଗବାନ । ଯୋଗ ନିଦ୍ରାରେ ଅଚେତନ ॥
ଏମନ୍ତ ବେଳେ ଦେବତାଏ । ପ୍ରବେଶ ହୋଇଲେ ସେଠାଏ ॥
ବ୍ରହ୍ମା ଈଶ୍ୱର ସୁନାସୀର । ସଙ୍ଗତେ ଘେନି ସର୍ବସୁର ॥
ସମ୍ମୁଖେ ଦର୍ଶନ କରନ୍ତି । ସମସ୍ତେ ଉଭା ହୋଇଛନ୍ତି ॥
ଦେବଙ୍କ ମନତହୁଁ ଜାଣି । ଉଠି ବସିଲେ ଦେବସ୍ୱାମୀ ॥
ବିଷ୍ଣୁ ଉଠିବା ଦେଖି ସୁରେ । ଦେବେ ଉଠିଲେ ଧାଡିକାରେ ॥
ନିକଟେ ମୋଡ଼ି ବେନିକର । ପୁଣିହିଁ କଲେ ନମସ୍କାର ॥
ବିଧାତା ମୁଖ ଚାହିଁ କରି । କୁଶଳ କାରଣ ପଚାରି ॥
ଧାତା ବୋଇଲେ ଦେବ ଶୁଣ । ଆଇଲୁ ଯେବଣ କାରଣ ॥
ଏବେ ଅସୁର ଦୁଇଜାତ । ସେତପା ମହିମା ବିଖ୍ୟାତ ॥
ତାହାଙ୍କ ଚରଣର ଭାର । ସହି ନପାରେ ବସୁନ୍ଧରା ॥
ଗୋଟିକ ନାମ ଅଟେ ସିନ୍ଧୁ । ଅନ୍ୟର ନାମ ଉପସିନ୍ଧୁ ॥
ଶିବଙ୍କୁ ଯହୁଁ ସେବାକଲେ । ଈଶ୍ୱର ପ୍ରସନ୍ନ ହୋଇଲେ ॥
ବୋଇଲେ ମାଗ ଏବେବର । ଯେ ଇଚ୍ଛା ଅଛଇ ତୁମ୍ଭର ॥
ଅସୁରେ ବୋଇଲେ ଗୋସାଇଁ । ଆମ୍ଭଙ୍କୁ ନଜିଣିବେ କେହି ॥
ଦେବ ଦାନବ ଆଦିକରି । କେବେହେଁ ନ ପାରିବେ ମାରି ॥
ଏମନ୍ତ ବର ଆଜ୍ଞାହେଉ । ଅସ୍ତୁ ବୋଇଲେ ମହାବାହୁ ॥
ଅସୁରେ କରନ୍ତି ବିଚାର । କେଅବା ଅଛୁ ଅଜ୍ରାମର ॥
ମଞ୍ଚ ମଣ୍ଡଳେ ଦେହବନ୍ତ । ଜନ୍ମିଲେ ଅବଶ୍ୟ ମରଇ ॥
ଏମନ୍ତ ବିଚାରି ମନକୁ । ପୁଣିହିଁ କହିଲେ ରୁଦ୍ରଙ୍କୁ ॥
ଜ୍ୟେଷ୍ଠ କନିଷ୍ଠ ବେନିଭାଇ । ମରିବୁ ମରାମରି ହୋଇ ॥

---

କୌସ୍ତୁଭମଣି — ବିଷ୍ଣୁଙ୍କ ମଣି ରାଜୀବ ··· ପଦ୍ମ
ସୁନାସୀର ଇନ୍ଦ୍ର ପଟ୍ଟଧାବନ ··· ବସ୍ତ୍ର
ବସୁନ୍ଧରା — ପୃଥିବୀ ରୁଦ୍ର ଈଶ୍ୱର

ହସି ବୋଇଲେ ପଞ୍ଚମଥା । ପ୍ରାପତ ହେଉ ଏହିକଥା ॥

ଏମନ୍ତ ବୋଲି ଶିବ ଗଲେ । ଅସୁରେ ସେଠାରୁ ଅଇଲେ ॥

ତହୁଁ ହରଙ୍କ ବରପାଇ । ପୃଥ୍ୱୀ ବୁଲିଲେ ବେନିଭାଇ ॥

ହେଲେ ଜିଣିଲେ ତ୍ରିପୁର । ଅନ୍ୟାୟ କରନ୍ତି ଅପାର ॥

ଦେବଙ୍କ ଅଜେୟ ଦନୁଜ । ବିଶ୍ୱେ ଅଜେୟ ତାଙ୍କ ତେଜ ॥

ଏ ବେନି ଅସୁର ପ୍ରତାପ । ସହି ପାରିବ କାହା ବାପ ॥

ଏବେ ସ୍ୱର୍ଗକୁ ଦେଲେ ଧାଡ଼ି । ଅବଶ୍ୟ ପଳାଇବୁ ଛାଡ଼ି ॥

ଏକଥା ଜଣାଇବା ପାଇଁ । ବ୍ରହ୍ମକୁ ଅଇଲ ଗୋସାଇଁ ॥

ଭୋ ଦେବ ବାରେ ରକ୍ଷାକର । ସମ୍ଭାଳ ସ୍ୱର୍ଗପୁର ତୋର ॥

ଦେବତା ବାକ୍ୟେ ଦୟାନିଧି । ଉପାୟ କଲେ କୂଟବୁଦ୍ଧି ॥

ବ୍ରହ୍ମା ରୁଦ୍ରଙ୍କୁ ହରିଗୃହେଁ । ବୋଲନ୍ତି କମଳାର ସାଇଁ ॥

ସେ ବେନି ଅସୁରଙ୍କ ମୃତ୍ୟୁ । ଶୁଣ କହିବା ତାର ହେତୁ ॥

କନ୍ୟା ଗୋଟିଏ ତୁମ୍ଭେ ନିଅ । ତାହାକୁ ଦିବ୍ୟ ତନୁ ଦିଅ ॥

ଥୋଇବ ଅସୁରଙ୍କ ପାଶେ । ଦେଖି ଧାଇଁବେ ସେ ସନ୍ତୋଷେ ॥

ରୂପ ଦେଖିଣ ବଶହେବେ । ଘରଣୀ କରିବୁ ବୋଲିବେ ॥

କରିବେ ବେନି ଭ୍ରାତା କଳି । ଯୁଦ୍ଧ କରିବେ ମହାବଳୀ ॥

ଦୁହେଁ ମରିବେ ଏକାବେଳେ । ଶୁଣହେ ଦେବତା ସକଳେ ॥

ବିଷ୍ଣୁ ଆଜ୍ଞାରେ ସୁରଗଣେ । ସମ୍ମତ ହେଲେ ତତକ୍ଷଣେ ॥

ଗୋବିନ୍ଦ ରକ୍ଷକାକୁ ଆଣି । ସମର୍ପି ଦେଲେ ଚକ୍ରପାଣି ॥

ବୋଇଲେ ଏହାର ଯୋଗରେ । ମରିବେ ସେବେନି ଅସୁରେ ॥

ଶୁଣି ସାନନ୍ଦ ଦେବତାଏ । ନମିଲେ ଗୋବିନ୍ଦର ପାଏ ॥

କନ୍ୟାକୁ ଘେନି ତତକ୍ଷଣ । ସେଠାରୁ ଗଲେ ସୁରଗଣ ॥

ଦେବ ସଭାରେ ପରବେଶ । ରକ୍ଷକା ଅଛି ତାଙ୍କ ପାଶ ॥

ବ୍ରହ୍ମା ବୋଇଲେ ତାଙ୍କୁ ଚାହିଁ । କଥାଏ ଶୁଣ ଚନ୍ଦ୍ରମୁହିଁ ॥

ଆମ୍ଭର ଆଜ୍ଞା ପରମାଣେ । ଏରୂପ ଛାଡ଼ ତତକ୍ଷଣେ ।

ଉତ୍ତମ ଦିବ୍ୟ ରୂପ ଧର । ଭୋମାତ ଦେବକାର୍ଯ୍ୟ କର ॥

ସେ ବେନି ଦାନବକୁ ମାରି । ଉଶ୍ୱାସ କର ବସୁନ୍ଧରା ॥

ବ୍ରହ୍ମାଙ୍କ ବଚନେ ସନ୍ତୋଷୀ । ହୋଇଲା ଦିବ୍ୟରୂପ ଗୋଟି ॥

ଜଗତ ମୋହିନୀ ସୁନ୍ଦରୀ । ରୂପେ ପାବଣ୍ଡି ନୋହେ ସରି ॥

ଶାରଦ ଶଶାଙ୍କ ବଦନୀ । ତରଙ୍ଗ କୁରଙ୍ଗ ନୟନୀ ॥

ମାଳ କୁଟୀଳ କୁନ୍ତୁକେଶୀ । ବନ୍ଧନ୍ତ କନ୍ଦର୍ପର ଫାଶୀ ॥
ନାଶିକା ତିଳଫୁଲ ଜଣି । ବଚନ କୋକିଳର ବାଣୀ ॥
ମୋତି ଦଶନ ବିମ୍ବାଧର । ଗୁହ୍ଣିଲେ ମୁନି ମନୋହର ॥
ବିସ୍ତାର ହୃଦସ୍ଥ ବାହାର । ନବ ଯୌବନ ରୂପ ଭାର ॥
ପଦ୍ମ ନାଭି କି ବାହୁବେନି । ଯତ୍ନେ ଗଢ଼ିଲେ ପଦ୍ମଯୋନି ॥
ଡମ୍ବରୁ ପ୍ରାୟେ ମଝାକ୍ଷୀଣ । ଦିଶଇ ଅତି ଶୋଭବନ ॥
ଉଲଟ ରମ୍ଭା ଜିଣିଜାନୁ । ଶୁଦ୍ଧ କନକ ଜିଣି ତନୁ ॥
ଅତି କୋମଳ ପାଦତଳ । ଦିଶେ ଅଲତା ରଙ୍ଗଭଳ ॥
ବହଇ ଲକ୍ଷେକ ଲକ୍ଷଣ । ଶରୀରେ ନାହିଁ ଅବଗୁଣ ॥
ଅଯୋନି ସମ୍ଭୂତା ସେ ବାଳୀ । ଉପମା ନାହିଁ ମହୀସ୍ଥଳୀ ॥
ଦେଖି ହରଷ ହେଲେ ବ୍ରହ୍ମା । ନାମ ତା ଦେଲେ ତିଳୋତ୍ତମା ॥
ଧାତା ବୋଇଲେ ମାଗୋ ଯିବୁ । ରେବା ତୀର୍ଥରେ ଯାଇଁ ହେବୁ ॥
ପାଶେ ଅଶୋକ ବନଅଛୁ । ତହିଁରେ ଥିବୁ ତୁ ମୃଗାକ୍ଷି ॥
ସିନ୍ଧୁ ଉପସିନ୍ଧୁ ଯେ ଦୁଷ୍ଟ । ସେଠାକୁ ଅଟଇ ନିକଟ ।
ଯେମନ୍ତେ ସେହୁ ବେନିଭ୍ରାତ । ଇଚ୍ଛାଏ କରିବେ ଅନର୍ଥ ॥
ମରିବେ ମରାମରି ହୋଇ । ତେବେ ଉଶ୍ୱାସ ହେବ ମହି ॥
ବ୍ରହ୍ମା ବଚନେ ଶୁଭ୍ରକେଶୀ । ମଥା ପୋତିଣ ଅଛି ବସି ॥
ଯିବାକୁ ସନମତ କଲା । ତକ୍ଷଣେ ପ୍ରବେଶ ହୋଇଲା ॥
ବ୍ରହ୍ମା ବୋଇଲେ କୁବେରକୁ । ଦିଅ ଅଳଙ୍କାର ଏହାକୁ ॥
ବିଧାତା ବଚନେ କୁବେର । ମଣ୍ଡି ଦେଲାକ ଅଳଙ୍କାର ॥
ତକ୍ଷଣେ ତିଳୋତ୍ତମା ନାରୀ । ସେ ରତ୍ନ ଆଭରଣ କରି ॥
ଶିରେ ଶୋଭିତ ମୋତିମାଳ । ପିନ୍ଧିଲା ଅତି ଯତ୍ନକରି ॥
କବା କବରୀ ଶୋଭା କରି । ନିନ୍ଦଇ ନବ ଜଳଧର ॥
କର୍ଣ୍ଣେ କୁଣ୍ଡଳ ହୀରକଣ୍ଠି । ଶୋଭିତ ରତ୍ନକାପ ଗୋଟି ॥
ଲଲାଟେ ସିନ୍ଦୁରର ଟିତା । ଚନ୍ଦ୍ରମା ପ୍ରାୟେକ ଶୋଭିତା ॥
ଚକୋର ନୟନେ ଅଞ୍ଜନ । ରଞ୍ଜନେ ଦିଶଇ ଶୋଭନ ॥
ନାସାରେ ମୁକୁତା ବସଣି । ପୟରେ ରତ୍ନ ଓଢ଼ିଆଣି ॥
ବିଶେଷେ ବନ୍ଧୁଲି ଅଧର । ତାମ୍ବୁଲ ଭୁଞ୍ଜନ୍ତି ସୁନ୍ଦର ॥

---

ତିଳଫୁଲ — ରାଶିଫୁଲ  ମଥା — ମୁଣ୍ଡ
ପଦ୍ମଯୋନି — ବ୍ରହ୍ମା  ରମ୍ଭା — କଦଳୀ
ସନମତ — ରାଜି

କଣ୍ଠରେ ଶୋଭେ ରତ୍ନମାଳା । ଅତ୍ୟନ୍ତ ଶୋଭା ଦଶେଗଲା ॥
ବେନ ଭୁଜରେ ତାଡଚୂଡ଼ । ବିବିଧ ରତ୍ନମାନ ଜଡ଼ ॥
ଅଙ୍ଗୁଳ ମାନଙ୍କେ ମୁଦ୍ରିକା । ଏକକୁ ଆରେକ ଅଧିକା ॥
ବିବିଧ ବସନେକ ବାଛି । କାଛୁଣ ପିନ୍ଧିଲା ମୃଗାକ୍ଷି ॥
କଟିରେ ସୁବର୍ଣ୍ଣ ମେଖଳା । ଯତନେ ଝଞ୍ଜିଲା ଅବଳା ॥
ପୟରେ ଶୋଭଇ ନୂପୁର । ଗୁଲନ୍ତେ ବାଜଇ ମଧୁର ॥
ଅଙ୍ଗୁଷ୍ଠି ମାନଙ୍କରେ ପଦ । ଭରିଲା ସ୍ୱର ରତ୍ନମୁଦ ॥
ବିବିଧ କୁସୁମ ମିଶାଇ । ଓନଇଣ ଖୋସାରେ ପୂରାଇ ॥
ସୁଗନ୍ଧ କର୍ପୂର କସ୍ତୁରି । ମିଶାଇ ଘଷିଲା ଚତୁରୀ ॥
ଭୂଷଣ ନାନା ଅଳଙ୍କାର । ନମିଲା ବ୍ରହ୍ମାଙ୍କ ପୟର ॥
ରୁଦ୍ର ଇନ୍ଦ୍ରଙ୍କ ମୁଖଚାହିଁ । ନମିଲା ତାଙ୍କ ପାଦେ ଯାଇଁ ॥
ଦେବଙ୍କୁ ପ୍ରଣାମ ସେ କଲା । ଓଲଗି ମେଲାଣି ମାଗିଲା ॥
ବୀଣା ଗୋଟିଏ ବାମକରେ । ନମିଲା ବ୍ରହ୍ମାଙ୍କ ପୟରେ ॥
ଆନନ୍ଦ ହୋଇଣ ମନରେ । ରମଣୀ ଗମଇ ସଧୀରେ ॥
ତାହାର ରୂପ ଦେଖିକରି । ବଶ ହୋଇଲେ କୁଶଧାରୀ ॥
କେବଳ ଯାତକଲେ ସେହି । ରୂପ ଦେଖିଣ ହେଲେ ମୋହି ॥
ହୃଦରେ ବିଚାରନ୍ତି ରହି । ଏହାକୁ ଭାଗ୍ୟ ଥିଲେ ପାଇ ॥
ଇନ୍ଦ୍ର ହିଁ ରୂପଦେଖି ତାର । ମଦନେ ହୁଅଇ ଅସ୍ଥିର ॥
ଦେବତାମାନେ ଦେଖୁଛନ୍ତି । ସମସ୍ତେ ପ୍ରଶଂସା କରନ୍ତି ॥
ଧନ୍ୟ ସେ ଅପୂର୍ବ ସୁନ୍ଦରୀ । ସଭିଙ୍କ ମନନେଲା ହରି ॥
ବିଧାତା କନ୍ଦର୍ପକୁ ଚାହିଁ । ବୋଇଲେ ସଙ୍ଗେ ଯାଅଛୁହି ॥
ଏହାକୁ ଅଶୋକ ବନରେ । ନେଇ ଥୋଇବୁ ଧାଡକାରେ ॥
ଦଇତ୍ୟେ ହୋଇଲେ ନିଧନ । ତେବେ ଆସିବୁ ନିଜସ୍ଥାନ ॥
ପିତା ମୋହର ଆଜ୍ଞାପାଇ । କନ୍ଦର୍ପ ଶିରେ କରଦେଇ ॥
ଯିବାକୁ ହେଲା ସନମତ । ଆଣିଲା ରତ୍ନମୟ ରଥ ॥
ରକ୍ଷକାକୁ ସେ ବସାଇଲେ । ଗଗନ ମାର୍ଗେ ଚଳିଗଲେ ॥

---

ରଞ୍ଜନେ — ଲଗାଇବାରେ
ପୟରେ — ପାଦରେ
ଦଇତ୍ୟେ — ଅସୁର

କାଛୁଣ — ଭଡ଼କରି
କୁଶଧାରୀ — ବ୍ରହ୍ମା
ଧାଡକାରେ — ଶୀଘ୍ର

ରେବା ତୀର୍ଥରେ ପରବେଶ । ଭଣେ ନୃସିଂହ ଦାସ ଶିଷ୍ୟ ॥
କହନ୍ତି ପ୍ରଭୁ ଜଗନ୍ନାଥେ । ମାଘ ସ୍ନାନରେ ଫଳ ଏତେ ॥
ରକ୍ଷକା ମାଘସ୍ନାନ କରି । ସ୍ୱର୍ଗେ ହୋଇଲ ଅବସରି ॥
ବୈକୁଣ୍ଠେ ସହସ୍ର ଯୁଗ । କଲ ବିପୁଳ ସୁଖଭୋଗ ॥
ବସ୍ତୁର ଦୃଢମାନ ଆସି । ଦେବେ କହନ୍ତି ଗୃଢ଼ବାଣୀ ॥
ଦୈତକୁ ମାରିବା ନିମନ୍ତେ । ଏବେ ଯାଉଛୁ ରେବାତୀର୍ଥେ ॥
ଭଣଇ ଘାନକୃଷ୍ଣ ଦାସ । ଶଏ ଊନଷୃକଣେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ସିନ୍ଧୁ ଉପସିନ୍ଧୁ ମାରଣେ ତିଲୋତ୍ତମା ପ୍ରେରଣେ ନାମ ଊନତ୍ରିଂଶୋଽଧ୍ୟାୟଃ ।

—×—

ଦଇତ୍ୟେ — ଅସୁର ଧାଡକାରେ — ଶୀଘ୍ର

# ବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ହୃଷୀକେଶ । ଶୁଣ ଉଦ୍ଧବ ଦିବ୍ୟରସ ॥
ସିଦ୍ଧ ଉପସିଦ୍ଧଙ୍କୁ ମାରି । ଗଲେଯେ ତିଲୋତ୍ତମା ନାରୀ ॥
ମଦନ ଗଲା ତାର ତୁଲେ । ରେବା ତୀର୍ଥରେ ଯାଇଁ ହେଲେ ॥
ରଥୁଁ ଓହ୍ଲାଇ ବେନଜନ । ସଧୀରେ କରନ୍ତି ଗମନ ॥
ଅଶୋକ ବନରେ ମିଳିଲେ । ଯାବତ କଥା ନ ଭାଷିଲେ ॥
ପଥରେ କହଇ ମଦନ । ହେ କନ୍ୟା ଶୁଣ ମୋ ବଚନ ॥
ଏଠାରେ ବସିଥାଅ ତୁହି । ବୀଣା ବଜାଇ ଗୀତଗାଇ ॥
ଆଳାପ କରି ଗୀତରସ । ମନରେ ହୋଇଣ ହରଷ ॥
ନକର ମନେ ଭୟ କିଛି । ମୂର୍ଚ୍ଛିତ ଏହିବନେ ଅଛି ॥
ଏମନ୍ତେ ଗଲା ପଞ୍ଚବାଣ । ରହିଲା ଗୁପତ ହୋଇଣ ॥
ଭଲ ସେ ବନର ମହିମା । କଅବା ଦେବାଟି ଉପମା ॥
ଇନ୍ଦ୍ରର ରମ୍ୟ ସ୍ଥାନ ଗୋଟି । କିସେ ନନ୍ଦନ ବନ ଏଟି ॥
ଏକେ ଅଟଇ ମଧୁମାସ । ବସନ୍ତ ଋତୁ ପରିବେଶ ।
ସୁବାସ ଘେନିଣ ସମୀର । ବହୁ ଅଛଇ ଧୀରଧୀର ॥
ଭାଷନ୍ତି ଶୁକ ଶାରୀମାନ । କୋକିଳ ରବେ ଘନଘନ ॥
ଶୁକ ପକ୍ଷୀଏ ଏକମେଳେ । ରବ ଦିଅନ୍ତି ସୁଖହେଳେ ॥
ଫଳ ଭରରେ ତରୁବରେ । ଲୋଟି ଅଛନ୍ତି ସେ ଭୂମିରେ ॥
ପାଶେ ବହୁଛି ରେବାନଦୀ । ପାତାଳପୁର ଯାଏ ଭେଦି ॥
ସେବନ ମଧ୍ୟେ ତିଲୋତ୍ତମା । ଏକାନ୍ତେ ବସିଅଛି ବାମା ॥
ସାନନ୍ଦେ ଦେଖି ଯନ୍ତ୍ର ବାଇ । ଅତି ସୁସ୍ୱରେ ଗୀତଗାଇ ॥
କଣ୍ଠତା ବୀଣାରୁ ଅଧିକ । ମୋହି ପାରିବ ଧ୍ରୁବଲୋକ ॥
କୋକିଳା ବାଣୀ ଶୁଣିତାର । ଲାଜେ ପଶିଲା ବନଘୋର ॥
ନେତ୍ରକୁ ହାରିଲା କମଳ । ପାଇ ସେ ବୁଡ଼ିଲାକ ଜଳ ॥

---

ସମୀର — ପବନ          ଯାବତ — ଯେପର୍ଯ୍ୟନ୍ତ
ଶୁକ — ଶୁଆ          କୋକିଳ — କୋଇଲି
ଭ୍ରମରୀ ... ପିପୀଲିକାବିଶେଷ

ମୁଖ ଦେଖଣ ଇନ୍ଦୁଗଲ । ବିଲକ୍ଷ ଯୋଜନେ ରହିଲ ॥
ତାହାର କେଶ ଦେଖି କରି । ଅରଣ୍ୟେ ପଶିଲା ଚମରୀ ॥
ଶୁକ ସୁବର୍ଣ୍ଣ ଜିଣି କାନ୍ତି । ବଜ୍ରକ ସମ ଦନ୍ତକାନ୍ତି ॥
ଉରଜ ଗଜକୁମ୍ଭ ପ୍ରାୟେ । ମାତଙ୍ଗ ଫଳ ସରିନୋହେ ॥
କଟୀ ତା ଦେଖଣ କେଶରୀ । ବନରେ ପଶିଲାକ ହାରି ॥
ଚଳିବା ଗତି ଦେଖି ଗଜ । ସେହି ପାଇଲ ବଡ଼ଲାଜ ॥
ଚେଣୁଟି ପଶିଲ ବନସ୍ତେ । ଆଉ କହିବା ପୁଣ୍ୟକେତେ ॥
ବିଶେଷ ସ୍ୱର୍ଗର ନାୟିକା । ଅରଣ୍ୟେ ପଶିଲାକ ଏକା ॥
ରୁନ୍ଧିବା ଭଙ୍ଗୀ ଦେଖି ତାର । କାଷ୍ଠ ପାଷାଣ ଜରଜର ॥
ଦେଖି ବିଧାତାଙ୍କର କୃତ୍ୟ । ସିନ୍ଧୁ ଉପସିନ୍ଧୁର ଦୂତ ॥
ମୃଗୟା ଅର୍ଥେ ବସିଥିଲେ । କନ୍ୟାକୁ ଅଯୋଗେ ଦେଖିଲେ ॥
ରୂପ ନରେଖି ବେନଭାଇ । ପଡ଼ିଲେ ଅଚେତନ ହୋଇ ॥
ପୁଣିହିଁ ପାଇଲେ ଚେତନା । ବୋଇଲେ ଧନ୍ୟଏ ଅଙ୍ଗନା ॥
ବାବୁଏ ଅପୂର୍ବ ସୁନ୍ଦରୀ । ବିହି ଗଢ଼ିଲା ଯତ୍ନକରି ॥
ବହୁତ ସୁର ମୁନିମାନେ । ଯଦ୍ୟପି ଦେଖିବେ ନୟନେ ॥
ରୂପ ନରେଖି ବେନଭୋଳେ । ମୋହେ ପଡ଼ିବେ ଭୂମିତଳେ ।
କାମେ ହୋଇବେ ଅସାଷ୍ଟମ । ଯୋଗ ସମାଧି ହେବଭ୍ରମ ॥
ଏସନ ବିଗ୍ଭରି ସେମନେ । ଧାଇଁଣ ଗଲେ ତତକ୍ଷଣେ ॥
ସିନ୍ଧୁ ଉପସିନ୍ଧୁର ଆଗେ । ଧାଇ କହିଲେ ଅତିବେଗେ ॥
ସ୍ୱାମୀ ଦେବ ସାବଧାନେ ଶୁଣ । କଥାଏ ଅଇଲୁ ଦେଖଣ ॥
ଆମ୍ଭେ ମୃଗୟା ଯାଉଥିଲୁ । ବିପିନେ ସ୍ତ୍ରୀଏ ଦେଖିଲୁ ॥
ରୂପକୁ ନାହିଁ ପଟାନ୍ତର । ହେଲେ ମୋହୁଛି ତ୍ରିପୁର ॥
ରୁଦ୍ର ସହିତେ ଯେତେ ଦେବେ । ମୁଖ ଦେଖିଣ ବଶହେବେ ॥
ତିନ ଭୁବନେ ଯେତେ ବାମା । ତା ସଙ୍ଗେ ନୋହିବେ ଉପମା ॥
ଯେ ତାର ଚୁମ୍ବିବ ଅଧର । ଧନ୍ୟ ତାହାର କଳେବର ॥
କୋଳେ ଯେ ତାକୁ ବସାଇବ । ପୁରୁଷ ମଧ୍ୟେ ଗଣ୍ୟହେବ ॥
ତା ପାଶେ ଯେବେ ଦନହରି । ନୋହିବ ଇନ୍ଦ୍ରପଦ ସରି ॥
ସ୍ୱାମୀଦେବ ବିଳମ୍ବ ନକର । ସେ କନ୍ୟା ଆଣ ତୁମ୍ଭପୁର ॥

---

ଉରଜ — ସ୍ତନ    ବିପିନେ — ବଣରେ

ହେଲା ନକର ବେଗେ ଆସ । ସୁଦର୍ଶ ସଙ୍ଗତେ ହଳସ ॥
ଶୁଣି ସାନନ୍ଦ ବେନଦୈତ୍ୟ । ଚଢ଼ିଲେ ଗଜ ମହାମତ୍ତ ॥
ଗଦାଏ ଗଦାଏ ଧଇଲେ । ବାହାର୍ ହୁଇଘାଇ ହେଲେ ॥
ଗଦାକ ଶତେଶ୍ୱର ଲୁହା । ନିର୍ମାଣିଛନ୍ତି ଧାତା ତାହା ॥
ତେଜେ କ ଜଣଇ ଅନଳ । ଅଇଶ କୁଳକୁ ସେ କାଳ ॥
ଶୁଣି ଉଦ୍ଧବ ଯୋଡ଼କର । ବୋଲଇ ପ୍ରଭୁ ଚକ୍ରଧର ॥
ଏଗଦା କେଉଁଠାରେ ଥିଲା । ପୁଣି ଦୈତ୍ୟଙ୍କୁ କଏଦେଲା ॥
ଫେଡ଼ଣ କହ ମୋ ଆଗରେ । ସନ୍ଦେହ ନରହୁ ମନରେ ॥
ଉଦ୍ଧବ ପଚ୍ଛରିବା କଥା । କହନ୍ତି ଶ୍ରୀଣି ବିଶ୍ୱପିତା ॥
ବନେ ଯେ ବଜେକଲେ ହର । ମିଳଲେ ବ୍ରହ୍ମାଙ୍କର ଘର ॥
ଦେଖି ସାନନ୍ଦ କୁଶଧାରୀ । ଶିବଙ୍କୁ ବହୁ ପୂଜା କରି ॥
କୁଶଳ ପୁଚ୍ଛାପୁଚ୍ଛି ହେଲେ । ଯାବତ କଥାଦ୍ଧି ଘାଲଲେ ॥
ଅତି ଆନନ୍ଦ ଧାତା ହୋଇ । ଶିବଙ୍କୁ ଦେଲେ ଗଦାଦୁଇ ॥
ବୋଇଲେ ନିଅ ଗଦା ବେନ । ଏ ଶସ୍ତ୍ର କରେ ଥିବ ଘେନ ॥
ଯାହାକୁ ପ୍ରହାର କରିବ । ଏଗଦା ମାରଲେ ମାରିବ ॥
ଦେବତା ଦାନବ ମାନବେ । ଏଗଦା ମାଇଲେ ମରିବେ ॥
ଏତେ କହିଣ ଚଉମାଥ । ଆୟୁଧ ଦେଲେ ଶିବହସ୍ତ ॥
ସାନନ୍ଦ ମନେ ଶୂଳଧର । ଗଦା ଧଇଲେ ନିଜକର ॥
ଏମନ୍ତେ କେତେକାଳ ଅନ୍ତେ । ଜନମ ହୋଇଲେ ଦଇତ୍ୟେ ॥
ନାମ ତା ସିନ୍ଧୁ ଉପସିନ୍ଧୁ । ଶୋଷି ପାରନ୍ତି ସାତସିନ୍ଧୁ ॥
ସେ ବେନି ଘୋରେ ତପକରି । ସେବାରେ ପୂଜ ଶୂଳଧାରୀ ॥
ପ୍ରସନ୍ନ ହୋଇ ଶୂଳଧର । ବୋଇଲେ ଆରେ ଘେନବର ॥
ତ୍ରୈଲୋକ୍ୟ ଅକ୍ଷୟ ହୋଇବ । କାହାରି ହାତେ ନମରିବ ॥
ହେଲେ ଜିଣିବ ପୁରତ୍ରୟ । ଆବର ନିଅ ଗଦାବେନ ॥
ଏଘନ ବୋଲି ଶମ୍ଭୁ ଦେଲେ । ଆହୁରି କଥାଏ କହିଲେ ॥
ବୋଇଲେ ଶୁଣଆରେ ତତ୍ତ୍ୱ । ଯେବଣ କାଳେ ତୁମ୍ଭେ ମୃତ ॥
କଳି କରିବ ଭାଇବେନ । ଯୁଦ୍ଧ ହୋଇବ ଅନ୍ୟୋଅନ୍ୟ ॥

---

ଦାନବ — ରାକ୍ଷସ
ଚଉମାଥ ··· ବ୍ରହ୍ମା
ସାତସିନ୍ଧୁ — ସାତ ସମୁଦ୍ର
ଶୂଳଧାରୀ ··· ଶିବ
ପୁରତ୍ରୟ — ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ

ତେବେସେ ହରଇବ ପ୍ରାଣ । ଏକଥା ଅଟଇ ପ୍ରମାଣ ॥
ଏମନ୍ତ ବୋଲି ଗଲେ ଶିବ । ସେଠାରୁ ଅଇଲେ ଦାନବ ॥
ଈଶ୍ୱର ବରର ପ୍ରସାଦେ । ପୃଥ୍ୱୀ ସାଧିଲେ ଅପ୍ରମାଦେ ॥
ନଶ୍ଚିନ୍ତ ହୋଇଣ ରହିଲେ । ଅନେକ ସୁଖ ଭୋଗକଲେ ॥
ଦେବତାମାନଙ୍କ କପଟେ । ଏବେସେ ମରିବେ ନକଟେ ॥
ବାରଣ ତାର ମୁଖୁ ଶୁଣି । ବାହାର ହେଲେ ସେହିକ୍ଷଣି ॥
ହୁହେଁ ସେ ଗଦାବର ଧରି । ହସ୍ତୀ କନ୍ଧରେ ବଜେକରି ॥
ସଙ୍ଗତେ ସୈନ୍ୟ ଅପ୍ରମିତ । ଆବର ପାତ୍ର ଯେ ଅମାତ୍ୟ ॥
ନଗର କଡ଼ାଇଲେ ବାଟ । ମିଳିଲେ ରେବାର ନକଟ ॥
ଅଶୋକ ବଟିକାରେ ମିଳି । ଦେଖିଲେ ବସିଅଛି ବାଳୀ ॥
ରୂପ ଦେଖିଣ ଦୈନଭ୍ରାତ । ମଦନେ ହୋଇଲେ ଆରତ ॥
ହସ୍ତୀ କନ୍ଧରୁ ଓହ୍ଲାଇଲେ । କନ୍ୟାର ସନ୍ନିଧେ ମିଳିଲେ ॥
ଅତି କୋମଳ ମଞ୍ଜୁବାଣୀ । କନ୍ୟାକୁ ପଚାରିଲେ ପୁଣି ॥
ଲୋକକନ୍ୟା କାହୁ ତୁ ଅଇଲୁ । କେଉଁଣ ଭୁବନେ ଥିଲୁ ॥
ଏକାନ୍ତେ ବସିଲୁ କମାଇଁ । ସ୍ୱରୂପ କହ ଚନ୍ଦ୍ରମୁହିଁ ॥
ହସିଣ ବୋଲଇ ସୁନ୍ଦରୀ । ମୁ ଯେ ସ୍ୱର୍ଗର ଅପସରୀ ॥
ତାତ ଜନନୀ ମୋର ନାହିଁ । ଅଯୋନି ସମ୍ଭୁତା ଅଟଇ ॥
ଧର୍ମ ପିଅର ମୋର ବ୍ରହ୍ମା । ନାମ ମୋହର ତିଳୋତ୍ତମା ॥
ମୋହର ଦେହ ଅଳ୍ପରୂପେ । ବର ନୋହିଲେ ଯହୁଁ ମୋତେ ॥
ତେଣୁ ନକଲେ ମୋତେ ବିଭା । ଏବେ ବୟସେ ନବଯୁବା ॥
ଏକାଳେ ପତି ସଙ୍ଗ ନାହିଁ । ଇଚ୍ଛାରେ ଆସିଅଛି ମୁହିଁ ॥
ରେବାରେ ସ୍ନାହାନ ନିମନ୍ତେ । ତେଣୁ ମୁଁ ଅଇଲଇଁ ଏଥେ ॥
ଶୁଣି ବୋଲନ୍ତି ଦୈନଭାଇ । ଆମ୍ଭ ଭାରଯା ହୁଅତୁହି ॥
ଆମ୍ଭେ ଯେ ବ୍ରହ୍ମାଣ୍ଡ ଈଶ୍ୱର । ହେଲେ ଜିଣିଲୁ ତ୍ରିପୁର ॥
ଯେତେ ଅଛନ୍ତି ଶାନ୍ତ ହୋଇ । ଆମ୍ଭଙ୍କୁ ସରନ୍ତୁହେଁ କେହି ॥
ତୁ ଏବେ ଆମ୍ଭ ହସ୍ତଧର । ବିପୁଳ ସୁଖ ଭୋଗକର ॥
ସୁନ୍ଦରୀ ନ କହିଲା କଥା । ଲାଜେ ସେ ନୁଆଇଁଲା ମଥା ॥
ସମ୍ମତ କଲା ପ୍ରାୟମଣି । ମନରେ ବିଚାରନ୍ତି ପୁଣି ॥
ବୋଇଲେ ଜ୍ୟେଷ୍ଠଭ୍ରାତ ମୁହିଁ । ଏହାକୁ ବିଭା ହେବି ମୁହିଁ ॥

---

ମଞ୍ଜୁବାଣୀ — ସୁନ୍ଦରବାଣୀ

ମୋହର ଭାରିଯା ହୋଇବ । ଏକଥା ଅଟଇ ଦୁର୍ଲ୍ଲଭ ॥
ଶୁଣି କନିଷ୍ଠ ଭ୍ରାତ ଭଣି । ମୋହୋର ହେଉ ଏ ଧରଣୀ ॥
ତୋର ହୋଇବ ଖାଇବୋହୂ । ଲୋକେ ତୋ ନାମ ସାଧୁ ହେଉ ॥
ତା ଶୁଣି ଜ୍ୟେଷ୍ଠଭ୍ରାତ ତଳ । କୋପରେ ହୋଇଲା ପ୍ରଜ୍ଜ୍ୱଳ ॥
ବୋଇଲା ପାପିଷ୍ଠରେ ଭୁଣ୍ଡ । ଏକଥା ମନେ ନ ଯୋଗାଇ ॥
ଆସରେ ସଂଗ୍ରାମ କରିବା । ହାରିବା ଜିଣିବାକୁ ଯିବା ॥
ଯେହୁ ଜିଣିବ କନ୍ୟା ତାର । ଏକଥା ଅଟଇ ବସ୍ତର ॥
ସମ୍ମତ କଲେ ଭାଇବେନି । ଦୁହେଁ ହୋଇଲେ କନାଅନି ॥
ଭୂମିରେ ପକାଇ ଆୟୁଧ । ଆରମ୍ଭ କଲେ ମୁଷ୍ଟିଯୁଦ୍ଧ ॥
ମାରନ୍ତି ବଜ୍ର ସମ ବିଧା । ସ୍ୱର୍ଗରେ ଦେଖନ୍ତି ବିବୁଧା ॥
ଦୁହେଁ ହୋଇଲେ ଧରାଧରି । ମୁଣ୍ଡକୁ ମୁଣ୍ଡ ମରାମରି ॥
ହାଆରେ ହାଆ ଲଗାଇଲେ । ଦୁହେଁ ସେ ପେଲାପେଲି ହେଲେ ॥
ଭୂମିରେ ଗଡ଼ାଗଡ଼ି ହୋନ୍ତି । ମୁଖ ଦଶନେ ବିଦାରନ୍ତି ॥
ଦେହ ଲାଗିଣ ଦୁହିଙ୍କର । କାଷ୍ଠ ପାଷାଣ ହୋନ୍ତି ଚୂର ॥
ଶୋଣିତ ବହେ ଝରଝର । କରନ୍ତି ବିଚିତ୍ର ସମର ॥
କେହି କାହାକୁ ଊଣା ନୋହି । ଛାଡ଼ିଣ ଦୁହେଁ ଉଭାହୋଇ ॥
ତକ୍ଷଣେ ଗଦା ଧରି କରେ । ପୁଣ ଧାଇଁଲେ ରୋଷଭରେ ॥
ଶସ୍ତ୍ର ବୁଲାଇ ଅନ୍ତରାଳେ । ପ୍ରହାର କଲେ ଏକାବେଳେ ॥
ଶିରେ ବାଜିଣ ଗଦାଦଣ୍ଡ । ଫାଟିଲା ଦୁହିଁଙ୍କର ମୁଣ୍ଡ ॥
ଉଚେ ଛାଡ଼ିଲେ ଘୋରରଡ଼ି । ପ୍ରାଣ ଛାଡ଼ିଲେ ଢଳେ ପଡ଼ି ॥
ତାହାଙ୍କ ପଡ଼ିବାର ଦେଖି । ସୈନ୍ୟ ପଳାଇଲେ ଉପେକ୍ଷି ॥
ସ୍ୱର୍ଗେ ଦେଖିଣ ଦେବତାଏ । ଆନନ୍ଦେ ହେଲେ ଜୟେ ଜୟେ ॥
ବ୍ରହ୍ମା ସହିତେ ଦେବଗଣ । ବସିଣ ସଭା ମଣ୍ଡପେଣ ॥
ଗନ୍ଧର୍ବ ଯକ୍ଷ ବିଦ୍ୟାଧରି । ସାନନ୍ଦେ ନୃତ୍ୟ ଗୀତ କରି ॥
ହରଷ ସବୁଙ୍କର ମତି । ତିଲୋତ୍ତମାକୁ ପ୍ରଶଂସନ୍ତି ॥
କହନ୍ତି ପ୍ରଭୁ ଭଗବାନ । ହରଷ ତିଲୋତ୍ତମା ମନ ॥
ଯହୁଁ ପଡ଼ିଲେ ଦୈତ୍ୟ ବେନି । ଉଶ୍ୱାସ ହୋଇଲା ମେଦିନୀ ॥
ତା ଦେଖି ତିଲୋତ୍ତମା ନାରୀ । ରଥେ ବସିଲା ଶୀଘ୍ର କରି ॥
କନ୍ଦର୍ପ ଚୋଟାରୁ ବାହାରି । ସଙ୍ଗରେ ବସିଲା ଆଗରି ॥

---

ବିବୁଧା — ଦେବତାମାନେ
ଉଭା — ଛିଡ଼ା
ହାଆ — ଛାତି

ବିମାନ ଅନ୍ତରୀକ୍ଷେ ଗଲା । ଅମର ଭୁବନେ ମିଳିଲା ॥
ରଥୁଁ ଓହ୍ଲାଇ ବେନଜନ । ବ୍ରହ୍ମାଙ୍କୁ କଲେ ଦରଶନ ॥
ପ୍ରଣାମ କଲେ ଶତବାର । ସଧୀରେ କରନ୍ତ ଉତ୍ତର ॥
ଦେବଦେବ ପିତାମହ ଶୁଣ । ମୋତେ ଯେ ପେଷିଲେ ଆପଣ ॥
ତୁମ୍ଭ ଆଜ୍ଞାରେ ମୁଁ ଯେ ଗଲି । ଅଶୋକ ବଟିନେ ରହିଲି ॥
କାରଣ ପାଇଲେ ଅସୁରେ । ଆସି ମିଳିଲେ ଧାଷ୍ଟକାରେ ॥
ମୋତେ ପୁଚ୍ଛିଲେ କୁଳଗୋତ୍ର । ମୁଁ ତାଙ୍କୁ କହିଲି ଯାବତ ॥
ଶୁଣି ଆନନ୍ଦ ମନହେଲେ । ଘରଣୀ କରିବୁ ବୋଇଲେ ॥
ସିନ୍ଦ୍ ବୋଇଲା ନେବମୁହିଁ । ମୋର ଭାରିଯା କରିବଇଁ ॥
ତା ଶୁଣି ଉପସିନ୍ଦ୍ ଭଣି । ମୋହର ହେଉଏ ଘରଣୀ ॥
ଏସନ ବୋଲି କଳି ହୋଇ । ସଂଗ୍ରାମ କଲେ ବେନଭାଇ ॥
ବୋଇଲେ ଯେ ପାରିବ ଜିଣି । ସେହିଯେ କନ୍ୟା ନେବପୁଣି ॥
ଏମନ୍ତ ବୋଲି ଯୁଦ୍ଧ କଲେ । ଗଦା ଘାତରେ ଦୁହେଁ ମଲେ ॥
ଏବେ ସେ ଦେବକାର୍ଯ୍ୟ ହେଲା । ସବୁରି ଦୁଃଖ ନାଶଗଲା ॥
ତୁମ୍ଭଙ୍କୁ କହିବାର ପାଇଁ । ତେଣୁ ମୁଁ ଅଇଲି ଗୋସାଇଁ ॥
ଶୁଣି ସନ୍ତୋଷ କୁଶଧାରୀ । ସମସ୍ତେ ସାଧୁ ସାଧୁ କରି ॥
ତିଳୋତ୍ତମାକୁ ଧାତା ନେଲେ । ଉତ୍ତମ ଦିବ୍ୟ ସ୍ଥାନ ଦେଲେ ॥
ବୋଇଲେ ଏଠାବରେ ଥାଅ । ବିପୁଳ ସୁଖ ଭୋଗପାଅ ॥
ଚନ୍ଦ୍ର ସୂର୍ଯ୍ୟଙ୍କ ଥିବାଯାଏ । କୁଶଳେ ଥାଅ ମୋରମାଏ ॥
ଶୁଣି ରହିଲା ଅପସରୀ । ସର୍ବଦା ଦେବତନୁ ଧରି ॥
ଆଜହୁଁ ଅଛି ସ୍ୱର୍ଗପୁରେ । ପୂଜା ପାଉଛି ଜନପୁରେ ॥
ନାମ ତା ପୁରାଣେ ବଖାଣ । ଭାଷନ୍ତି ପଣ୍ଡିତ ବ୍ରାହ୍ମଣ ॥
ହସି ବୋଲନ୍ତି ଆଦିମୂଳ । ମାଘ ସ୍ନାନରେ ଏତେ ଫଳ ॥
ଶୁଣି ସୁଜନ ଜନମାନେ । ମୋ ଦୋଷ ନ ଘେନିବ ମନେ ॥
ସଂସାରେ କୀର୍ତ୍ତି ଥିବା ପାଇଁ । ପୁରାଣେ ଗୀତ କଲି ମୁହିଁ ॥
ସେ ଦୋଷ ନଧରିବ ମୋର । ଯାହା କହିଲେ ଚକ୍ରଧର ॥
ସେ କଥା କେବେ ନୋହେ ଆନ । ଭଣେ ନୃସିଂହ ଦାସ ନାନ ॥
ପାମର କୃଷ୍ଣ ଦାସ କହି । ହରି କରିବେ ମୋତେ ତ୍ରାହି ॥
ଉଦ୍ଧବେ ଜଗନ୍ନାଥେ କହେ । ଶଏ ଛଷଠି ପଦହୁଏ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ତିଳୋତ୍ତମା ଗମନେ ସିନ୍ଦ୍ ଉପସିନ୍ଦ୍ ଦୈତ୍ୟ ନାଶନେ ନାମ ବିଂଶୋଃଧ୍ୟାୟ

# ଏକବିଂଶ ଅଧ୍ୟାୟ

ବନ୍ଦଇ ଦେବୀ ସରସ୍ୱତୀ । ବିଷ୍ଣୁର ଅଟୁ ତୁ ଯୁବତୀ ॥
ଯେଣୁ ତୁ ଜଗତ ଜନନୀ । ନମସ୍ତେ ବ୍ରହ୍ମାଙ୍କ ନନ୍ଦିନୀ ॥
ତୁ ଦେବୀ ଅଯୋନି ସମ୍ଭୂତ । ତୋତହୁଁ ସର୍ବ ଶାସ୍ତ୍ରଜାତ ॥
ଶରଦ ସମ୍ପୂର୍ଣ୍ଣ ଚନ୍ଦ୍ରମା । ମୁଖକୁ ନୁହଇ ଉପମା ॥
ଭ୍ରୂଲତା ନିନ୍ଦଇ କାର୍ମୁକ । ମୋହୁଛି ତିନ ଲୋକପାକ ॥
ଚଞ୍ଚକ ରୁଚିର ଏ ଲୋଚନ । ଅଣ୍ଡ୍ରିର କୋକିଳ ବଚନ ॥
ନାସିକା ତିଳଫୁଲ ଜିଣି । ଶୋଭିତ ମୁକୁତା ବସଣି ॥
କୁନ୍ଦଲହୀର ପ୍ରାୟେ ଦନ୍ତ । ଅଧର ବଧୂଳି ସଂଜାତ ॥
କର୍ଣ୍ଣେ ତାଡ଼କା ରତ୍ନକାପ । ହରୁଛି ମୁନିଜନ ଦର୍ପ ॥
କଣ୍ଠେ ଶୋଭିତ ମୋତିହାର । ଭୂଷଣ ନାନା ଅଳଙ୍କାର ॥
ଉରଜ ପଦ୍ମଃ କୁମ୍ଭ ପ୍ରାୟେ । ଝୀନ ବସନ ଶୋଭାପାଏ ॥
ଶ୍ରୀଭୁଜେ ଶୋଭାପାଏ ଚୂଡ଼ି । ହୀରା ମାଣିକ୍ୟ ତହିଁଜଡ଼ି ॥
ଅଙ୍ଗୁଷ୍ଠି ଦଶେ ଚମ୍ପାକଳି । ହେମ ମୁଦ୍ରିକା ତହିଁଜଡ଼ି ॥
ଜାତି କୁସୁମ ପ୍ରାୟେ ଜ୍ୟୋତି । ଝଟକ ଶୋଭାପାଏ ଅତି ॥
ଉଲଟ ରମ୍ଭା ଜିଣି ଜାନୁ । ଅତି କୋମଳ ତାର ତନୁ ॥
ପସ ଦେବୀ ଚରଣେ ନୂପୁର । ଶବଦ ଅତି ମନୋହର ॥
ଶ୍ରୀହସ୍ତେ ବୀଣାଯନ୍ତ୍ର ଧରି । ବିବିଧ ରୂପେ ଗାନକରି ॥
ଯେଣୁ ମୋହିଲୁ ବିଷ୍ଣୁମନ । ତୋଷେ ସନ୍ତୋଷ ଭଗବାନ ॥
ମୁଁ ଏବେ ଜଣାଉଛି ତୋତେ । ଭ୍ରେମାତା କୃପାକର ମୋତେ ॥
କହିବ ମାଘ ମାହାତମ । ସଂସାରେ ଥିବ ମୋର ନାମ ॥
ଶାରଦା ପାଦ ପଦ୍ମ ଧ୍ୟାଇ । ନୃସିଂହ ଦାସ ସୂନୁ କହି ॥

---

କାର୍ମୁକ — ଧନୁ
ରମ୍ଭା — କଦଳୀ
ଜାତି କୁସୁମ — ଜାଇ କୁସୁମ
ରୁଚିର — ସୁନ୍ଦର
ଝୀନ — ପତଳା
ଜାନୁ — ଜଂଘ

### ଉଦ୍ଧବ ଉବାଚ

ଉଦ୍ଧବ ବେନକର ଯୋଡ଼ି । କୃଷ୍ଣ ଚରଣ ତଳେପଡ଼ି ॥
ବୋଲଇ ହୋଇ କୃତ୍ୟକୃତ୍ୟ । ଶୁଣହେ କମଳାର କାନ୍ତ ॥
ମାଘ ସ୍ନାହାନ ଧର୍ମ ଯେତେ । ଥୋକାଏ ଶ୍ରୁଣି କର୍ଣ୍ଣ ପଥେ ॥
କୋଡ଼ିଏ ଅଧା ଯହୁଁ ଗଲ୍ । କୋଡ଼ିଏ ଦିନକୁ ମୋ ହେଲ୍ ॥
ଆଉ ରହିଲ ଦଶଦିନ । ମାସକ ହୋଇବ ସମ୍ପୂର୍ଣ୍ଣ ॥
ଆଉ ଦଶଅଧା କହିଲେ । ତେବେ ସେ ପୂର୍ଣ୍ଣ ହେବଭଲେ ॥
ଗ୍ରନ୍ଥ ହୋଇବ ସମାପତ । ଶୁଣି ମୁଁ ହୋଇବ ମୁକତ ॥
ଉଦ୍ଧବ ମୁଖୁଁ ତାହା ଶୁଣି । କରୁଣା କଲେ ଚକ୍ରପାଣି ॥

### ଶ୍ରୀ ଭଗବାନୁବାଚ

ବୋଲନ୍ତି କମଳା ବଲ୍ଲଭ । ଏବେ ତୁ ଶୁଣହୋ ଉଦ୍ଧବ ॥
ମାଘ ସ୍ନାନରେ ଧର୍ମଯେହ୍ନ । ବଚନେ କେପାରିବ କହି ॥
ପୂର୍ବେ ଯେ ଦତ୍ତାତ୍ରେୟ ଋଷି । ଜାଣନ୍ତି ମାଘସ୍ନାନ ଖ୍ୟାତ ॥
କାର୍ତ୍ତିକ ବ୍ରତ ରାଜନକୁ । ସେଧର୍ମ କହିଲେ ତାହାଙ୍କୁ ॥
ଦିଲୀପ ଏଧର୍ମ ଶୁଣିଲେ । ତାହାଙ୍କୁ ବଶିଷ୍ଠ କହିଲେ ॥
ତୁ ମୋତେ ଯହୁଁ ଚନ୍ତାକଲୁ । ତେଣୁଟି ସେଧର୍ମ କହିଲୁ ॥
ପାରଲେ ମାଘସ୍ନାନ କର । କଳୁଷ ପଙ୍କରୁ ନସ୍ତର ॥
ନୋହିବ ଯମ ଦରଶନ । ଅନ୍ତେ ପାଇବୁ ସ୍ୱର୍ଗେସ୍ଥାନ ॥

### ଉଦ୍ଧବଉବାଚ

ଉଦ୍ଧବ ଶୁଣି ପଚାରଇ । ଶୁଣହେ ପ୍ରଭୁ ଭାବଗ୍ରାହୀ ॥
କୁକର୍ମ କଲେ ପ୍ରାଣୀମାନେ । ବସନ୍ତି ବୈକୁଣ୍ଠ ଭୁବନେ ॥
ପୁଣି କୁ କର୍ମ କରିଥୋକେ । ଅନ୍ତେଣ ପଡ଼ଇ ନରକେ ॥
ସେକଥା କହିବ ବୁଝାଇ । ଶୁଣିଲେ ପ୍ରତେ ଯିବମୁହିଁ ॥
ଶୁଣି ବୋଲନ୍ତି ନାରାୟଣ । ଉଦ୍ଧବ ଏକମନେ ଶୁଣ ।
ଯେଅବା ସୁଜ୍ଞାନୀ ଅଟଇ । ହୃଦରେ ହିଂସା ନ କରଇ ॥
ପରେ ପ୍ରମାଦ ନ ଚଳନ୍ତି । ଅସତ୍ୟ ମାର୍ଗକୁ ନଯାନ୍ତି ॥

---

ଅହନ୍ତା — ହିଂସା
ଭାବଗ୍ରାହୀ — ବିଷ୍ଣୁ
କମଳାବଲ୍ଲଭ — ବିଷ୍ଣୁ
କଳୁଷ — ପାପ

ସେ ପ୍ରାଣୀ ଅବହେଳେ ତରେ । ଅନ୍ତେ ବସଇ ସ୍ୱର୍ଗପୁରେ ॥
ଯାହାର କୁଟିଳ ହୃଦୟ । ସକଳ ଜୀବରେ ନିର୍ଦ୍ଦୟ ॥
ଅହଙ୍କାରବ ମନେରଖି । ନପାରେ ପରଶିରୀ ଦେଖି ॥
କରଇ ପରେ ପୀଡ଼ାମାନ । ସତ୍ୟ ନ ଭାଷଇ ବଚନ ॥
ଏମନ୍ତ ଭାବେ ଯେଉଁ ନର । ବିଅର୍ଥ ଜୀବନ ତାହାର ॥
ପର୍ବତ ସମାନେ ସୁବର୍ଣ୍ଣ । ସେ ଯେତେ ଦେଇଥିବ ଦାନ ॥
କିଅବା ଯଜ୍ଞ କରିଥାଇ । ତଥାପି ନରକେ ପଡ଼ଇ ॥
ନରକେ ଯାଇ ଯୁଗ ସାତ । ପୁଣି ସେ ହୁଅଇ ମୂକତ ॥
ଅନ୍ଧ କୁବୁଜା ଘେଣ୍ଟା ହୋଇ । ମର୍ତ୍ତ୍ୟେ ଜନ୍ମିବେ ଦେହବହି ॥
ପୂର୍ବେ ଅର୍ଜିଲ କର୍ମଦୋଷ । ସେ ଫଳ ଭୁଞ୍ଜଇ ଅବଶ୍ୟ ॥
ଏକଥା କେବେ ନୋହେଆନ । ଉତ୍ତମ ସତ୍ୟ ଏ ବଚନ ॥
ଏସନ କୃଷ୍ଣ ମୁଖୁ ଶୁଣି । ଉଦ୍ଧବ ମନେମନେ ଗୁଣି ॥
ବିସ୍ମୟ ହୋଇଣ ରହିଲ । ପୁଣିହିଁ କୃଷ୍ଣଙ୍କୁ ପୁଛିଲ ॥
ବୋଲଇ ପୁଣ ଦେବରାୟେ । ଏକଥା ଲାଗିଲ ସଂଶୟେ ॥
ସଂସାରେ ଛନ୍ତି ଯେତେଜନ । ସମସ୍ତେ ନିର୍ଗୁଣେ ବନ୍ଧନ ॥
ଆହୁରି ଜୀବଜନ୍ତୁ ଯେତେ । ହିଂସା କରନ୍ତି ସର୍ବଭୂତେ ॥
ଅହିଂସା ହୋଇଅଛି କେହୁ । ଯେଆଜ୍ଞା ଦେଲ ମହାବାହୁ ॥
ବୋଲଇ ହିଂସା କଲା ଲୋକ । ଅନ୍ତେ ପଡ଼ଇ ଘୋରନର୍କ ॥
ସମସ୍ତେ ନର୍କପାନ କରି । ଜନମ ହୋଇ ଦେହଧରି ॥
ଘେଣ୍ଟା କୁବୁଜା ଅନ୍ଧ ହୋଇ । ଏଣୁ ସେ ଭ୍ରାନ୍ତି ଯେ ଲାଗଇ ॥
ହିଂସାତ ଅଛି ସର୍ବଦେହେ । ସର୍ବେତ ଅନ୍ଧ କୁଜା ନୋହେ ॥
ଏକଥା କହ ନାଥ ମୋତେ । ଶୁଣିଲେ ଯିବଇଁ ପରତେ ॥
ହସି ତହନ୍ତି ଭଗବାନ । କହିବା ଉଦ୍ଧିର ବିଧାନ ॥
ଅନ୍ୟ ହିଂସାକୁ ଅନ୍ୟଦେଷ । ବିରୋଧ ଅଛଇ ଅବଶ୍ୟ ॥
ଯେଅବା ବଡ଼ ଦୋଷକରି । ଘୋଷେଣ ବିପ୍ରଙ୍କୁ ସଂହାରି ॥
ଲାଗଇ ବ୍ରହ୍ମହତ୍ୟା ଦୋଷ । ଅନ୍ତେ ପ୍ରାପତ ନର୍କବାସ ॥
ଅପାର କାଳେ ପୁଣ ସେହି । ଜାତ ହୁଅଇ ଅନ୍ଧହୋଇ ॥

---

ସଂଶୟ — ସନ୍ଦେହ    ସଂହାରି — ନଷ୍ଟ
ଅପାର ... ଅଶେଷ

ଯେଅବା ଅହଲ୍ୟା କରଣ । କରଇ ସ୍ତ୍ରୀ ହତ୍ୟାପୁଣ ॥
ସେ ପୁଣି ମହାପାପୀ ହୋଇ । ପଡ଼ଇ କୁମ୍ଭୀପାକେ ଯାଇ ॥
ନରକେ ବେନି ଯୁଗଯାଏ । ଅନ୍ଧ ହୋଇଣ ଜନ୍ମହୁଏ ॥
ତହ ଅନ୍ତେଣ ସେହୁ ପ୍ରାଣୀ । ଜନ୍ମରୁ ଗ୍ରେଷ୍ଠା ହୁଏ ପୁଣି ॥
ଯେ ପ୍ରାଣୀ ଅହଙ୍କାର କରି । ପାପ ପୁଣ୍ୟକୁ ନ ବିଚାରି ॥
ଜାଣଇ ସ୍ତମ୍ଭନ ଉଚ୍ଚାଟ । କରଇ ନାନା ନଟକୂଟ ॥
ଚଣ୍ଡି ବେତାଳ ବୀରପେଷି । ଗୁପତେ ମନୁଷ୍ୟକୁ ଧ୍ୱଂସି ॥
ସେ ଲୋକମାନେ ବଡ଼ଦୋଷୀ । ଅନ୍ତେ ହୁଅନ୍ତି ନର୍କବାସୀ ॥
ପୁଣିହିଁ ଯୁଗର ଅନ୍ତରେ । ଶୃଗାଳ ରୂପେ ଜାତକରେ ॥
ପୋଷଇ ଅନ୍ନ ବସ୍ତ୍ର ଦେଇ ! ତନୟ ପ୍ରାୟେ ଯେ ପୋଷଇ ॥
ପୁତ୍ରକୁ ବୋଲେ ନାମବାଛି । ଭୃତ୍ୟ ତାକୁ ନବୋଲିବୁ କିଛି ॥
ଏମନ୍ତ ଭାବେ ଯେ ଗୋସାଇଁ । ସେ ପ୍ରାଣୀ ବୈକୁଣ୍ଠେ ବସଇ ॥
ଏକଥା ଧ୍ରୁବ ବୋଲି ଜାଣ । ବେଦ ପୁରାଣେ ଏ ବଖାଣ ॥
ଶୁଣନ୍ତୁ ଆଉ କଥା ଏକ । ଯେଅବା ଅଟଇ ଧାର୍ମିକ ॥
ବିଷ୍ଣୁରେ ବଢ଼ଇ ଭକତି । ଚଞ୍ଚଳ ନକରଇ ମତି ॥
ସର୍ବଦା ଅନୁରାଗ ବଢେ । ଦାରୁଣ ଶତ୍ରୁ କେବେ ନୋହେ ।
ଯେପରୀଡ଼ାମାନ ଅହଙ୍କାର । ହୃଦେ ନଥାଇ ପରାପର ॥
ସକଳ ଜୀବେ ସମଦୃଷ୍ଟି । କରନ୍ତେ ସାଧୁସଙ୍ଗ ଭେଟି ॥
ଅନ୍ତେ ପାଆନ୍ତି ସ୍ୱର୍ଗ ଠାବ । ଏକଥା ସତ୍ୟଟି ଉଦ୍ଧବ ॥
ଯେ ନିତ୍ୟ କର୍ମ ବିପ୍ରଗୁଢ଼ । କରଣେ ଅବିଦ୍ୟାରେ ପଡ଼ ॥
ନକରେ ଯାଗ ତପମାନ । ଲୋଭେଣ ଦେଉଥାନ୍ତି ଦାନ ॥
ଶ୍ରାଦ୍ଧ ନକରେ ବେଳଜାଣି । ହରଇ ଶୂଦ୍ରର ଘରଣୀ ॥
ଅଗ୍ନିକ ପୂଜା ନକରଇ । ବେଦ ପୁରାଣ ନ ଜାଣଇ ॥
ଏମନ୍ତ ଭାବେ ସେ ବ୍ରାହ୍ମଣ । ଚଣ୍ଡାଳ ସଙ୍ଗେ ତାକୁ ଜାଣ ॥
ଚଉଦ ଜନ୍ମ ପରିଯନ୍ତେ । ନରକେ ପଡ଼ଇ ସେ ଅନ୍ତେ ॥
ଯେଅବା କ୍ଷତ୍ରୀ ବୃତ୍ତି ବନ୍ଧ । ରଣେ ପଶଇ ଆଗହୋଇ ॥
କଶତ ପ୍ରକୃତ ନଧରେ । ସମ୍ମୁଖେ ମିଳି ଯୁଦ୍ଧକରେ ॥
ଯୁଝଇ ଆଗଭର ହୋଇ । କଅବା ଆପଣେ ମରଇ ॥
ଅନେକ ଧର୍ମ ହୋଏ ଏଣେ । ସ୍ୱର୍ଗେ ବସଇ ତତକ୍ଷଣେ ॥

ଶୁଣ ଉଦ୍ଧବ ସତ୍ୟବାଣୀ । ଯେ ଅବା ଧନବନ୍ତ ପ୍ରାଣୀ ॥
ତାହାଙ୍କୁ ନିଜ ଜନମାନେ । ବାଞ୍ଛିତ ଆଶା କରିମନେ ॥
କରନ୍ତି ସେ ପ୍ରାର୍ଥନା ଆସି । ଦେବା ବୋଲଇ ମିଛେ ହସି ।
ସେ ମାୟା ନଜାଣି ମନୁଷ୍ୟେ । ଭୂଲିଣ ମଲେ ପ୍ରତେ ଆଶେ ॥
ଯାଚନ୍ତି ସତ୍ୟ ପ୍ରାପ୍ୟେମଣି । ସେମୂଢ଼ ନ ଜାଣଇ ପୁଣି ॥
ଅନେକ କରିଥାଇ ଆଶ । ନପାଇ ହୁଅଇ ନିରାଶ ॥
ତେଣୁ ଅଶେଷ ପାପପାଇ । ଅନ୍ତେ ପଡ଼ଇ ନର୍କେ ଯାଇ ॥
ଯେ ମାଘ ସ୍ନାହାନ କରଇ । ପାପ ଆତ୍ମାକୁ ଉଦ୍ଧାରଇ ॥
ସେ ପ୍ରାଣୀ ମହା ଭାଗ୍ୟବନ୍ତ । ତା ଧର୍ମକେ କରିବ ଅନ୍ତ ॥
ସକଳ ପାପ ହୋଏକ୍ଷୟ । ଅନ୍ତେ ନଥାଇ ଯମଭୟ ॥
ଯାଇ ବସଇ ସ୍ୱର୍ଗପୁରେ । ସୁଖେ ଅମୃତ ଭୋଗକରେ ॥
ଶୁଣ ଉଦ୍ଧବ ହେତୁ କରି । ତୋଆଗେ କହିଲୁ ବିସ୍ତାରି ॥
ଜାଣ ଏ ପୁସ୍ତକର ନାମ । ଅଟଇ ମାଘ ମହାତମ ॥
ପାମର କୃଷ୍ଣଦାସ କହେ । ଏକାଣ ଉଣାଇଣ ହୁଏ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ପାପପୁଣ୍ୟ ଚରିତ କଥନେ ନାମ ଏକବିଂଶୋଃଧ୍ୟାୟ

—×—

# ଦ୍ୱାବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଭଗବାନ । ଶୁଣ ଉଦ୍ଧବ ପାପପୁଣ୍ୟ ॥
ଯେଅବା ଧର୍ମ ବାଞ୍ଛା ଅର୍ଥେ । ଭାବନା କରଥାଇ ଚିତ୍ତେ ॥
ବୋଲଇ କର୍ମ ମୋର ହାନ । ପୂର୍ବେ ନକଲି କିଛି ପୁଣ୍ୟ ॥
ତେଣୁକି ଏ ଶାସ୍ତି ପାଇଲି । ଏଜନ୍ମେ ଦରିଦ୍ର ହୋଇଲି ॥
ଏବେ ମୁଁ କବୁଦ୍ଧି କରିବି । କେମନ୍ତେ ସଂସାରୁ ତରିବି ॥
ଦେବାକୁ ଶକ୍ୟ ମୋର ନାହିଁ । କୁଧର୍ମ ଆଚରିବି ମୁହିଁ ॥
ପୁଣିହିଁ କରଇ ବିଚାର । କଥାଏ ଅଛି ପ୍ରତିକାର ॥
ଗୋରୁଙ୍କୁ ଘାସ ଦେବିନିତ । ତେଣୁ ପାଇବି ସଦଗତି ॥
ଏମନ୍ତ ବିଚାରି ମନରେ । ସୁରଭି ଠାରେ ଦୟାକରେ ॥
ନାନା ପ୍ରକାର ଘାସ ପାଣି । ନର୍ଗ କରଇ ନିତ୍ୟଆଣି ॥
ପର ଆପଣାର ନବୋଲି । ଧେନୁ ମୁଖରେ ଦେଇମେଲି ॥
ଏମନ୍ତ ଭାବେ ଯେ ହୁଅଇ । ତାହାର ଧର୍ମ କେହୁପାଇ ॥
ଖଣ୍ଡଇ ସର୍ବପାପ ତାର । ଭବସାଗରୁ ହୋଏ ପାର ॥
ଯାଇ ବସଇ ସ୍ୱର୍ଗପୁରେ । ସୁଖେ ଅମୃତ ଭୋଗକରେ ॥
ଶୁଣ ଉଦ୍ଧବ ଜ୍ଞାନ ହେତୁ । ତୋ ଆଗେ କହୁଅଛି ତତ୍ତ୍ୱ ॥
ଯେ ପ୍ରାଣୀ ଜ୍ଞାନ ମନେକରେ । ମହାଦେବଙ୍କ ଦ୍ରବ୍ୟ ହରେ ॥
ସେ ଲୋକମାନେ ମହାପାପୀ । ଯମ ଦଣ୍ଡଇ ଅଙ୍ଗଷେପି ॥
ପୁଣି ତାହାଙ୍କୁ ଘେନିଯାନ୍ତି । ନରକେ ନେଇଣ ପକାନ୍ତି ॥
ବ୍ରହ୍ମାଙ୍କ ଦିବସେକ ଯାଏ । ସେ ପ୍ରାଣୀ ନର୍କେ ପଡ଼ିଥାଏ ॥
ଦଶ ସହସ୍ର ଯୁଗ ଗଲେ । ତେବେ ସେ ମୋକ୍ଷ ହୁଏଭଲେ ॥
ଯେଲୋକ ଧର୍ମକୁ ବିଚାରି । ଯାଆନ୍ତି ଗଙ୍ଗା ତୀର୍ଥ କରି ॥
ଗଙ୍ଗାରେ ସ୍ନାହାନ କରଇ । ସେଠାରେ ପିଣ୍ଡଦାନ ଦେଇ ॥

---

ଧେନୁ — ଗାଈ    ଶାସ୍ତି — ଦଣ୍ଡ
ଦିବସେକ — ଦିନେ    ଶୋଣିତ — ରକ୍ତ

ହରଇ ସକଳ ଦୁରିତ । ପୁଣ୍ୟତା କେ କରିବ ଅନ୍ତ ॥
ତାହାର ଶତେକ ପୁରୁଷ । ବସନ୍ତି ସ୍ୱର୍ଗରେ ଅବଶ୍ୟ ॥
ଯେ ଗଙ୍ଗାଯାଇ ନପାରିବ । ମେ ପ୍ରାଣୀ ଏମନ୍ତ କହିବ ॥
ସ୍ନାହାନ କରୁ ଯହିଁ ତହିଁ । ପ୍ରଥମେ ଜଳେ ଉଭାହୋଇ ॥
ଭଗୀରଥି ଗଙ୍ଗା ବୋଲିଣ । ସ୍ନାହାନ କରିବ ଡାକିଣ ॥
ଏମନ୍ତେ ଡାକ ତିନିବେଳେ । ସ୍ନାହାନ କରି ଯେବାଜଳେ ॥
ଗଙ୍ଗା ସ୍ନାହାନ ଫଳପାଇ । ସେ ପ୍ରାଣୀ ମୁକତ ହୁଅଇ ॥
ଯେଅବା ରବିବାର ଦିନ । ଆମିଷ କରଇ ଭୋଜନ ॥
ସେପ୍ରାଣୀ ମହା ପାପୀ ହୋଇ । ଅନ୍ତେ ବହୁତ ଦଣ୍ଡପାଇ ॥
ଯମ ପାଦରୁ ମୁଜ ଶୋଣି । ଅପମାନ କରେ ସେହୁପ୍ରାଣୀ ॥
ବୋଲନ୍ତି ପ୍ରଭୁ ଶିରିବତ୍ସ । ଏକଥା ନୁହଇଟି ମିଛ ॥
ଶୁଣ ଉଦ୍ଧବ ଏକମନେ । ମର୍ତ୍ତ୍ୟମଣ୍ଡଳେ ଯେଉଁଜନେ ॥
ପାପକୁ ଥାନ୍ତି ଭୟକରି । ନରତେଥାନ୍ତି ପ୍ରାଣେଡରି ॥
ଧର୍ମ କରନ୍ତି ବହୁତର । କୂପ ପୋଖରୀ ଖୋଳାବନ୍ତି ॥
ଅନେକ ଧର୍ମ ହୋଏତାର । ଅନ୍ତେ ବସଇ ସ୍ୱର୍ଗପୁର ॥
ଯେବଣ ପ୍ରାଣୀ କାମବଶେ । ଚିତ୍ତ ବଳାଇ ରନ୍ତିରସେ ॥
ଯାହା ସଙ୍ଗତେ କରେରନ୍ତି । ମଦନ ରସେ ଥାଇମାତି ॥
ତହିଁ ହୁଅଇ ଦୋଷ ଯେତେ । ସଂକ୍ଷେପି କହିବା ତା ତୋତେ ॥
ଆଉ କଥାଏ ଏବେ ଶୁଣ । ବିବେକୀ ଜନଙ୍କର ଗୁଣ ॥
ହିଂସା ବୈରାଗ୍ୟ ପରିହରି । ସାତ୍ତ୍ୱିକ ଗୁଣେ କର୍ମକରି ॥
ତପ କରଇ ଧର୍ମଅର୍ଥେ । ଦିଅଇ ଅନ୍ନଛନ୍ତ ଯେତେ ॥
ବିପ୍ରେ ଦିଅଇ ବହୁଦାନ । ତେଣୁ ଲଭଇ ମହାପୁଣ୍ୟ ॥
ଏମନ୍ତ ଭାବେ ଯାଗକଲେ । ଅନ୍ତେ ଲଭଇ ପୁଣ୍ୟଭଲେ ॥
ଏଆଦି ପାପ ପୁଣ୍ୟ ଯେତେ । ସବୁ କହିବା ତୋ ଅଗ୍ରତେ ॥
ଯେବା ଉଲଗ୍ନ ହୋଇଥାନ୍ତି । ଜଳର ଭିତରେ ପଶନ୍ତି ॥
ମହା ପାତକୀ ସେହୁନର । ବିଅର୍ଥ ସବୁ କର୍ମତାର ॥
ଅଳପେ ବହୁ ପାପଅଛି । ଯମ ଦିଅଇ ତାକୁ ଶାସ୍ତି ॥
ଏକଥା ଅଟଇ ପ୍ରମାଣ । ସମସ୍ତ ଅଟଇ ଭିଆଣ ॥
ବିଷ୍ଣୁ ଭକତ ଯେଉଁଜନ । ମୋପାଦେ ନିବେଶଇ ମନ ॥

ଉଲଗ୍ନ — ଲଙ୍ଗଳା

ଚିତ୍ତ ତନସ୍ଥ ଅର୍ଥ ପ୍ରାଣ । ସମସ୍ତ ମୋରେ ସମର୍ପିଣ ॥
ମୋ ନାମ ନିତ୍ୟହେଁ ଧରଇ । ମୋ ବିନୁ ଅନ୍ୟ ନ ଜାଣଇ ॥
ମୋରୂପ ଦେଖଇ ନୟନେ । ମୋର ମହିମା ଶୁଣେକର୍ଣ୍ଣେ ॥
ଛପନ କୋଟି ଜୀବଠାରେ । ସର୍ବଦା ଉପକାର କରେ ॥
ଏସନ ଭାବେ ଯେଉଁ ଲୋକ । ସେ ପ୍ରାଣୀ ମୋତହୁଁ ଅଧିକ ॥
ନିଷ୍ପାପ ହୋଇ ତାର ଗାତ୍ର । କଳୁଷ ଛୁର କେତେ ମାତ୍ର ॥
ସେ ଯମ ଲୋକକୁ ନଯାଇ । ଅନ୍ତେଣ ମୋ ଅଙ୍ଗେ ମିଶଇ ॥
ଅଶେଷ ମହିମା ମୋହୋର । ମୋତେ ସେବନ୍ତି ସୁରନର ॥
ଉଦ୍ଧବ ମୋର ପାଦେସେବ । ଅନ୍ତେ ପାଇବୁ ସ୍ୱର୍ଗଠାବ ॥
ଏ ଭବ ତଳେ ଦେହବହି । ଯେହର ନାମ ନ ଭାବଇ ॥
କର୍ଣ୍ଣେ ନଶୁଣେ ମୋର ଗୀତ । ନକରେ ଏକାଦଶୀ ବ୍ରତ ॥
ତାହାକୁ ମନୁଷ୍ୟେ ନଗଣ । ଜୀବ ଥିବାର ଅକାରଣ ॥
ସେ ପ୍ରାଣୀ ରାକ୍ଷସର ସରି । ନପାରେ ଭବଜଳୁ ତରି ॥
ବହୁତ ଯମଦଣ୍ଡ ପାଇ । ପଡ଼ଇ ଘୋର ନର୍କେ ଯାଇ ॥
ଆହୁରି କଥାଏ କହିବା । ଯେକରେ ତୁଳସୀଙ୍କ ସେବା ॥
ତାପୁଣ୍ୟ କେ କରିବ ଲେଖା । ବିଷ୍ଣୁ ହୁଅନ୍ତି ତାର ସଖା ॥
ତୁଳସୀ ଥାଇ ଯେଉଁଠାରେ । ତୀର୍ଥେ ସେବନ୍ତି ସେ ସ୍ଥାନରେ ॥
ତୁଳସୀଠାରେ ମୋର ଶ୍ରଦ୍ଧା । ପ୍ରତ୍ୟକ୍ଷେ ଅଟଇ ସେ ସିଦ୍ଧା ॥
ତୁଳସୀ ବନେ ବାସ ମୋର । କ୍ଷଣେହେଁ ନୁହଇ ଅନ୍ତର ॥
ତୁଳସୀ ମୂଳେ ଗଙ୍ଗାଥାଇ । ଶାଖାର ଅଗ୍ରେ ବିଜେମୁହିଁ ॥
ପତ୍ରେ ସକଳ ଯଜ୍ଞେଥାନ୍ତି । ଜଟାରେ ଈଶ୍ୱର ପାର୍ବତୀ ।
ଯେଭାବ ଅଟଇ ସେ ତରୁ । କେ ତା ମହିମା ଅନ୍ତକରୁ ॥
ଯେଅବା ଧର୍ମ ବାଞ୍ଛା କରି । ପ୍ରଭାତୁ ନିତ୍ୟକର୍ମ ସାରି ॥
ତୁଳସୀ ଦେବୀଙ୍କି ସେବଇ । ପୂଜାର ନାନା ଦ୍ରବ୍ୟଦେଇ ॥
ସେ ବୃକ୍ଷେ ଯେତେ ପତ୍ରାବଳୀ । ବିନା କାରଣେ ଯେବା ତୋଳି ॥
ଯେବା ତୋଳିବ ଅକାରଣେ । ଅନେକ ଦୋଷ ହୋଏ ତେଣେ ॥
ତୋଳିବ ବିଷ୍ଣୁ ପ୍ରୀତି ଅର୍ଥେ । ବିରୋଧ ନ ଲାଗଇ ଏଥେ ॥
ବୃକ୍ଷ ନଛୁଇଁ ରାତ୍ରକାଳେ । ଅବଜ୍ଞା ନ କରିବ ଡାଳେ ॥
ଏଆଦି ବିଧିମତେ ଯେତେ । ଅର୍ଚ୍ଚନା କରି ଦୃଢ଼ଚିତ୍ତେ ॥

---

ଅର୍ଚ୍ଚନା — ପୂଜା

| | | | |
|---|---|---|---|
| ଏହି ପ୍ରକାରେ ପ୍ରଭୁଦନ | । | ତୁଳସୀ ପୂଜେ ଯେଉଁଜନ | ॥ |
| ଯେତେ ପାତକ କରିଥିଲେ | । | ଖଣ୍ଡଇ ତୁଳସୀ ସେବଲେ | ॥ |
| ଦୋଷୀ ହୋଇଥିଲେ ସ୍ତ୍ରିୟ | । | ତୁଳସୀ ସେବଲେ ନସ୍ତରି | ॥ |
| ବୈକୁଣ୍ଠେ ବସଇ ନଷ୍ଟଓପୁ | । | ଏକଥା କେବେ ଆନନୋହେ | ॥ |
| ତୁଳସୀ ଦେବୀଙ୍କ ମହିମା | । | ଅନ୍ତ ନପାନ୍ତି ଦେବବ୍ରହ୍ମା | ॥ |
| ଯହିଁ ତୁଳସୀ ଥାଇ ଜାଣ | । | ତହିଁ ବିଜୟ ନାରାୟଣ | ॥ |
| ନମିଷେ ନ ପାରଇ ମୁକ୍ତି | । | ତାସଣ ଅଙ୍ଗେ ବହିଅଛି | ॥ |
| ସେ ପତ୍ର ଯାହା ନ ପଡ଼ଇ | । | ସେଦ୍ରବ୍ୟ ଅମେଧ୍ୟ ଅଟଇ | ॥ |
| ମୁଁ ତାହା ନକରଇ ଗ୍ରାସ | । | ଅମେଧ୍ୟ ଦ୍ରବ୍ୟ ମୋତେ ବିଷ | । |
| ଥୋକାଏ କଥା ନ ଜାଣନ୍ତି | । | ତୁଳସୀ ଦ୍ୱାରେ ନ ଥାପନ୍ତି | ॥ |
| ରୋପିଣ ନ ବଢ଼ାନ୍ତି ଟାଣି | । | ଧର୍ମ ନ କରନ୍ତି ସେ ପ୍ରାଣୀ | ॥ |
| ବସ୍ତ୍ର ପାଲଟି ନପୂଜନ୍ତି | । | ବିଅର୍ଥେ ପତ୍ରକୁ ଛିଣ୍ଡାନ୍ତି | ॥ |
| କରନ୍ତି ନାହିଁ ସେବାଧର୍ମ | । | ସେଲୋକ ମହାପାପୀ ସମ | ॥ |
| ତୁଳସୀଠାରେ କଲେ ମାୟା | । | ସେପ୍ରାଣୀ ମୋହରେ ଦୋରେହା | ॥ |
| ତାହାଙ୍କୁ ନାହିଁ ସଦଗତି | । | ଅନ୍ତେ ଅନେକ ଦଣ୍ଡପାନ୍ତି | ॥ |
| ଏକଥା କେ କରଇ ଆନ | । | ଧ୍ରୁବ ଏ ଶ୍ରୀମୁଖ ବଚନ | ॥ |
| ଉଦ୍ଧବ ଏବେ ହେତୁକର | । | ତୁଳସୀ ସେବଣ ନସ୍ତର | ॥ |
| ତୁଳସୀ ବଲ୍ଲଭ ଚରଣେ | । | ପାମର କୃଷ୍ଣଦାସ ଭଣେ | ॥ |
| ଉଦ୍ଧବେ କହିଲେ ମୁରାରି | । | ଏ ଅନେଶ୍ୱତ ପଦସରି | ॥ |

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ପାପପୁଣ୍ୟ କଥନେ ନାମ ହାବିଂଶୋଽଧ୍ୟାୟ

—X—

ନମିଷେ — ଅଳ୍ପ    ତୁଳସୀ ବଲ୍ଲଭ — କୃଷ୍ଣ

# ତ୍ରୟୋବିଂଶ ଅଧ୍ୟାୟ

### ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଆନନ୍ଦକନ୍ଦ । ଶୁଣ ଉଦ୍ଧବ ଭଲମନ୍ଦ ॥
ଅନେକ ପୁଣ୍ୟ କରିପୂର୍ବେ । ମାନବ ଦେହ ପାଇ ଏବେ ॥
ଦୁର୍ଲ୍ଲଭ ମନୁଷ୍ୟ ଶରୀର । ଜୀବଙ୍କ ମଧ୍ୟେ ଅତିସାର ॥
ଏ ଦେହେଁ ସମସ୍ତ ଜାଣଇ । ମାୟାରେ ପଡ଼ି ଭ୍ରମୁଥାଇ ॥
ସୁକର୍ମ ଅଟଇ ଯାହାର । ମିଳଇ ଅମୃତ ଆହାର ॥
ସୁଗନ୍ଧ କର୍ପୂର ଚନ୍ଦନ । ଅଙ୍ଗରେ କରଇ ଲେପନ ॥
ପାରି ଧାବନ ପୀତବାସ । କେଶେ ରଞ୍ଜଇ ଦିବ୍ୟରସ ॥
ଗୀତ ନୃତ୍ୟରେ ଭୋଳମତ୍ତ । କାମିନୀ ସଙ୍ଗେ ଥାଇମତ୍ତ ॥
ଧନ ସଞ୍ଚୟେ ଦେଇମନ । କଦାହିଁ ନ କରଇ ପୁଣ୍ୟ ॥
ମୋତେ ଭଜଣ ନ ପାରଇ । ଗନ୍ଧର୍ବ ଗ୍ରାମ୍ୟେ ଭ୍ରମୁଥାଇ ॥
ଏମନ୍ତ ଭାବେ ଯେଉଁ ଜନ । ବିଫଳ ତାହାର ଜୀବନ ॥
ଅନ୍ତେ ପଡ଼ଇ ତମଘୋରେ । ଜନ୍ମଇ ବୈରାଣୀ ଯୋନିରେ ॥
ଯେଅବା ଦରିଦ୍ର ଅଟଇ । ତାହାକୁ କ୍ଷଣେ ସୁସ୍ଥ ନାହିଁ ॥
ନମିଳେ ଅନ୍ନବସ୍ତ୍ର ଧନ । ନରତେ ଭ୍ରମୁଥାଇ ମନ ॥
କୁଟୁମ୍ବ ପୋଷିବାର ଆଶେ । ଭ୍ରମଇ ରଜନୀ ଦିବସେ ॥
ମୋନାମ ନ ଧରଇ ମୁଖେ । ଦିନ ବଞ୍ଚଇ ଦୁଃଖ ସୁଖେ ॥
ଦେବାକୁ ନଥାଇ ଶକତ । ବିରସେ ଖେଦକରେ ମତ ॥
ଏମନ୍ତ ଭାବେ ଯେଉଁ ଜନ । ସେପ୍ରାଣୀ ତରିବ କେସନ ॥
କଥାଏ ଅଛି ପ୍ରତିକାର । କହିବା ତହିଁର ବିଚାର ॥
ସେ ଯେବେ ଏମନ୍ତ କରିବ । ଧର୍ମ କୀରତି ବିସ୍ତରିବ ॥
ଗେପି ପାଳଲେ ପାଞ୍ଚବର । ତେବେ ହୋଇବ ସବୁପାର ॥
ନୋହିଲେ ଅନ୍ୟପାର ନାହିଁ । ସ୍ୱରୂପ କହୁଅଛି ମୁହିଁ ॥

### ଉଦ୍ଧବଉବାଚ

ଉଦ୍ଧବ ଯୋଡ଼ି ବେନିପାଣି । କୃଷ୍ଣକୁ ପଚାରଇ ପୁଣି ॥
ହେ ପ୍ରଭୁ ପାଞ୍ଚବର କଳ । ମୋତେ ତା କହିବା ସଂକ୍ଷେପି ॥

ହସି କହନ୍ତି ଦୟାନିଧି । କହିବା ପାଣ୍ଡବର ବିଧି ॥
ବଟ ଅଶ୍ୱତ୍ଥ ବୃକ୍ଷ ଦୁଇ । ରୋପିଲେ ଭଲସ୍ଥାନେ ନେଇ ॥
ତିନ୍ତୁଳି ଦଶବୃକ୍ଷ ନେବ । ସେଠାରେ ନେଇ ଲଗାଇବ ॥
ନିମ୍ବର ବୃକ୍ଷେକ ନେଇଣ । ରୋପିବ ଯତନ କରିଣ ॥
ଅଁଳା ଚନବୃକ୍ଷ ନେଇ । ଯତନେ ଲଗାଇବ ତହିଁ ॥
ଆବର ବେଲବୃକ୍ଷ ତିନ । ସେଠାରେ ଲଗାଇବ ପୁଣି ॥
ଏହାକୁ ବୋଲି ପାଣ୍ଡବର । ଫେଡ଼ି କହିଲେ ଚକ୍ରଧର ॥
ଏତେ ବୃକ୍ଷକୁ ଠୁଳ କରି । ଯଦ୍ୟପି ଲଗାଇଣ ପାରି ॥
ରୋପିବ ହେଳା ନକରିବ । ଅନେକ ଯତ୍ନେ ପାଳିଥିବ ॥
ଯଜ୍ଞ କରିଣ ଫଳଯେତେ । ବୃକ୍ଷ ରୋପିଲେ ଫଳତେତେ ॥
ସକଳ ଦୁରିତ ନାଶଇ । ସେ ପ୍ରାଣୀ ବୈକୁଣ୍ଠେ ବସଇ ॥
ଏତେକ କରି ନ ପାରିଲେ । ଆଉ କଥାଏ ଶୁଣ ଭଲେ ॥
ବଟଅଶ୍ୱତ୍ଥ କବାଥିବ । ବୃକ୍ଷ ଗୋଟିଏ ରୋପିବ ॥
ନେଇ ରୋପିବ ବାଟପାଶେ । ଯତ୍ନ କରିବ ଧର୍ମଆଶେ ॥
ତେଣୁ ଥୋକାଏ ଧର୍ମହୋଇ । ଅନ୍ତେ ଯମକୁ ନଭେଟଇ ॥
ଏକଥା କେବେ ନୁହେ ମିଛ । ପାରିଲେ ଲଗାଅ ତୁ ବୃକ୍ଷ ॥
ବୃକ୍ଷ ରୋପିଲେ ଯେତେଫଳ । ତୋଆଗେ କହିବା ସକଳ ॥
କେଅବା ମୂର୍ଖପଣ କରି । ଧର୍ମ ଅଧର୍ମ ନ ବିଚାରି ॥
ଅମାବସ୍ୟା ସଂକ୍ରାନ୍ତି ଦିନ । ତଇଳ ଲେପନ୍ତି ସେ ପୁଣ ॥
ଏଥେ ଯେ ଭକ୍ଷଇ ଆମିଷ । ତେଣେ ଲଭନ୍ତି ମହାଦୋଷ ॥
ସେ ଲୋକମାନେ ମନ୍ଦଭାଗୀ । ହୁଅନ୍ତି ଆରଜନ୍ମେ ରୋଗୀ ॥
ଏକଥା ନୁହେ ଆନକରି । ଉଦ୍ଧବ ଥାଅ ମନେଧରି ॥
ଏକ କଥାଏ ଏବେ ଶୁଣ । କହିବା ଶାଳଗ୍ରାମ ଗୁଣ ॥
ଶାଳଗ୍ରାମ ଥାଇ ଯାଘରେ । ତାହା ଯେ ନିତ୍ୟ ପୂଜା କରେ ॥
ଆପଣେ ପୂଜଇ ପୂଜାଇ । ଅର୍ଚ୍ଚନା ପୂଜା କରୁଥାଇ ॥
ସେ ଗୃହ କରଇ ପବିତ୍ର । ଆରୋଗ୍ୟ ହୁଏ ତାର ଗାତ୍ର ॥
ବହୁତ ଧନଜନ ହୋଇ । ଯାହା ବାଞ୍ଛିତ ତାହାପାଇ ॥
ଅନ୍ତେ ବସଇ ସ୍ୱର୍ଗଆଳ । ଶାଳଗ୍ରାମର ଏତେଫଳ ॥
ଯେଅବା ଖାଇବା ଲବଧେ । ଆମିଷ ଲୋଭେ ମନସଧେ ॥

---

ଅପ୍ରମିତ — ବହୁତ    ଅଧୋମୁଖ — ନମ୍ରମୁଖ

ମୃଗ ବରାହ ଶେଣ୍ଢ ମୀନ । ସବରେ ଭକ୍ଷନ୍ତ ଏମାନ ॥
ସେ ପ୍ରାଣୀ ଚଣ୍ଡାଳରେ ପର । ତା ଦୋଷ କହିଲେ ନସରି ॥
ଅନ୍ତରେ ନାହିଁ ତାର ସୁସ୍ଥ । ଯମ ଦଣ୍ଡଙ୍କୁ ଅପ୍ରମିତ ॥
ଯେଅବା ଜ୍ଞାନବନ୍ତ ଜନେ । ଧର୍ମ ବାଞ୍ଛିତ କରେ ମନେ ॥
ଉତ୍ତମ ବିପ୍ରଙ୍କୁ ଦେକ୍ଷଣ । ପଣ୍ଡିତ ହୋଇ ତା ପାଦେଣ ॥
ଦିଅଇ ଅଧୋମୁଖ ଦାନ । ତେଣେ ଲଭଇ ମହାପୁଣ୍ୟ ॥
ଉତ୍ତମ ଗତି ପାଇଅନ୍ତେ । ବୈକୁଣ୍ଠେ ବସଇ ନିଶ୍ଚିନ୍ତେ ॥
ବୋଲନ୍ତି ପ୍ରଭୁ ଭାବଗ୍ରାହୀ । ଆହୁରି କଥାଏ ଅଛଇ ॥
ତୋଆଗେ କହିବା ବିସ୍ତାରି । ଶୁଣନ୍ତୁ ମନ ସ୍ଥିର କରି ॥
ଯେବା ଯାହାକୁ ଇଚ୍ଛାକରେ । କରଇ ପ୍ରାର୍ଥନା ତାହାରେ ॥
ଦାତା ଯେ ଦେବା କରିଥାଇ । ତାହାର ଦେବା ଯେ ଭଙ୍ଗଇ ॥
ସେ ଲୋକ ମହାପାପୀ ହୁଏ । ଅନ୍ତେ ଦଣ୍ଡଇ ଜନ୍ତୁରାୟେ ॥
କୋଟୀଏ ଜନ୍ମ ପାପୀ ସେହି । ନରକେ ପଡ଼ିଥାଏ ଯାଇଁ ॥
ଅପାର କାଳେ ମୋକ୍ଷ ହୁଏ । ଏକଥା କେବେ ଆନନୁହେଁ ॥
ଯେକରେ ଏକାଦଶୀ ବ୍ରତ । ମୋପାଶେ ନିବେଶିଣ ଚିତ୍ତ ! ॥
ଜଳହିଁ ଆହାର ନକରେ । ମୋନାମ ହୃଦପଦ୍ମେ ଧରେ ॥
ଅନିଦ୍ରା ହେବ ରାତ୍ରକାଳେ । ନୟନ ନବୁଜିବ ତାଳେ ॥
ଏମନ୍ତ ଭାବେ କଲେବ୍ରତ । ବୈକୁଣ୍ଠ ହୁଅଇ ପ୍ରାପତ ॥
ଏକଥା ମୂଢେ ନଜାଣନ୍ତି । ଥୋକାଏ ମୂଢ଼ପଣେ ଥାନ୍ତି ॥
କହନ୍ତି ମନୋହର ବାନା । ମୋନାମ ନକରି ଭଜନା ॥
ନାନା ବାଣିଜ୍ୟ କରୁଥାନ୍ତି । ଧନ ଅର୍ଜନେ ଦିନନ୍ୟନ୍ତି ॥
ଅନେକ କୂଟଛନ୍ଦ କରି । ଝଗଡ଼ ହୋଇଣ ସେ ମରି ॥
ଏଣେ ବହୁତ ଦୋଷହୋଇ । ଏଭବୁ ତରି ନ ପାରଇ ॥
ଅନ୍ତେ ଦଣ୍ଡଇ ରବିଶିଷ୍ୟ । ନରକେ କରଇ ପ୍ରବେଶ ॥
ଶୁଣ ଉଦ୍ଧବ ଏକ ଚିତ୍ତେ । ଦାନ ଦିଅନ୍ତି ଧର୍ମଯେତେ ॥
ମକର ମାସ ହୋଇଥିବ । ଉତ୍ତମ ବିପ୍ରକୁ ଆଣିବ ॥
ତାହାଙ୍କୁ ଦେବ ଭୂମିଦାନ । ଆହୁରି ଦାନେକ ସୁବର୍ଣ୍ଣ ॥
ଅର୍ଣ୍ଣ ବସନ ମାଢି ତିଳ । ଏପଞ୍ଚଦ୍ରବ୍ୟ କରିଠୁଳ ॥
ସଂକଳ୍ପ କରି ଶୁଦ୍ଧଚିତ୍ତେ । ଯଦ୍ୟପି ଦେବ ବିପ୍ର ହସ୍ତେ ॥

ଜନ୍ତୁରାୟେ — ଯମ   ରବିଶିଷ୍ୟ — ଯମ

ଅଶେଷ ମହିମା ତାହାର । କହନ୍ତେ ଭବୁ ହୁଏପାର ॥
ଯମ ଦର୍ଶନ ତାର ନାହିଁ । ଯାଇଣ ସ୍ୱର୍ଗରେ ବସଇ ॥
ବୋଲନ୍ତି କମଳା ରମଣ । ଏକଥା ଅଟଇ ପ୍ରମାଣ ॥
ସଂସାରେ ଗୃହବାସୀ ହୋଇ । ଯାହାର ଥାଏ ଗୋରୁଗାଈ ॥
ଗୋରୁଙ୍କ ଠାରେ ଦୟାଥିବ । ନିର୍ଦ୍ଦୟ ପଣ ନକରିବ ॥
ବାନ୍ଧିବ ବେଳ ପାଞ୍ଚଘଡି । ତହିଁ ଅନ୍ତରେ ଦେବଛାଡ଼ି ॥
ଆଉ ତେଣିକି ନ ବାନ୍ଧିବ । ବାନ୍ଧିଲେ ଅପ୍ରାଧ ହୋଇବ ॥
ଗୋରୁଙ୍କୁ ପୀଡ଼ା କଲାଦୋଷ । ତେଣୁଟି ଯାଇ କ୍ଷୟବଂଶ ॥
ଯଦ୍ୟପି ଗୋରୁ ହଜିଥିବ । ସେଦିନ ଅନ୍ନ ନ ଭୁଞ୍ଜିବ ॥
ଖୋଜିବ ତିନଦିନ ଯାଏ । ଯଦ୍ୟପି ଖୋଜିଲେ ନପାଏ ॥
ତାହାକୁ ନଲାଗଇ ଦୋଷ । ସେ ପ୍ରାଣୀ ବିବେକ ପୁରୁଷ ॥
ଯେବେ ନଖୋଜି ତିନଦିନ । ସେପ୍ରାଣୀ ଚଣ୍ଡାଳ ସମାନ ॥
ସକଳ ଧର୍ମ ନାଶଯାଇ । ଅନ୍ତେ ବହୁତ ଶାସ୍ତି ପାଇ ॥
ଜ୍ଞାନେ ଅଜ୍ଞାନେ ଯେଉଁଜନ । ଅର୍ଜନ୍ତି ନାନା ପାପମାନ ॥
ନଯାଇ ଯେବେ ଦାନକଲେ । ଖଣ୍ଡଇ ମାଘସ୍ନାନ କଲେ ॥
ଉଦ୍ଧବ ଶୁଣ ମୋ ଉତ୍ତର । ଏବେଠୁ ମାଘସ୍ନାନ କର ॥
ପାମର କୃଷ୍ଣ ଦାସ କହେ । ସତ ହୋଇଲା ପଦଶଏ ॥
ଉଦ୍ଧବ କୃଷ୍ଣ ଚରଣର । ସେପାଦେ ଲାଗୁ ମୋର ଶିର ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ପାପପୁଣ୍ୟ କଥନେ ନାମ ସପ୍ତୋବିଂଶୋଽଧ୍ୟାୟଃ

—X—

# ଚତୁର୍ବିଂଶ ଅଧ୍ୟାୟ

## ଉଦ୍ଧବ ଉବାଚ

ଉଦ୍ଧବ ବେନକର ଯୋଡ଼ । ଗୋବିନ୍ଦ ପାଦତଳେ ପଡ଼ ॥
ବୋଲଇ କୃତ୍ୟ କୃତ୍ୟ ହୋଇ । ହେପ୍ରଭୁ ମୋତେ କର ଥାଇ ॥
କହିବା ମାଘସ୍ନାନ କଥା । ଶୁଣି ତୁଟିବ ମନୁବ୍ୟଥା ॥
ସ୍ନାହାନ କଲେ କେତେଫଳ । କହହେ ପ୍ରଭୁ ଆଦିମୂଳ ॥
ବୋଲନ୍ତି ପ୍ରଭୁ ନାରାୟଣ । ମାଘସ୍ନାହାନ ଧର୍ମଗୁଣ ॥
ପୂର୍ବେ ଯେ ଏକ ଅପସରୀ । ଥିଲାସେ ମାଘସ୍ନାନ କରି ॥
ତାହାର ସିନ୍ଧବାର ଶାଢ଼ୀ । ଜଳ ଟୋପାଏ ତହିଁ ପଡ଼ି ॥
ପ୍ରେତ ପିଶାଚ ନସ୍ତରିଲେ । ଯାଇଣ ସ୍ୱର୍ଗରେ ବସିଲେ ॥
ସେପୁଣ୍ୟ କେହା ଅପସରୀ । ଅଟଇ ପର ଉପକାରୀ ॥
କହି ବନର ଧର୍ମ ଦେଲା । ଦେଖି ଗୋଟାକୁ ନସ୍ତରିଲା ॥
ହେପ୍ରଭୁ ମୋତେ ଏହାକହ । ଶୁଣି କୃତାର୍ଥ ହେଉଦେହ ॥
ଉଦ୍ଧବ ବଚନେ ମୁରାରି । କହନ୍ତି ଅନୁରାଗ କରି ॥
ବୋଲନ୍ତି ଶୁଣହେ ଉଦ୍ଧବ । ସେକଥା କହଇ ଦୁର୍ଲ୍ଲଭ ॥
ଥିଲାସେ ଏକ ଅପସରୀ । ସ୍ୱର୍ଗରୀ ଗନ୍ଧର୍ବ କୁମାରୀ ॥
କାଞ୍ଚନମାଳା ତାର ନାମ । ରୂପେ ଚଞ୍ଚଳା ନୋହେସମ ॥
ଶରଦ ସୁଧାକର ମୁଖୀ । ମାଳଜମୁଳ ପ୍ରାୟେ ଆଖି ।
କଳା ଭ୍ରମର ପ୍ରାୟେ କେଶ । ଅଧର ବନ୍ଧୁଲି ସଦୃଶ ॥
ପଦ୍ମନାଭକ ବାହୁବେନି । ସୁସଞ୍ଚ ଘନ ପୀନସ୍ତନୀ ॥
ଶୁଦ୍ଧ ସୁବର୍ଣ୍ଣ ପ୍ରାୟୁକାନ୍ତି । ଯୁବା ବୟସୀ ମୋହିତଦନ୍ତି ॥
ମଧ୍ୟ ବଳଇ ଅତକ୍ଷୀଣ । ଉଲଟ ରମ୍ଭା ଉରୁଘେନ ॥
ଭର କମଳ ପାଦତଳ । ଦଶେ ଅଳତା ବର୍ଣ୍ଣ ବଳ ॥
ସର୍ବ ସୁଲକ୍ଷଣୀ ସୁବର୍ଣ୍ଣ । ଧର୍ମକୁ ବଳାଇଲା ମତ ॥
ବ୍ରହ୍ମାଙ୍କୁ ବହୁ ସେବାକଲା । ଶାସ୍ତ୍ର ପୁରାଣାଦି ଶୁଣିଲା ॥

---

ଅଷ୍ଟନେତ୍ର — ବ୍ରହ୍ମା
ଚଞ୍ଚଳା — ଲକ୍ଷ୍ମୀ
ଧାତା — ବ୍ରହ୍ମା
ସୁଧାକର — ଚନ୍ଦ୍ର

ମାଘ ମାହାତ୍ମ୍ୟର ଚରିତ । ତାକୁ କହିଲେ ଅଷ୍ଟନେତ୍ର ॥
ସେକଥା ଧାତା ମୁଖୁଁ ଶୁଣି । ସ୍ନାହାନ କଲକ ତରୁଣୀ ॥
ମାଘ ସ୍ନାହାନ କରିଥାଇ । ଭକତ ସବେ ଧନ ନେଇ ॥
ଏହି ପ୍ରକାରେ ପ୍ରତିଦିନ । ପ୍ରୟାଗେ କରଇ ସ୍ନାହାନ ॥
ଅନେକ ପ୍ରଭତରୁ ଉଠି । ବିମାନେ ବସିଲ ବିମ୍ବୋଷ୍ଠି ॥
ସଙ୍ଗତେ ସଖୀଗଣ ଘେନି । ଗଗନେ ଚଳଇ କାମିନୀ ॥
ସ୍ନାହାନ କରି ଚନ୍ଦ୍ରମୁଖୀଁ । ରଥରେ ବସିଲକ ଯାଇଁ ॥
ଶିବଙ୍କ ଦର୍ଶନ ନିମନ୍ତେ । ସେଠାରୁ ଚଳିଲା ତ୍ୱରିତେ ॥
ଗମଇ କଇଲାସ ଗିରି । ସଙ୍ଗତେ ଘେନି ସହଚରୀ ॥
ଗମନ୍ତେ ହିମାଳୟ ବନେ । ରାକ୍ଷସ ଥିଲା ଯେଉଁ ସ୍ଥାନେ ॥
ମସ୍ତୁଦଇତ୍ୟ ତାର ନାମ । ସେ ବନେ ତାହାର ଆଶ୍ରମ ॥
ଅପସରୀକୁ ଦେଖିକରି । ଦାନବ ଯାଇଣ ପଚାରି ॥
ବୋଲଇ କନ୍ୟା ମୁଖଚନ୍ଦ୍ରୀଁ । କଥାଏ ପଚାରିବି ମୁନ୍ଦ୍ରୀ ॥
ତୁମ୍ଭର ନାମ ଗୋଟି କିସ । କେଉଁ ଦେଶରେ ତୁମ୍ଭବାସ ॥
କେହୁ ତୁମ୍ଭର ପିତାମାତା । କାହାର ଅଟ ତୁ ବନିତା ॥
ଆଇଲୁ କେବଣ କାରଣେ । କିଅର୍ଥେ ଯାଉଅଛ ଏଣେ ॥
କମ୍ପା ତୋ କେଶ ତିନ୍ତଅଛି । ସ୍ୱରୂପ କହନ୍ତୁ ମୃଗାକ୍ଷି ॥
ଦାନବ ବଚନେ ଅବଳା । ସ୍ୱରୂପ ସିଦ୍ଧାନ୍ତ କହିଲା ॥
ବୋଲଇ ଶୁଣ ଦୈତ୍ୟବୀର । କାଞ୍ଚନମାଳୀ ନାମ ମୋର ॥
ସୁଚମଧା ଗନ୍ଧର୍ବ ମୋ ପିତା । ସୁଗନ୍ଧୀ ଅପସରୀ ମାତା ॥
ମୁହିଁସେ ତାହାଙ୍କ କୁମାରୀ । ଆଇଲି ମାଘସ୍ନାନ କରି ॥
ପ୍ରୟାଗ ସ୍ନାହାନ ସାରିଣ । ଯାଉଛି କଇଲାସେ ପୁଣ ॥
ଶିବଙ୍କୁ ଦର୍ଶନ କରିବି । ସକଳ ଦୁରିତ ହରିବି ॥
କାଞ୍ଚନ ମାଳୀର ବଚନେ । ଅସୁର ଆନନ୍ଦିତ ମନେ ॥
ବହୁତ ପୁରୁଷାର୍ଥ କଲା । ଧନ୍ୟତୋ ତପସ୍ୟା ବୋଇଲା ॥
ମୋହର ଭାଗ୍ୟ ଥିଲା ଆଜ । ତୋତେ ଦେଖିଲି ଶୁଭକାର୍ଯ୍ୟ ॥
ସକଳ ପାପ ମୋର ଗଲା । ଏଜନ୍ମ ସଫଳ ହୋଇଲା ॥
ମାଘ ସାହାନ କେତେ ପୁଣ୍ୟ । କହନ୍ତୁ ସୁବର୍ଣ୍ଣ ରତନ ॥

---

ତ୍ୱରିତ — ଶୀଘ୍ର    ପୁରୁଷାର୍ଥ — ପୁଣ୍ୟକାର୍ଯ୍ୟ
କଇଲାସ — ଶିବଙ୍କ ବାସସ୍ଥାନ

ସ୍ୱରୂପ କହ ମୋତେ ଏବେ । ମୁଁ ଅବା ନିସ୍ତରିବ ଯେବେ ॥
ଶୁଣି ବୋଲଇ ଅପସରୀ । ଶୁଣନ୍ତୁ ମନ ସ୍ଥିରକରି ॥
ମାଘ ସ୍ନାହାନେ ଫଳଯେତେ । ସଂକ୍ଷେପି କହିବା ତା କେତେ ॥
ପୂର୍ବେ ଯେ କଳିଙ୍ଗ ରାଜ୍ୟରେ । ମୁହିଁ ଜନ୍ମିଲି ବେଶ୍ୟାଘରେ ॥
ଯତ୍ନେ ପାଳଲେ ମୋତେ ମାଏ । ବର୍ଦ୍ଧିତ ହୋଇଲି ମୋ କାୟେ ॥
ଯହୁଁ ମୁଁ ନବଯୁବା ହେଲି । ତେଣୁ ବେଶ୍ୟା ଆଚର କଲି ॥
ବିଶେଷ ଅତ୍ୟନ୍ତ ସୁନ୍ଦରୀ । ମୋହିଲି ମନ ସଭୁଙ୍କର ॥
ସେ ନଗ୍ରେ ଯେତେକ ପୁରୁଷ । ସର୍ବେ ହୋଇଲେ ମୋର ବଶ ॥
ଅନେକ ପଦାର୍ଥ ଅର୍ଜିଲି । ଉତ୍ତମ ସୁଖ ଭୋଗକଲି ॥
କାଳେ ହୋଇଲି ପୁଣି ବୃଦ୍ଧା । ଭାଜିଲା ରମଣର ଶ୍ରଦ୍ଧା ॥
ଜ୍ଞାନ ଉଦୟ ହେଲା ଆସି । ଭାବିଲି ହୃଦାଗ୍ରେ ବସି ॥
ବିଚାର କଲି ହୃଦଗତେ । ଏଭବୁ ତରିବ କେମନ୍ତେ ॥
ଅନ୍ୟାଚାରମାନଙ୍କୁ ଗଲି । ଛଳାଚ୍ଛେ ଧର୍ମକୁ ନକଲି ॥
ନକଲି ବାରବ୍ରତ କିଛି । ଆଜକ ଭଲଗତି ଅଛି ॥
ଅନ୍ତେଣ ଯମହିଁ ଦଣ୍ଡିବ । ନେଇ ନର୍କରେ ଠାବଦେବ ॥
ଏତେ ବିଚାର କରିଶୋକ । ନୟନୁ ବହଇ ଲୋତକ ॥
ଯାବତ ସୁଖଭୋଗ କଲି । ରୁଚଇ ନାହିଁ ମୋତେ କିଛି ॥
ଖେଦ ବଢ଼ିଲା ଦିନୁ ଦିନୁ । କ୍ଷୀଣ ହୋଇଲା ମୋର ତନୁ ॥
ପୁଣି ବିଚାରିଲି ମନକୁ । ପୁଛିବି ମୁଁ ଜ୍ଞାନୀଜନଙ୍କୁ ॥
ସେଅବା କହିବେ ସୁମାର୍ଗ । ଯେଣେ ଖଣ୍ଡିବ ପାପଯୋଗ ॥
ଏମନ୍ତ ବିଚାରି ମନରୁ । ସଦନୁ ହୋଇଲି ବାହାର ॥
ବିଷାଦ ହୋଇ ଗଲିଚଳି । ବିପ୍ରଙ୍କୁ ଯାଇଁ ବେନେମିଳି ॥
ସେ ବିପ୍ର ରାଜାର ପ୍ରୋହିତ । ଜାଣଇ ସକଳ ବୃତ୍ତାନ୍ତ ॥
ତାହାଙ୍କ ସ୍ଥାନରେ ମିଳିଲି । ଦୂରହୁଁ ନମସ୍କାର କଲି ॥
କଲ୍ୟାଣ କରି ସଗ୍ରହଲେ । କଅର୍ଥେ ଅଇଲୁ ବୋଇଲେ ॥
ମୁହିଁ ବୋଇଲି ଯୋଡ଼କରି । ଗୋସାଇଁ ପ୍ରତିକାର କରି ॥
ଅନେକ କାରୁଣ୍ୟ ହୋଇଲି । ଚରଣେ ଓଳଗି ଶୋଇଲି ॥
ଦେଖ ମୁଁ ବେଶ୍ୟାଜାତି ହୀନ । ପାପ ଆଗ୍ରହରେ ନେଲାଦିନ ॥

---

ଲୋତକ — ଲୁହ
ତନୁ — ଶରୀର
ଖେଦ — ଦୁଃଖ

ସାଧୁ ଚରଣ ନ ସେବିଲି । ଗୋବିନ୍ଦ ନାମ ନ ଭଜିଲି ॥
ଅନ୍ୟହିଁ ନକଲି ମୁଁ କର୍ମ । ଧନ ଅର୍ଜନେ ଚିତ୍ତଭ୍ରମ ॥
ବିଅର୍ଥେ ଏତେ ଦିନଗଲା । ଚତୁର୍ଥ କାଳ ମୋ ହୋଇଲା ॥
ତେଣୁ ମୁଁ ଭାବୁଅଛି ମନେ । ତରିବି କେବଣ ବିଧାନେ ॥
କି କର୍ମ କଲେ ହେବି ପାର । କହ ସଂଶୟ ଯାଉ ମୋର ॥
ଏକଥା ପଚାରିବା ପାଇଁ । ଗ୍ରୀମ୍ଭକୁ ଅଇଲି ଗୋସାଇଁ ॥
ଶୁଣି ବୋଇଲା ବିପ୍ରବରି । କହିବି ଶୁଣ ଶୁଭ୍ରକେଶୀ ॥
ଯେତେ ପାତକ କରିଥିଲେ । ଖଣ୍ଡଇ ତୀର୍ଥେ ସ୍ନାନ କଲେ ॥
ତୁ ଏବେ ପ୍ରୟାଗକୁ ଯିବୁ । ସେ ତୀର୍ଥେ ସ୍ନାହାନ କରିବୁ ॥
ମାଘେ ସ୍ନାହାନ ତହିଁ କର । ସକଳ ପାପମାନ ହର ॥
ଅନ୍ତେ ବସିବୁ ସ୍ୱର୍ଗେ ଯାଇଁ । ଏକଥା ପ୍ରମାଣ ଅଟଇ ॥
ପୁଣି ବୋଲଇ ବାଣୀଶୁଣ । ଏକଥା କହୁଁ ତୋ ଆଗେଣ ॥
ପୂର୍ବ ଦିନରେ ସୁରପତି । ସେହି ସେ କଲେକ ଅନୀତି ॥
ଗୌତମ ଋଷିଙ୍କର ନାରୀ । ଅଟଇ ଅତ୍ୟନ୍ତ ସୁନ୍ଦରୀ ॥
ଅଯୋନି ସମ୍ଭୂତା ଅବଳା । ନାମ ତା ଅଟଇ ଅହଲ୍ୟା ॥
ତାହାର ରୂପ ଗୁଣ ଦେଖି । ଇନ୍ଦ୍ର ଦେବତା କାମିରୂପୀ ॥
ଭାଳଇ ଅନୁକ୍ଷଣେ ମନେ । ଏହାକୁ ହରିବି କେସନେ ॥
ଦିନେକ ଗଲେ ସୁନାସୀର । ମିଳିଲେ ଗୋଦାବରୀ ତୀର ॥
ଏକାନ୍ତେ ଲୁଚି ବସିଛନ୍ତି । ଅହଲ୍ୟାଠାରେ ଦେଇମତି ॥
ଏସନ ସମୟେ ଅହଲ୍ୟା । ନୀର ଆଣିବା ଅର୍ଥେ ଗଲା ॥
ଏମନ୍ତ ବେଳେ ସୁରପତି । ଯାଇଁ ମିଳିଲେ ତାରକତି ॥
ବଳେ ହରଣେ ମନକଲା । ଶାପ ଦେବାପାଇଁ ଉଠିଲା ॥
କହଇ ବିନୟ ହୋଇଣ । ବୋଲସଖି ରଖ ମୋର ପ୍ରାଣ ॥
ମଦନେ ଅସ୍ଥିର ମୋଦେହ । ତୁ ମୋତେ ରତିଦାନ ଦିଅ ॥
ନୋହିଲେ ମରିବି ଅବଶ୍ୟ । ବୋଲସଖି ନକର ନିରାଶ ॥
ଇନ୍ଦ୍ର ବଚନ ବାଳୀ ଶୁଣି । ଆଶ୍ଚର୍ଯ୍ୟ ହୋଇଲା ତରୁଣୀ ॥
ଛୁଇଁଲା ଶ୍ରବଣ ମେଦିନୀ । କୋପେଣ ବୋଇଲା କାମିନୀ ॥

ପ୍ରୟାଗ — ଗଙ୍ଗା ସୁରପତି — ଇନ୍ଦ୍ର
ସୁନାସୀର — ଇନ୍ଦ୍ର ଗୁରୁତଳ୍ପୀ — ଅହଲ୍ୟା
ନୀର — ଜଳ ବାସବ — ଇନ୍ଦ୍ର

ତୁ ଦେବ ଇନ୍ଦ୍ର ମହାବାହୁ । ଅବଧି କଥା ମୋତେ କହୁ ॥
ମୁହିଁ ଯେ ପତିଭକ୍ତା ସତୀ । ବିଶେଷେ ଋଷିଙ୍କ ଯୁବତୀ ॥
ଗୁରୁ ପତ୍ନୀଙ୍କି ହରିନେଉ । ଜାଣିବା ପଣ ତୋର ପୋଡୁ ॥
ଏକଥା ନକହ ମୋଆଗେ । ଏମନ୍ତେ ବୋଲିଗଲା ବେଗେ ॥
ନିଜ ଆଶ୍ରମେ ଯାଇମିଳ । ଏଣେ ବାସବ ମନେଭଳ ॥
ବୋଲଇ କିବୁଦ୍ଧି କରିବ । ସେ କନ୍ୟା କେମନେ ହରିବ ॥
ତୋ ରୂପ ଚିନ୍ତି ପଞ୍ଚଶର । ହୃଦରେ ବହୁଅଛି ମୋର ॥
ତା ନେତ୍ର କଟାକ୍ଷ ଶଙ୍କର । ବିନ୍ଧୁଛି ମନ ମର୍ମ ଶରେ ॥
ରୂପ ରଜ୍ଜୁରେ ବାନ୍ଧିକରି । ନେଲଣି ଗଳିକ ସୁନ୍ଦରୀ ॥
ନିରତେ ବଶୁଅଛି ଓସନ୍ଧି । ତାବିନୁ ନ ରୁଚଇ କେହି ॥
ଏମନ୍ତେ ହୃଦରେ ବିଗ୍ଭରି । ନିଶି ଦିବସେ ଚିନ୍ତାକରି ॥
ଯାବତ ସୁଖଭୋଗ ଛାଡ଼ି । ପ୍ରେମ ଲାଳସେ ଚିତ୍ତ ବଢ଼ି ॥
ପୁଣିହିଁ ବୁଦ୍ଧିଏ ପାଞ୍ଚିଲେ । ଗୁପତ ହୋଇ ଇନ୍ଦ୍ର ଗଲେ ॥
ଋଷି ନଥିଲା ବେଳେ ଜାଣି । ଶରୀର ଗୋପ୍ୟ କଲେ ପୁଣି ॥
ଗଉତମଙ୍କ ରୂପ ହୋଇ । ମଡିଆ ଦ୍ୱାରେ ହେଲେଯାଇ ॥
ମୁନିଙ୍କି ଦେଖିଣ ସୁନ୍ଦରୀ । ସଧୀରେ ବଚନ ପଚାରି ॥
ହେନାଥ ଏହିକ୍ଷଣି ଗଲ । କ ଅର୍ଥେ ବାହୁଡ଼ି ଆସିଲ ॥
ହସି କହନ୍ତି ମାୟାମୁନି । ହୋଇଲେ ଶୁଣଲୋ ଭାବିନି ॥
ଆମ୍ଭେ ଯେ ତପ କରି ଗଲୁ । ନଦୀ କୂଳରେ ଯାଇହେଲୁ ॥
ଦେଖିଲୁଁ ରମ୍ଭା ଅପସରୀ । ସ୍ନାହାନ କରଇ ସୁନ୍ଦରୀ ॥
ସ୍ତନଜଘନ ଦେଖି ତାର । ଅଙ୍ଗେ ପୀଡ଼ିଲା ପଞ୍ଚଶର ॥
ଅସ୍ଥିର ହୋଇଲା ମୋ ମନ । ତେଣୁ ଅଇଲୁ ଆମ୍ଭେ ଧାଇଁ ॥
ହେସଖି ବିଳମ୍ବ ନକର । ରମଣ ଦିଅ ଧାଇଁକାର ॥
ଶୁଣି ସୁନ୍ଦରୀ ଲଜ୍ଜାପାଇ । ମଥା ପୋତିଣ ତୁନି ହୋଇ ॥
କପଟ ବୋଲିଣ ନ ଜାଣି । ସମ୍ମତ କଲିକ ତରୁଣୀ ॥
ମୁନି କରନ୍ତି ଆଲିଙ୍ଗନ । ଅଧରେ ଦିଅନ୍ତି ଚୁମ୍ବନ ॥
ରମଣ ରସେ ଛନ୍ତି ପଶି । ମିଳିଲେ ଗଉତମ ଋଷି ॥
ଦ୍ୱାରେ ଡାକିଲେ ମୁନିବର । ହେସଖୀ ଦିଅ ମୋତେ ମାର ॥

---

ଜଲାକବାଟୀ — ଝରକା ମଡ଼ିଆ — କୁଡ଼ିଆ
ଆଲିଙ୍ଗନ — କୋଳାଗ୍ରତ

ଶୁଣିଣ ମୁନଙ୍କ ବଚନ । ଚରସ୍ତ ହେଲେ ବେନଜନ ॥
ଇନ୍ଦ୍ର ମଞ୍ଜାର ରୂପଧରି । ଗଲ ପଳାଇ ଗଳଡରି ॥
ଭୟେ ହୋଇଲା ଥରହର । ମୁଖରେ ନଆସେ ଉତ୍ତର ॥
ପ୍ରାଙ୍ଗଣେ ଉଭା ହେଲା ଆସି । ଦେଖିଣ ଗଗୃରନ୍ତ ଋଷି ॥
ଚେଣେ କେ ପଳାଇଲା ଖରେ । ଜଳାକବାର୍ତ୍ତୀ ସଲଖରେ ॥
ଭୟରେ ବୋଲଇ ଅହଲ୍ୟା । ମଞ୍ଜାର ଗୋଷ୍ଠୀୟେକ ଥିଲା ॥
ଏଥିରେ ପଶିବାକୁ ଆନ । କେହିତ ନୁହଇ ସ୍ୱଜନ ॥
ମୁନି ସଂଶୟ ପାଇମନେ । ଯାଇଣ ବସିଲେ ଆସନେ ॥
ଯୋଗେ ଜାଣିଲେ ମୁନିବର । ଇନ୍ଦ୍ର ଆସିଣ ଥିଲାପୁର ॥
କପଟେ ସତୀ ହରିଗଲା । କୁଳେ କଳଙ୍କ ଲଗାଇଲା ॥
କୋପେ ଉଠିଲେ ତପୀସାଇଁ । ବୋଇଲେ ଉପରକୁ ଚାହିଁ ॥
ତୁ ସର୍ବରାଜା ସର୍ବଜ୍ଞାତା । ହରିଲୁ ମୋହୋର ବନିତା ॥
ଶାପଦ୍ଭୁ ଯେନ ଇନ୍ଦ୍ର ମୋର । ଇନ୍ଦ୍ରିୟେ ଛୁଡ଼ିପଡ଼ୁ ତୋର ॥
ଏବେ ଯୋନିକ ଶ୍ରଦ୍ଧାକଲୁ । ପର ଯୁବତୀ ତୁ ହରିଲୁ ॥
ଶରୀରେ ସହସ୍ର ଯୋନି ହେଉ । ଏକଥା ଯୁଗେ ଯୁଗେ ଥାଉ ॥
ଏମନ୍ତ ବୋଲି ଶାପଦେଲା । ଇନ୍ଦ୍ରର ଅଣ୍ଡ ଛୁଡ଼ିଗଲା ॥
ଅଙ୍ଗ ହୋଇଲା ଯୋନିମୟ । ଲଜ୍ଜା ପାଇଲା ଦେବରାୟ ॥
ବୁଦ୍ଧି ନଷ୍ଟରେ ଆଉ କଷ୍ଟ । ବଦନ ପୋଡ଼ି ବସିଅଛି ॥
ଶୁଣ ସୁଜନେ ଦ୍ୱିବ୍ୟରସ । ଭଣେ ନୃସିଂହ ଦାସଶିଷ୍ୟ ॥
ଉଦ୍ଧବ କହେ ଦେବରାୟେ । ଶଏ ପଞ୍ଚାବନ ପଦଏ ॥
ପାମର କୃଷ୍ଣଦାସ ଭଣି । ତ୍ରାହି କରିବେ ଚକ୍ରପାଣି ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ କାଞ୍ଚନମାଳୀ ପୂର୍ବଜନ୍ମ ପ୍ରସ୍ତାବ କଥନେ ନାମ ଚତୁର୍ବିଂଶୋଽଧ୍ୟାୟ

—×—

ପାତକ — ପାପ ପଦ୍ମନେତ୍ର — ବସ୍ତ୍ର

# ପଞ୍ଚବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ପଦ୍ମନେତ୍ର । ଶୁଣ ଉଦ୍ଧବ ଏକଚିତ୍ତ ॥
ଇନ୍ଦ୍ରଯେ ନଜାଣିବା ପଣେ । ପାତକ ଅର୍ଜିଲା ଆପଣେ ॥
ମଦନେ ଜ୍ଞାନ ହରାଇଲା । ଋଷିର ପତ୍ନୀକି ହରିଲା ॥
ଜାଣିଣ ମୁନି କଲେ କୋପ । ତେଣୁ ଇନ୍ଦ୍ରକୁ ଦେଲେ ଶାପ ॥
ତକ୍ଷଣେ ଇନ୍ଦ୍ର ଛୁଡ଼ିଗଲା । ଶରୀର ଯୋନିମୟ ହେଲା ॥
ସେ ଯେନ ମହାଲଜ୍ଜା ପାଇ । ବନସ୍ଥ ହୋଇଣ ଭାଳଇ ॥
ଆଜ ଚାହିଁବ କାହାମୁଖ । ମଲେ ହୋଇବ ବଡ଼ଦୁଃଖ ॥
ବ୍ରହ୍ମା ପବନ ଚନ୍ଦ୍ର ସୂର୍ଯ୍ୟ । ଅଗ୍ନି ବରୁଣ ନାଗରାଜ ॥
ଏମାନେ କ ବୋଲିବେ ମୋତେ । ଆସ୍ଥାନେ ବସିବି କେମନ୍ତେ ॥
ଗନ୍ଧର୍ବ ଯକ୍ଷ ବିଦ୍ୟାଧରୀ । ହାସ୍ୟ କରିବେ ଶୁଣିକରି ॥
ଏତେ ବିଚାରି ତହିଁଗଲା । ମେରୁ ଶିଖରେ ବିଜେକଲା ॥
ତହିଁ ଅଛଇ ସରୋବର । ଶତେ ଯୋଜନ ଦୀର୍ଘତାର ॥
ପ୍ରସ୍ଥ ଅଟଇ ଶତେଯୁଣ । ଗମ୍ଭୀର ଅନ୍ତ ଅପ୍ରମାଣ ॥
ସୁଧା ସମାନେ ଜଳ ସ୍ୱାଦ । ଫୁଟିଛି ପଦ୍ମଯେ କୁମୁଦ ॥
ବାସନ ମିଳିଲା ସେଠାରେ । ଲୁଚିଲା ପଦ୍ମର ମୂଳରେ ॥
ଗୁପତ ହୋଇଣ ରହିଲା । ଅମର ପୁରକୁ ନଗଲା ॥
ଏମନ୍ତେ ଗଲା ଦିନ ଚାରି । ଶୋଭ ନନ୍ଦଣେ ସ୍ୱର୍ଗପୁରୀ ॥
ଇନ୍ଦ୍ରକୁ ନ ଦେଖିଣ ଦେବେ । ବସିଣ ଭାବୁଛନ୍ତି ସର୍ବେ
ନୃପତି କାହିଁଛନ୍ତି ବୋଲି । ସ୍ୱର୍ଗେ ପଡ଼ିଲା ହାଲହୋଳ ॥
ତେତିଶ କୋଟି ଦେବଗଣ । ସମସ୍ତେ କଲେ ବିଚାରଣ ॥
ଚାଲ ସମସ୍ତେ ଆନ୍ୱେଷିବା । ଏକଥା ସଞ୍ଚପି କହିବା ॥
ତେବେ ବାଣିଜ୍ୟ ତଥ୍ୟ କରି । ଯାହିଁ ଅଛନ୍ତି ଦଣ୍ଡଧାରୀ ॥

---

ଯୁଣ — ଯୋଜନ ( ଏକ ଯୋଜନ ୨୦ କ୍ରୋଶ )
ଶଚୀ — ଇନ୍ଦ୍ର     କୁମୁଦ — ଭଉଁ

ଏତେ ବିଚାରି ବେଗେଗଲେ । ଇନ୍ଦ୍ରର ଭୁବନେ ମିଳଲେ ॥
ଦେଖିଲେ ଶଚୀ ବସିଅଛି । ବିରସ ହୋଇଣ ମୃଗାକ୍ଷୀ ॥
ଦେବେ ବୋଲନ୍ତି ମାଏ ଶୁଣ । କାହିଁ ଅଛନ୍ତି ସୁରରାଣ ॥
ଶଚୀ ବୋଇଲେ ନଜାଣଇଁ । ନୃପତି କାହିଁଛନ୍ତି ରହି ॥
ଚଳ ସମସ୍ତ ଦେବଗଣ । ପୁଚ୍ଛିବା ଗୁରୁଙ୍କୁ ଯାଇଣ ॥
ତାହାଙ୍କୁ ହୋଇବ ଗୋଚର । ଯେସ୍ଥାନେ ଥିବେ ନୃପବର ॥
ଏମନ୍ତ ବିଚାରି ସମସ୍ତେ । ଗମନ କଲେକ ତ୍ୱରିତେ ॥
ଗୁରୁଙ୍କ ଛାମୁରେ ମିଳଲେ । କୋମଳ କରି ପଚାରିଲେ ॥
ହେଗୁରୁ ଇନ୍ଦ୍ର ଗଲେ କାହିଁ । ଚାରି ଦିବସ ଦେଖାନାହିଁ ॥
ଇନ୍ଦ୍ର ବିହୁନେ ସ୍ୱର୍ଗପୁର । ଦିଶିଲା ଅତି ନାରଖାର ॥
ଆସ୍ଥାନ ପାଉନାହିଁ ଶୋଭା । କେଣିକି ଗଲେ ସେ ମଘବା ॥
ଏକଥା ବିଚାରିଣ କହ । ବ୍ୟାକୁଳ ସବୁଙ୍କର ଦେହ ॥
ଶୁଣି ବୋଇଲେ ବୃହସ୍ପତି । ସମସ୍ତେ ବସ ମୋହକତି ॥
ଏଥିକୁ ନଭାଳହୋ କିଛି । ଏହାମୁଁ ଆଗହୁଁ ଜାଣିଛି ॥
ଇନ୍ଦ୍ର ସେ ନଜାଣିବା ପଣେ । ପାତକ ଅର୍ଜିଲା ଆପଣେ ॥
ମଦନେ ଜ୍ଞାନ ହରାଇଲା । ଋଷିର ପ୍ରିୟାକୁ ହରିଲା ॥
ଯୋଗେ ଜାଣିଲେ ଗଉତମ । ଇନ୍ଦ୍ରକୁ କଲେ କୋପମନ ॥
ବୋଇଲେ ଅଣ୍ଡ ଛିଡ଼ିଯାଉ । ଶରୀରେ ସହସ୍ର ଯୋନି ହେଉ ॥
ସେକଥା ଅନ୍ୟଥା ନୋହିଲା । ବାସବ ଅଣ୍ଡ ଛିଡିଗଲା ॥
ଅଙ୍ଗେ ହୋଇଲା ସହସ୍ର ଯୋନି । ନଇଲା ଲଜ୍ଜାଭାବ ହେନ ॥
ସଙ୍କୋଚ ପାଇ ମନେଭାଳ । ମେରୁ ଶିଖରେ ଯାଇମିଳ ॥
ତହିଁ ସେ ଅଛି ପୁଷ୍କରିଣୀ । ବହୁ ଗଭୀର ସେହୁପାଣି ॥
ସେ ସରୋବରରେ ପଦ୍ମଫୁଲେ । ଯାଇଣ ତହିଁରେ ଲୁଚିଲେ ॥
ସମସ୍ତେ ଯିବାହେ ତହିଁକି । ଆଣିବା ଆମ୍ଭେ ନୃପତିଙ୍କି ॥
ଶୁଣି ସାନନ୍ଦ ସର୍ବସୁର । ସମ୍ମତ କଲେ ଧାତକାର ॥
ଯିବାକୁ ବାହାର ହୋଇଲେ । ବୃହସ୍ପତିଙ୍କୁ ଆଗକଲେ ॥
ଦାତାଙ୍କ ପଛେ ସର୍ବଦେବ । ଶଚୀ ସହିତେ ସୁରଦେବ ॥
ତକ୍ଷଣେ ଗଲେ ପଥବାହି । ମିଳଲେ ଗିରି ଶିଖେଯାଇ ॥
ଡାକନ୍ତି ଭେଟଦେବ ରାଜନ । ବିଜେ କରିଛ କେଉଁସ୍ଥାନ ॥

---

ବୃହସ୍ପତି — ଦେବଗୁରୁ    ସହସ୍ରଯୋନି — ଇନ୍ଦ୍ର

ତୁମ୍ଭଙ୍କୁ ନଦେଖି ସମସ୍ତେ । ଆକୁଳ ହେଉଛନ୍ତି ଚିତ୍ତେ ॥
ଗୃହରେ ରହିଅଛ କାହିଁ । ଆସ ବହନ ଶଚୀସାଇଁ ॥
ଏମନ୍ତ ଅନେକ ପ୍ରକାରେ । ସ୍ତୁତି କରନ୍ତି ସର୍ବସୁରେ ॥
ଦେବଙ୍କ ସ୍ତୁତିବାକ୍ୟ ଶୁଣି । ବାହାର ହେଲେ ତତକ୍ଷଣି ॥
ସଙ୍କୋଚ ଭାବ ପାଇଚିତ୍ତେ । ମିଳିଲେ ଦେବଙ୍କ ଅଗ୍ରତେ ॥
ଗୁରୁଙ୍କୁ ଦେଖି ବଜ୍ରଧାରୀ । ତକ୍ଷଣେ ନମସ୍କାର କରି ॥
ଉଭା ହୋଇଲେ ପୋତି ମଥା । ଲଜ୍ଜେଣ ନକହିଲେ କଥା ॥
ତହୁଁ ସେ ଇନ୍ଦ୍ରଙ୍କୁ ଦେଖିଲେ । ବବୁଧେ ଶିରେ କରଦେଲେ ॥
ବୋଲନ୍ତି ଇନ୍ଦ୍ର ମୁଖଚାହିଁ । ଏକଥା ହେଲା କାହିଁପାଇଁ ॥
ଇନ୍ଦ୍ର ବୋଇଲେ ଶୁଣ ତାହା । କର୍ମରେ ଅର୍ଜିଅଛୁ ଯାହା ॥
ନଜାଣି ହୀନବୁଦ୍ଧି କରି । ହରିଲି ଗଉତମ ନାରୀ ॥
ତାହା ଜାଣିଲେ ମୁନିବରେ । ସେମୋତେ ଶାପଦେଲେ ଖରେ ॥
ତେଣୁ ପାଇଲି ଏତେ ଶାସ୍ତି । ଲଜ୍ଜେ ନଗଲି ବାରସ୍ଥିତି ॥
ଏବେ ମୁଁ କବୁଦ୍ଧି କରିବ । ଶାପରୁ କରୂପେ ତରିବ ॥
ଏକଥା କହ ବିଚକ୍ଷଣ । ନୋହିଲେ ବିସର୍ଜିବି ପ୍ରାଣ ॥
ବ୍ରହ୍ମା ଈଶ୍ୱର ବୃହସ୍ପତି । ଇନ୍ଦ୍ରକୁ ଚାହିଁଣ ବୋଲନ୍ତି ॥
ଜ୍ଞାନେ ଅଜ୍ଞାନେ ଯେତେ ଲୋକ । ଆପଣେ ଅର୍ଜନ୍ତି ପାତକ ॥
ସେପାପ ନଖଣ୍ଡଇ ଆନେ । କେବଳ ହରେ ତୀର୍ଥସ୍ଥାନେ ॥
ପ୍ରୟାଗ ତୀର୍ଥେ ବେଗେ ତୁ ଯା । ସ୍ନାହାନ କର ଦେବରାଜା ॥
ଶାପରୁ ହୋଇବୁ ମୁକତି । ଶୁଣି ହରଷ ଶଚୀପତି ॥
ବୋଲଇ ଶୁଣହେ ତ୍ରିଦଶ । ମୋହ ସଙ୍ଗତେ ତୁମ୍ଭେଆସ ॥
ଦେବେ ବୋଇଲେ ଚାଲିଯିବା । ସ୍ନାହାନ କରାଇ ଆଣିବା ॥
ଏମନ୍ତ ବୋଲି ଦେବଗଣ । ଚଳିଲେ ଇନ୍ଦ୍ରକୁ ଘେନିଣ ॥
ମିଳିଲେ ପ୍ରୟାଗ ତୀର୍ଥରେ । ଉଭା ହୋଇଲେ ନଦୀତୀରେ ॥
ସେଦିନ ମାଘ ସପତମୀ । ଅତି ପବିତ୍ର ସେହୁ ଭୂମି ॥
ଏକେ ଅଟଇ ପୁଣ୍ୟକାଳ । ଇନ୍ଦ୍ର ପଶିଲା ଯାଇ ଜଳ ॥
ସ୍ନାହାନ କରିଣ ଉଠିଲା । କୂଳରେ ପ୍ରବେଶ ହୋଇଲା ॥

---

ବଜ୍ରଧାରୀ — ଇନ୍ଦ୍ର      ସ୍ତୁତିବାକ୍ୟ — ପ୍ରାର୍ଥନା
ଖରେ — ଶୀଘ୍ର      ଶଚୀସାଇଁ — ଇନ୍ଦ୍ର
ପ୍ରୟାଗତୀର୍ଥ ... ଭାରତର ଏକ ପ୍ରସିଦ୍ଧ ତୀର୍ଥ

ଗୁରୁ ପ୍ରସନ୍ନେ ଦେଲେ ବର । ସକଳ ପାପ ଖଣ୍ଡୁ ତୋର ॥
ଗୁରୁଙ୍କ ଆଜ୍ଞା ପରମାଣେ । ସେ ଯୋନିମାନେ ଗଲେ କେଣେ ॥
ସହସ୍ରେ ଲୋଚନ ହୋଇଲା । ଅଧିକ ଶୋଭା ସେ ପାଇଲା ॥
ପଦ୍ମ ଫୁଟିଲା ସରୋବର । ସେଯେହ୍ନେ ଦିଶଇ ସୁନ୍ଦର ॥
ତେମନ୍ତ ଦିଶେ ଇନ୍ଦ୍ରକାୟେ । ଗର୍ଭୁଁ ଅଧିକ ଶୋଭାପାଏ ॥
ପ୍ରସନ୍ନ ହୋଇ କୃଶପାଣି । ମେଷରଠାରୁ ଅଣ୍ଡ ଆଣି ॥
ବାସବ ଚର୍ମେ ଲଗାଇଲେ । ବିଧାତା ଭଲ ବୁଦ୍ଧି ଦେଲେ ॥
ଦେବେ କରନ୍ତି ଜୟ ଜୟ । ସାନନ୍ଦ ହେଲେ ଶଚୀରାୟ ॥
ଇନ୍ଦ୍ରକୁ ଘେନି ତତକ୍ଷଣ । ସ୍ୱର୍ଗକୁ ଗଲେକ ଆପଣ ॥
ଆସ୍ଥାନେ ବସାଇଲେ ନେଇ । ବିବିଧ ଭୂଷଣ ପିନ୍ଧାଇ ॥
ହରଷ ହୋଇ ଦେବଲୋକ । ଇନ୍ଦ୍ରଙ୍କୁ କଲେ ଅଭିଷେକ ॥
ମୋତେ ବୋଇଲେ ସେ ବ୍ରାହ୍ମଣ । ହେ କନ୍ୟା ଏକମନେ ଶୁଣ ॥
ଦେଖ ସ୍ନାହାନ ମାଘେ ତାର । କେତେ କଷଣୁ ହେଲାପାର ॥
ତୁ ଏବେ ପ୍ରୟାଗକୁ ଯାଅ । ମାଘ ସ୍ନାହାନ କରୁଥାଅ ॥
ଖଣ୍ଡିବ ସକଳ ଦୁରିତ । ଅନ୍ତେଣ ହୋଇବୁ ମୁକତ ॥
ସେ ବିପ୍ର ବଚନେ ମୁଁ ଗଲି । ନିଜ ଭୁବନେ ଯାଇହେଲି ॥
ଉତ୍ତମ ବିପ୍ର କରି ଗୁରୁ । ନାମ ଘେନିଲି ତାଙ୍କଠାରୁ ॥
ଯେ ଦ୍ରବ୍ୟ ଥିଲା ମୋର ଘରେ । ସମର୍ପି ଗୁରୁଙ୍କ ହସ୍ତରେ ॥
ଗୋବିନ୍ଦ ପଦେ ଦେଇଚିତ୍ତ । ମନରୁ ତେଜିଲି ସମସ୍ତ ॥
ଗୃହ ଜଞ୍ଜାଳ ଗୁଡ଼କରି । ଏକାନ୍ତ ଓହଳ ଦେଶାନ୍ତରୀ ॥
ଅନେକ ତୀର୍ଥ ସ୍ନାନ କଲି । ମାସକ ପ୍ରୟାଗେ ରହିଲି ॥
ରହିଲି ସେ ତୀର୍ଥର ପାଶେ । ମାଘ ସ୍ନାହାନ କଲି ମାସେ ॥
ତିନି ଦିନର ପୁଣ୍ୟବଳେ । ସକଳ ପାପ ବହିହେଲେ ॥
ଆବର ସତାଇଶ ଦିନ । ତହିଁ ହୋଇଲା ଯେତେ ପୁଣ୍ୟ ॥
ସେ ଧର୍ମ କହିହେ ନଯାଇଁ । ତେଣୁ ଧଇଲି ଦେବୀଦେହୀ ॥
ସ୍ୱର୍ଗରେ ଅପସରୀ ହେଲି । ସୁଖେ ଅମୃତ ଭୋଗକଲି ॥
ପାର୍ବତୀ ସଙ୍ଗେ ହେଲି ସଖୀ । ଦେବ କନ୍ୟାରେ ହେଲି ଲେଖି ॥

---

କଷଣ — କଷ୍ଟ    ମେଷ — ମେଣ୍ଢା

ଦେଶାନ୍ତରୀ — ବିଦେଶୀ

ଏ ଦେହ ଗୁଡ଼ ନ ପାରଇ । ସର୍ବଦା ଏ ବ୍ରତ କରଇ ॥
ଶୁଣ ସ୍ୱଷସ ମହାବୀର । କହିଲି ଏ ବ୍ରତ ବସ୍ତୁର ॥
ତୁ ମୋତେ ପରୁଶଲୁ ଯେଣୁ । ସବୁ କହିଲି ତୋତେ ତେଣୁ ॥
ସୁଜନେ ଏହୁ ରସେ ରସ । ଭାବେ ଭଣଇ କୃଷ୍ଣଦାସ ॥
ଦଶଉତ୍ତର ଶଏ ପଦ । ଉଦ୍ଧବେ କହିଲେ ମାଧବ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
କାଞ୍ଚନମାଳୀ ଆଦିଜନ୍ମ କଥା ପ୍ରସ୍ତାବେ ନାମ ପଞ୍ଚୋବିଂଶୋଽଧ୍ୟାୟଃ

— × —

# ଷଡବିଂଶ ଅଧ୍ୟାୟ

ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ଦାମୋଦର । ଶୁଣ ଉଦ୍ଧବ ରସସାର ॥
କାଞ୍ଚନମାଳୀ ଯେ ସୁନ୍ଦରୀ । ପୁଣିସେ ଦୈତ୍ୟକୁ ପଚାରି ॥
ଶୁଣ ରାଜନ ଶଙ୍ଖଜିତା । କହିଲ ଆଦ୍ୟ ଜନ୍ମକଥା ॥
ତୁ ଅବା କଲୁ କେଉଁପାପ । ହୋଇଲୁ ଏପରି ବିରୂପ ॥
ପିଙ୍ଗଳ କଟକେ ତୋହର । ବିକଟ ମୁଣ୍ଡ ଭୟଙ୍କର ॥
ନୟନ ତମ୍ବାଚକ୍ର ପ୍ରାୟ । ପର୍ବତ ସମାନ ତୋ କାୟ ॥
ଶ୍ରବଣ ଦିଶେ ଗିରି ଗୁମ୍ଫା । ନାସିକା ମୋଟା ଏତେ କିମ୍ପା ॥
ଦଶନମାନ ଅତି ବଡ । ରକତ ବର୍ଣ୍ଣ ଦାଢ଼ିଥୋଡ଼ ॥
ଅତି ବିରୂପ ଭୟଙ୍କର । କିମ୍ପା ଯେ ନୋହିଲୁ ଅସୁର ॥
ଏକଥା ଫେଡ଼ି କହ ମୋତେ । ଯେଣେ ମୁଁ ଯିବଇଁ ପରତେ ॥
ଶୁଣି ବୋଲଇ ମହାବଳୀ । କହିବା ଶୁଣ ଆରେ ବାଳ ॥
ଯେବଣ ପାପ ପୂର୍ବେ କଲି । ଯେମନ୍ତେ ଅସୁର ହୋଇଲି ॥
ତାହାକୁ ଏକମନେ ଶୁଣ । ପୂର୍ବେ ମୁଁ ଜାତିରେ ବ୍ରାହ୍ମଣ ॥
ଉତ୍ତମ ବିପ୍ରକୁଳେ ଜାତ । ବେଦ ଶାସ୍ତ୍ରରେ ସୁପଣ୍ଡିତ ॥
କରଇ ଉତ୍ତମ ବିଚାର । କାଶୀ କ୍ଷେତ୍ରରେ ଘର ମୋର ॥
ପାପୀ ରଜାଙ୍କ ତହିଁ ମୁହିଁ । ବହୁତ ଦାନ ଘେନୁଥାଇ ॥
ଶୂଦ୍ରକ ଦୁଷ୍ଟ ଦାନଦେଲେ । ମୁଁ ମୂଢ଼ ଘେନଇ ତାଭଲେ ॥
ପାପକୁ ନଥାଇ ବିଚାର । ଧନ ଅର୍ଜନେ ଶ୍ରଦ୍ଧାମୋର ॥
ଚଣ୍ଡାଳ ଯେବେ ଦାନ ଦେଇ । ତାହା ମୁଁ ଲୋଭେଣ ଘେନଇ ॥
ସେ କାଶୀ କ୍ଷେତ୍ରର ମହିମା । ଆଉ କଥାଏ ଶୁଣ ବାମା ॥
ତହିଁ ଅଳପ ପାପ କଲେ । ବର୍ଦ୍ଧିତ ହୋଇ ତହିଁ ଭଲେ ॥
ଯେଅବା କରେ ଅଳ୍ପଧର୍ମ । ସେହୁ ହୁଅଇ ମେରୁସମ ॥
ଏହା ମୁଁ ଜାଣୁ ଜାଣୁ ଭଲେ । ଦାନ ମାଗଇ ସବୁଠାରେ ॥

---

ରସସାର — ଶ୍ରେଷ୍ଠରସ    ବିରୂପ — ଅସୁନ୍ଦର
ଦଶନ — ଦନ୍ତ

କଷ୍ଟଙ୍କୁ ନ କରଇ ଧର୍ମ । ବଞ୍ଚେ ବଞ୍ଚଇ ମୁଁ ଧନ ॥
କେତେହେଁ କାଳ ବୃଦ୍ଧ ହେଲ । କାଶୀ କ୍ଷେତ୍ରରେ ମୁହିଁ ମଲ ॥
ସେ ପାପ ପୁଣ୍ୟ ପଚାରନ୍ତେ [illegible] । ଚିତ୍ରଗୁପ୍ତ [illegible] ମୁହିଁ ହାଦେ ॥
ଯମ ବୋଇଲା ମୋତେ ଗୃହିଁ । ଏମନ୍ତ ପୁଣ୍ୟ କର ନାହିଁ ॥
ଅବଶ୍ୟ ନରକେ ପଡ଼ନ୍ତା । ଅନେକ ଦଣ୍ଡହିଁ ପାଆନ୍ତା ॥
କେବଳ କାଶୀ କ୍ଷେତ୍ର ଥିଲ । ସେ ପୁଣ୍ୟ କ୍ଷେତ୍ରେ ପ୍ରାଣଗଲ ॥
ତେଣୁ ଏହାକୁ ନାହିଁ ଦଣ୍ଡ । ସମସ୍ତେ ଖାଜ ପକ୍ଷୀ ପିଣ୍ଡ ॥
ଏମନ୍ତ ବୋଲି ଆଜ୍ଞାହେଲ । ଶାଗୁଣା ରୂପେ ଜାତକଲ ॥
ମଧ୍ୟେ ମୁଁ ଗୃଧ୍ର ରୂପ ହୋଇ । ବଞ୍ଚିଲା ନାନା ମାଂସ ଖାଇ ॥
କାଳେ ହୋଇଲା ପ୍ରାଣ ନାଶ । ମୁହିଁ ଯେ ଗଲି ଯମ ପାଶ ॥
ଯୋନି ଜନମ ପଶିଯନ୍ତେ । ଶାର୍ଦ୍ଦୂଳ ଜନ୍ମ କଲେ ମୋତେ ॥
ବ୍ୟାଘ୍ର ହୋଇଣ ବନେଥାଇ । ଯେମୁଖେ ପଡ଼ଇ ଭକ୍ଷଇ ॥
ଏମନ୍ତେ ଭନଜନ୍ମ ଯାଏ । ଶାର୍ଦ୍ଦୂଳ ଜନ୍ମ ଜନ୍ମୁଚୟେ ॥
ତଥାପି ନଗଲା ସେ ପାପ । ପୁଣିହିଁ କଲ ମୋତେ ସର୍ପ ॥
ପନ୍ନଗ ବର୍ତ୍ତଇ ଯେମନ୍ତେ । ତାହାତ ଜାଣିଛ ସମସ୍ତେ ॥
ସର୍ପ ହୋଇଲା ନେନଜନ୍ମ । ଭୁଞ୍ଜିଲ ଅର୍ଜିଲ କର୍ମ ॥
ଏମନ୍ତେ ସାତଜନ୍ମ ଗଲ । ପୁଣି କଇହ ମୋତେ କଲ ॥
ସହୁଁ ସେ କୁକ୍କୁର ହୋଇଲି । ସମସ୍ତ ନର୍କ ଭୋଗକଲି ॥
କାଳେ ସେ ପୁଣି ଦେହ ଗୁଡ଼ । ସମକୁ ଭେଟିଲ ବାହୁଡ଼ ॥
ଦେଖ ହୋଇଲେ ରୁଦ୍ରଶିଷ୍ୟ । ଆହୁରି ଅଛି ତୋର ଦୋଷ ॥
ଏ ଜନ୍ମେ ନାହିଁ ପ୍ରତୀକାର । ଦଶ ଜନ୍ମରେ ହେବୁ ପାର ॥
ଏମନ୍ତ ବୋଲି ସେତେବାଗୀ । ଭଲ୍ଲୁକ ପକ୍ଷୀ କଲପୁଣି ॥
ସେ ଜନ୍ମେ ଯେତେ ଦେହ ନାହି । ବୃକ୍ଷ କୋଟରେ ଲୁଚିରହି ॥
ଧବଳେ ନ ପାରଇ ଚଳି । କାକକୁ ଥାଏ ପ୍ରାଣେଡରି ॥
ବଞ୍ଚଇ ସନ୍ତାପକୁ ହୋଇ । କାଳେକ ମୃତ୍ୟୁ ପ୍ରାପ୍ତ ହୋଇ ॥
ଯାଇଁ ଭେଟିଲ ଜନ୍ମଚୟେ । ତଥାପି ନଜନ୍ମ ସଦୟେ ॥
ନର୍ଦ୍ଦସ୍ୟୁ କରପେଷ ବାଢ । ଉଦ୍‌ବୋଧ ନକରଇ ମୂଢ଼ ॥
ସେ ମୋତେ ଶୁହିଁଣ ବୋଇଲା । ଏ ନମଜନ୍ମ ତୋର ଗଲ ॥

---

ହାଟେ — ବଜରୁ । ପନ୍ନଗ — ସର୍ପ
କୋଟ — କୋରଡ଼ । ପାତକ — ପାପ

ଯେବେଠୁ ହୋଇଛୁ ଅସୁର । ଖଣ୍ଡିବ ଜନ୍ମ ଦୋଷ ଘୋର ॥
ଏମନ୍ତ ବୋଲି ମୋତେ ନେଲା । ଦୈତ୍ୟ ମଧ୍ୟରେ ଜାତ କଲା ॥
ବ୍ରହ୍ମ ରାକ୍ଷସ ଦେହଧର । ଭ୍ରମୁ ଅଛଇ ପଥେ ହେର ॥
ମୁଁ ମୂଢ଼ ପୁଣି ପାପ କଲି । ଅନେକ ମନୁଷ୍ୟ ଖାଇଲି ॥
ଶତ ଯୋଜନ ପରଯନ୍ତେ । ନାହାନ୍ତି ଜୀବଯନ୍ତୁ ଏଥେ ॥
ସବୁ ଖାଇଲି ବଳେଧର । ଗୋଟିଏ ନ ଗଲେ ଉବୁର ॥
ପଞ୍ଚାଶ ସହସ୍ର ବରଷ । ଏଥେ ମୁଁ ହୋଇଲି ରାକ୍ଷସ ॥
ଏବେ ମୁଁ ଭାବୁଥାଇ ମନେ । ନିସ୍ତାର ପାଇବ କେସନେ ॥
ସେ କାଳେ ନ ଅର୍ଜିଲି ଧର୍ମ । ଏକାଳେ ଶାସ୍ତି ଦେଲା ଯମ ॥
ବେଦ ଶାସ୍ତ୍ରରେ ବିପ୍ର ହୋଇ । ମଞ୍ଚରେ ଥିଲି ଦେହବହି ॥
ପଶୁ ଯୋନରେ ଜନ୍ମ ହେଲି । ଅଜ୍ଞାନେ ଧନକାଳ ନେଲି ॥
ଏଜନ୍ମେ ହୋଇଲି ମୁଁ ଦୈତ୍ୟ । କେମନ୍ତେ ହୋଇବ ମୁକତ ॥
ଏମନ୍ତେ ବହୁତ ମୁଁ ଶତେ । ବିକଳ ହେଉଥାଇ ନିତ୍ୟେ ॥
ଏମନ୍ତେ କ୍ରୋଧ ହୁତାଶନ । ଶରୀର ହୁଅଇ ଦହନ ॥
ପାତକ ମୋର ଦୂରଗଲା । ତୋର ଦର୍ଶନେ ଶୁଦ୍ଧ ହେଲା ॥
ଯୋଗେ ପାଇଲି ତୋତେ ଭେଟ । ଆଜତ ଗଲା ମୋର କଷ୍ଟ ॥
ତୁ ଏବେ ସ୍ତ୍ରୀ କନ୍ୟା ପ୍ରାଣୀ । ସତୀ ସାଧବୀ ଶିରୋମଣି ॥
ମୁଁ ଘୋର ବଡହିଁ ପାତକୀ । କୃତାର୍ଥ ହେଲି ତୋତେ ଦେଖି ॥
ପାପୀ ଦୁର୍ଜ୍ଜନ ଯେ ଅଟଇ । ସେ ଯେବେ ସାଧୁଙ୍କୁ ଭେଟଇ ॥
ସାଧୁ ସଙ୍ଗମେ ଜ୍ଞାନ ହୋଏ । ଉତ୍ତମ ଗତି ସେହୁ ପାଏ ॥
ମୁଁ ମହାପାପୀ ହୋଇଥିଲି । ତୁମ୍ଭ ପ୍ରସନ୍ନେ ନିସ୍ତରିଲି ॥
ତୁ ବସ୍ତୁ ଭକ୍ତ ପୁଣ୍ୟ ଦେହୀ । ଅନେକ ପୁଣ୍ୟ ଅଛୁ ପାଇ ॥
ମୋ ମାତ ପ୍ରସନ୍ନ ତୁ ହୁଅ । ତୁ ମୋତେ କିଛି ଧର୍ମ ଦିଅ ॥
ଯମ ଦଣ୍ଡରୁ ଅପ୍ରମାଦେ । ତରିବି ତୁମ୍ଭର ପ୍ରସାଦେ ॥
ବଡ ଲୋକମାନଙ୍କ ଶିରୀ । ସମସ୍ତେ ଭୋଗ ତାହା କରି ॥
କୃପଣ ଜନଙ୍କ ପଦାର୍ଥ । ସେ ଘୋର ଅଟଇ ନିଅର୍ଥ ॥
ଯେମନ୍ତ କ୍ଷୀର ଅଙ୍ଗାର । ହଂସ ଯେ କରଇ ଆହାର ॥
ବକ ବାୟସ ପକ୍ଷୀ ହୀନ । ସେ କବା ନକରଇ ଆନ ॥
ମୁହିଁ ଅସୁର ହୀନ ଜାତି । ତୁ ମୋର ଫେଡ଼ ଏ ଦୁର୍ଗତି ॥

---

ଶିରୋମଣି — ଶ୍ରେଷ୍ଠ    ଦହନ — ଜଳିବା
କୃତାର୍ଥ — ପୁଣ୍ୟବାନ, ଆନନ୍ଦଲାଭ    ବାୟସ — କୁଆ

ନୋହିଲେ ଅନ୍ୟେ ପାରନାହିଁ । କରୁଣା କର ଚାନ୍ଦମୁହିଁ ॥
ଏମନ୍ତ ସ୍ତୁତିବାକ୍ୟ ଭଣି । ପାଦେ ନମଇ ପୁଣି ପୁଣି ॥
ଦୈତ୍ୟର ବିନୟ ବଚନେ । ଦୟା ବସିଲା ବାଳୀ ମନେ ॥
ପ୍ରସନ୍ନ ହୋଇ ଅପସରା । ବୋଇଲା ହୁଅ କଷ୍ଟୁ ପାର ॥
ମୋର ଧର୍ମରୁ ଅଧେ ଦେବି । ଘୋର କଷଣୁ ନିସ୍ତାରିବି ॥
ଏମନ୍ତ ବୋଲି ଚାନ୍ଦମୁହିଁ । ବୋଲଇ ଚନ୍ଦ୍ରସୂର୍ଯ୍ୟ ଚାହିଁ ॥
ଭୈରବ ଚନ୍ଦ୍ର ତୁମ୍ଭେ ଶୁଣ । ଏ ମୋର ବଚନ ପ୍ରମାଣ ॥
ଅସୁର ମୁଖ ଚାହିଁ ବାମା । ବୋଲଇ ଶୁଣ ମହାତମା ॥
ବହୁତ ମକର ସ୍ନାହାନ । କରିଣ ଅର୍ଜି ଅଛି ଧର୍ମ ॥
ଚତୁ ମାସକ ପୁଣ୍ୟଦେବି । ତୋତେ ମୁଁ ନିସ୍ତାର କରିବି ॥
ସନ୍ତୋଷ ହୋଇ ଶୁଦ୍ଧ ଚିତ୍ତେ । ମାସକ ଧର୍ମ ଦେବି ତୋତେ ॥
ଦୁଃଖ ଦେଖିଣ କଳାଦୟା । ନିଷ୍ପାପ ହେଉ ତୋର କାୟା ॥
ଏମନ୍ତ ବୋଲିଣ ସୁନ୍ଦରୀ । ଓଦା ବସନ କରେ ଧରି ॥
ଚିପୁଡ଼ି ଦେଲା ତାର ହସ୍ତେ । ଦୈତ୍ୟ ସିଞ୍ଚିଲା ନିଜମାଥେ ॥
ସ୍ୱର୍ଗରୁ ଆଇଲା ବିମାନ । ରାକ୍ଷସ ବସିଲା ତକ୍ଷଣ ॥
ମନରେ ହରଷ ହୋଇଲା । ବାମାକୁ ପରବେଶ କଲା ॥
ବୋଲଇ ଶୁଣସି ଗୋ ମାୟେ । ଦୂରିତ ଗଲା ମୋର କ୍ଷୟେ ॥
ତୁମ୍ଭ ପ୍ରସାଦେ ହେଲିପାର । ସୁଖେ ବସିବି ସ୍ୱର୍ଗପୁର ॥
ଆଉ କଥାଏ ମୋତେ କହ । ଧର୍ମ ବିଚାରି ଶିକ୍ଷା ଦିଅ ॥
ପୁଣ୍ୟ କରିବି କେଉଁପରି । କ୍ଷେମାତ କହନ୍ତୁ ବିସ୍ତାରି ॥
କନ୍ୟା ବୋଇଲା ଶୁଣବାବୁ । ପରକୁ ହିଂସା ନ କରିବୁ ॥
ସତ୍ୟ କହିବୁ ପ୍ରତି ଦିନ । ଛାଡ଼ିବୁ କୂଟ ବୁଦ୍ଧିମାନ ॥
ଈଶ୍ୱର ଦେବତାଙ୍କୁ ନିତ୍ୟେ । ସେବା କରିବୁ ଦୃଢ଼ଚିତ୍ତେ ॥
ସାଧୁଙ୍କୁ ଦେଖିଲେ ନୟନେ । ପୂଜିବୁ ଦେବତା ସମାନେ ॥
ଏହି ଯେ ଅନିତ୍ୟ ସଂସାର । ସର୍ବଦା ଏଥାଏ ଶରୀର ॥
ଦେହ ବୋଲିଣ କହଯାହା । ଶୁଣ କହିବା ତୋତେ ତାହା ॥
ରକତ ମାଂସ ଅସ୍ଥି ଚର୍ମ । ନଖ ଦର୍ଶନ କେଶ ରୋମ ॥
ପିଳୋହ ଅନ୍ତ ପିତ୍ତ ନାଡ଼ୀ । ଛଦଛି ରୋମ ଚର୍ଜ୍ଜୁ ଭିଡ ॥
ଆବର ଅଛି ମୂଳମଳ । ଚୌଷଠି ରୋଗ କଲ୍ଲୋଳ ॥
ଜୀବ ଆତ୍ମାକୁ ଏଥେ ଥୋଇ । ପବନ ପ୍ରକୃତି ମିଶାଇ ॥

---

କଷଣ — କଷ୍ଟ

ପୁଣ ପାଇଛୁ ପଞ୍ଚମନ । ନିଗୁଣେ କରିଛୁ ବନ୍ଧନ ॥
ଏମନ୍ତ ଭାବେ ଏହୁଦେହ । ଲାଗି ଅଛଇ ମାୟା ମୋହ ॥
ଏଣୁକରି ଚରିତ ନୁହଇ । ପାଣି ଫୋଟକା ପ୍ରାୟେ ଯାଇ ॥
ପୁତ୍ର ଭାର୍ଯା ଅର୍ଥ ପ୍ରାଣ । ସବୁ ଅଟଇ ଅକାରଣ ॥
ସୁଜନ ଜନେ ଏହା ଜାଣନ୍ତି । ବିଷୟ ହ୍ରଦେ ନ ପଡ଼ନ୍ତି ॥
ତୁ ଏବେ ମୋର ବୋଲକର । ରଜ ତାମସ ପରିହର ॥
ଏମନ୍ତ ପାରୁ ଯେବେ କରି । ଅନ୍ତେ ଲଭିବୁ ନରହରି ॥
ଏମନ୍ତ ଶୁଣି ସେ ରାକ୍ଷସ । ମନରେ ହୋଇଲା ହରଷ ॥
କାଞ୍ଚନମାଳୀ କହେ ଗୁହ୍ୟ । ପ୍ରଣାମ କରିଣ ବୋଲଇ ॥
ଶ୍ରେମାତଃ ସ୍ୱର୍ଗକୁ ଯାଉଛି । ଆଜ୍ଞା ଦିଅସି କମଳାକ୍ଷି ॥
ସୁନ୍ଦରୀ ଦେଲାକ ଆଦେଶ । ଯାଇଁ ସ୍ୱର୍ଗରେ ସୁଖେ ବସ ॥
ଏମନ୍ତ ବୋଲି ଅପସରୀ । ଗଲା ସେ କଇଳାସ ଗିରି ॥
ଦାନବ ମୁକତ ହୋଇଲା । ବିମାନେ ବସି ସ୍ୱର୍ଗେ ଗଲା ॥
ଗନ୍ଧର୍ବ ଯକ୍ଷ ବିଦ୍ୟାଧରୀ । ବିବିଧ ମତେ ନୃତ୍ୟ କରି ॥
ସକଳେ ଅପସରୀ ମିଳି । ଆନନ୍ଦେ ଦେଲେ ହୁଳହୁଳି ॥
ଅମର ପୁରେ ପରବେଶ । ରଥରୁ ଓହ୍ଲାଇ ରାକ୍ଷସ ॥
ବ୍ରହ୍ମା ବାସବଙ୍କୁ ଦେଖିଲା । ଦୂରରୁ ନମସ୍କାର କଲା ॥
ବସିଲା ଦେବସଭା ମଧ୍ୟେ । ହୋଇଣ ଅଛନ୍ତି ବିବୁଧେ ॥
କହନ୍ତି ପ୍ରଭୁ ଖଡ୍‌ଗଧର । ଉଦ୍ଧବ ମନେ ହେତୁକର ॥
ମାଘ ସ୍ନାହାନ ଫଳ ଯେତେ । ବଚନେ କହିବା ତା କେତେ ॥
କାଞ୍ଚନମାଳୀ ଅପସରୀ । ଥିଲା ସେ ବେଶ୍ୟା ତନୁଧରି ॥
ମାଘ ସ୍ନାହାନ କଲାମାନେ । କଳୁଷ ନରହିଲା ତାହେ ॥
ଆପଣେ ତରିଲା ତରୁଣୀ । ପରକୁ ତାରିଲାକ ପୁଣି ॥
ଏ ମାଘ ମାହାତମ୍ୟ ଗ୍ରନ୍ଥ । ପଦ୍ମ ପୁରାଣରୁ ସମ୍ଭୂତ ॥
ଏହା ଯେ ପଢ଼ନ୍ତି ଶୁଣନ୍ତି । ସକଳ ପାପରୁ ତରନ୍ତି ॥
ଅନେକ ଧର୍ମ ତାକୁ ଅଛି । ଭଣେ ନୃସିଂହ ଦାସ ବସି ॥
କହଇ ଧାଜ କୃଷ୍ଣ ଦାସ । ଶଏ ସଇଁତିରିଶରେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ କାଞ୍ଚନମାଳୀ ଅପସରୀ ବ୍ରହ୍ମରାକ୍ଷସ ନିସ୍ତାରଣେ ନାମ ଷଡ୍‌ବିଂଶୋଽଧ୍ୟାୟଃ

—X—

---

ରକ୍ଷୁ — ଦଉଡ଼ି
ଅକାରଣ — ଅଦରକାରୀ
ହରଷ — ଆନନ୍ଦ

# ସପ୍ତବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପୁରୁଷ ଉତ୍ତମ । ଶୁଣହେ ମାଘ ମହାତମ ॥
ମାଘ ସ୍ନାହାନ କଲେନର । ଅଶେଷ ପୁଣ୍ୟ ହୁଏତାର ॥
କାଞ୍ଚନମାଳୀ ପରସାଦେ । ରାକ୍ଷସ ନିସ୍ତରିଲା ହାଦେ ॥
ସମସ୍ତେ ଦେଖିଣ ହରଷ । କହିଲେ ସାଧୁ ସାଧୁ ଘୋଷ ॥
ପୂର୍ବେ ଯେ ଥିଲେ ପଞ୍ଚନାରୀ । ଅଟନ୍ତି ସ୍ୱର୍ଗ ଅପସରୀ ॥
ଅଗ୍ନିକା ଠାରୁ ଶାପ ପାଇ । ଥିଲେ ପିଶାଚୀ ରୂପ ହୋଇ ॥
ଲୋମଶ ଋଷିଠାରୁ ଶୁଣି । ସ୍ନାହାନ କଲେ ସେ ତରୁଣୀ ॥
ମାଘ ସ୍ନାହାନ ସର୍ବେ କଲେ । ଶାପରୁ ମୋକ୍ଷ ହୋଇଗଲେ ॥
ଉଦ୍ଧବ ଶୁଣି କୃଷ୍ଣ କଥା । ପଦ୍ମ ଚରଣେ ଦେଲାମଥା ॥
ବୋଲଇ ହୋଇ କୃତକୃତ୍ୟ । ଏକଥା କହ ଜଗନ୍ନାଥ ॥
ସେ ପଞ୍ଚକନ୍ୟା କାହିଁ ଥିଲେ । କେମନ୍ତେ ଶାପ ସେ ପାଇଲେ ॥
କେହୁ ତାଙ୍କର ପିତାମାତା । କାହାର ଅଟନ୍ତି ଦୁହିତା ॥
ଏପୁଣି କସ ଦ୍ରୋହ କଲେ । ଅଗ୍ନିକା କମ୍ପା ଶାପଦେଲେ ॥
ଏକଥା କହିବା ଗୋସାଇଁ । ଶୁଣିଲେ ପ୍ରତେ ସିଦ୍ଧମୁହିଁ ॥
ଉଦ୍ଧବ ବାକ୍ୟେ ନାରାୟଣ । କହନ୍ତି ସୁଦୟା କରଣ ॥
ତୁ ଯାହା ପୁଚ୍ଛିଲୁ ବିସ୍ତାରି । କହିବା ଆଦି ଅନ୍ତ କରି ॥
ଏକଥା କହଇ ହରଷ । ଶୁଣିଲେ ଖଣ୍ଡିବ କଲ୍ମଷ ॥
ଶୁଣ ଉଦ୍ଧବ ମନଭାବେ । କସ ଚରିତ ହେଲା ପୂର୍ବେ ॥
ସୁଖ ସମ୍ପଦ ଗନ୍ଧର୍ବର । ଏକ ଦୁହିତା ଥିଲା ତାର ॥
ନାମ ତାହାର ପ୍ରମୋହନା । ବଡ଼ହିଁ ସୁନ୍ଦରୀ ଅଙ୍ଗନା ॥
ରୂପେ ସମାନ ନାହିଁ ତାଙ୍କୁ । ମୋହ ପାଉଇ ଈଶ୍ୱରଙ୍କୁ ॥
ସୁଶୀଳ ଗନ୍ଧର୍ବର ଝିଅ । ଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ଦେହ ॥
ତା ନାମ ଅଟଇ ସୁଶୀଳା । ଜଗନ୍ମୋହନୀ ସେ ଅବଳା ॥
ସୁନ୍ଦରୀ ଗନ୍ଧର୍ବର ସୁତା । ଅତ୍ୟନ୍ତ ସୁନ୍ଦରୀ ବନିତା ॥
ସ୍ୱୟମ୍ବରା ବୋଲି ତାର ନାମ । ରୂପେ ତାହାକୁ ନାହିଁ ସମ ॥

ପ୍ରତେ — ବିଶ୍ୱାସ        କ୍ଷିଣିଖ — ଶର

ଚନ୍ଦ୍ରିକା ନାମେ ତା ନନ୍ଦନୀ । ଶରଦ ଚନ୍ଦ୍ରମା ବଦନୀ ॥
ବ୍ରହ୍ମାଙ୍କୁ ପାରଇ ସେ ମୋହି । ରୂପେଣ ସମ ନାହିଁ କେହି ॥
ପ୍ରମୋଦ ଗନ୍ଧର୍ବ କୁମାରୀ । ରୂପେ ଜିଣଇ ଇନ୍ଦ୍ରପୁରୀ ॥
ନାମ ତା ଅଟଇ ପ୍ରଭବା । ପାର୍ବତୀ ପ୍ରାୟେ ଦିଶେ ଶୋଭା ॥
ଏ ପଞ୍ଚକନ୍ୟା ବଡ଼ ପ୍ରୀତି । ନିରତେ ସଙ୍ଗ ନ ଛାଡନ୍ତି ॥
ସମ ବୟସୀ ପଞ୍ଚବାଳୀ । ବିଶେଷ ଅଟଇ କଳାଳୀ ॥
ଏପଞ୍ଚ ସଙ୍ଗାତ ଅଟନ୍ତି । ସଙ୍ଗ ନିମିଷେ ନ ଛାଡ଼ନ୍ତି ॥
ଚନ୍ଦ୍ରମା ପ୍ରାୟେ ତାଙ୍କ ମୁଖ । ନୟନ ମଦନ ବିଶିଖ ॥
ନୀଳ କୁଟିଳ ଶୁକ୍ଳବେଶ । ସୁଗନ୍ଧ ପୁଷ୍ପେ ହୋଇ ବେଶ ॥
ରୁଚିର ଲଲାଟ ଘଟନ । ଲଳିତ କନ୍ଦର୍ପ କମାଣ ॥
ତିଳ କୁସୁମ ପ୍ରାୟେ ନାସା । ଅଭିର ପିକବାଣୀ ଭାଷା ॥
ଗଜ ମୁକୁତା ପ୍ରାୟେ ଦନ୍ତ । ଅଧର ବନ୍ଧୁଲ ସଂଜାତ ॥
କମ୍ବୁ ଆକାର କଣ୍ଠଧ୍ୱନି । କର୍ଣ୍ଣିକ କାମଦେବ ପାଣି ॥
ବେନି ଉରଜ ବଡ଼ ଉଚ । କନକ କୁମ୍ଭ ପ୍ରାୟେ ସଞ୍ଚ ॥
ପଦ୍ମ ନାଡ଼କ ବାହୁବେନି । ଅଙ୍ଗୁଳି ଚମ୍ପାକଢ଼ି ଜିଣି ॥
ଡମ୍ବରୁ ପ୍ରାୟେ ମଧ୍ୟକ୍ଷୀଣ । ଉଲଟ କଦଳୀ ଜଘନ ॥
ଶିରୀଷ ପୁଷ୍ପ କୋମଳାଙ୍ଗୀ । ମତ୍ତବାରଙ୍ଗୀ ପ୍ରାୟ ଭଙ୍ଗୀ ॥
ଦିବ୍ୟ ବସନ ଅଳଙ୍କାର । ଭୂଷଣ ତାହାଙ୍କ ଶରୀର ॥
ଏଭାବେ ସେ ପଞ୍ଚ ନାୟିକା । ଏକୁଁ ଆରେକ ସେ ଅଧିକା ॥
ଥାନ୍ତି ଯେ ଏକପ୍ରାଣ ଜାଣି । କ୍ଷଣେହେଁ ନ ଛାଡ଼ନ୍ତି ପୁଣି ॥
ଦିନେ ବାହାର ହେଲେ ବାଳୀ । ସ୍ନାହାନ ଅର୍ଥେ ଗଲେଚଳି ॥
ମିଳିଲେ ମାନ ସରୋବରେ । ସ୍ନାହାନ କଲେ ଧାଡିକାରେ ॥
କୂଳେ ସ୍ଥାପିଲେ ଭଇରବୀ । ତାହାଙ୍କୁ ଭକ୍ତିଭାବେ ସେବି ॥
ଗନ୍ଧ ଚନ୍ଦନ ପୁଷ୍ପମାନ । ଆବର ଯେତେ ବିଧିମାନ ॥
ଦେଇ ପୂଜନ୍ତି ଶାକମ୍ଭରୀ । ଲକ୍ଷେକ ପ୍ରଣମିତ 'କରି ॥
ଗାନ୍ଧାର ରାଗେ ଗାଇଗୀତ । ବିବିଧ ରୂପେ କଲେ ନୃତ୍ୟ ॥
ବୋଇଲେ ବୀଣା ଯନ୍ତ୍ର ତାଳ । କଂସାର ଝଞ୍ଜାଳ ମର୍ଦ୍ଦଳ ॥

---

ବିଶିଖ — ଶର
ଅଙ୍ଗନା — ସ୍ତ୍ରୀ
କନକ — ସ୍ୱର୍ଣ୍ଣ
ନନ୍ଦନୀ — ଝିଅ
ଶିରୀଷ — ସୋରିଷ
ଭଇରବୀ —

ନାଚନ୍ତି ସାନନ୍ଦ ହୋଇଣ । ସ୍ତୁତ କରନ୍ତି ପୁଣ ପୁଣ ॥
ବର ମାଗନ୍ତି ଯେଝାଇଛା । ଯେଣେ ପୂରଇ ମନୋବାଞ୍ଛା ॥
ଏମନ୍ତେ ପୂଜନ୍ତି ଗଉଣୀ । ମିଳଲେ ଏକ ବ୍ରହ୍ମଗୁଣୀ ॥
ସେ ଦ୍ୱିଜ ତପେଣ ନର୍ଜିତ । ବେଦବଧି ଋଷିଙ୍କ ସୁତ ॥
ଅର୍ଗ୍ନିକା ବୋଲି ତାଙ୍କ ନାମ । ରୂପେଣ ପଞ୍ଚାନ୍ତର କାମ ॥
ଋଷିର ଶାଖା ଦ୍ରବ୍ୟଟି । ଚନ୍ଦ୍ରମା ପ୍ରାୟ ମୁଖ ଗୋଟି ॥
ଶ୍ରବଣେ ଅଛଇ କୁଣ୍ଡଳ । କଣ୍ଠେ ଲମ୍ବଇ କାଷ୍ଠମାଳ ॥
ପଇତା ଶୋହେ କନ୍ଧମୂଳ । ବାମେ ଅଛଇ କମଣ୍ଡଳ ॥
ଦକ୍ଷିଣ କରେ ଶୋଭାଦଣ୍ଡ । ଇନ୍ଦ୍ରଙ୍କ ହାତେ କ କୋଦଣ୍ଡ ॥
ଧାଗୃତ୍ତ ମାଳ ହେମମୟେ । କଟି ତଟରେ ଶୋଭପାଏ ॥
କୁରଙ୍ଗୀ ଦେହ ଚର୍ମଗୋଟି । ପକାଇ ଅଛନ୍ତି ବସ ପିଠି ॥
କେତେ କହିବା ତାଙ୍କ ବେଶ । ଅଟନ୍ତି ବ୍ରହ୍ମାଙ୍କ ସଦୃଶ ॥
ଗଣନ କଲେ ଧୀରେ ଧୀରେ । ଯାଇ ମିଳଲେ ନଦୀତୀରେ ॥
ଋଷିଙ୍କି ଦେଖିଣ ଯୁବତି । ହରଷ କଲେ ତାଙ୍କ ମତି ॥
ତକ୍ଷଣେ ନୃତ୍ୟଗୀତ ତେଜ । ଋଷିଙ୍କ ଠାରେ ମନମଜ୍ଜି ॥
ନୟନ ଦେଖି ତାଙ୍କ ରୂପ । ଅଙ୍ଗେ ବେଢ଼ିଲେ ପୁଷ୍ପଗୁଚ୍ଛ ॥
ଶବର ଶରେ ମୃଗଯେହ୍ନେ । ଧାତର ହେଲେ ବାଳୀତେହ୍ନେ ॥
ମଦନ ଉନମତ୍ତ ହୋଇ । ନିରେଖି ଅଛନ୍ତି ଅନାଇ ॥
ବରହେ ଅସ୍ଥିର ହୋଇଲେ । ବିନୋଦ ପାଦେ ପୂଜାକଲେ ॥
ଆଶ୍ଚର୍ଯ୍ୟ ହୋଇଣ କାମିନୀ । ବୋଲନ୍ତି ଏ ପୁରୁଷ ଧନୀ ॥
କାହୁଁଗୋ ଏଥକୁ ଅଇଲା । ଅମ୍ଭର ଚିତ୍ତ ହରିନେଲା ॥
କେବୋଲେ ଅଟନ୍ତି ମଘବା । ଭ୍ରମଣେ ଆସିଛନ୍ତି ଅବା ॥
କେବୋଲେ ଈଶ୍ୱର ଅଟନ୍ତି । ଆମ୍ଭର ଫେଡ଼ିବେ ଦୁର୍ଗତି ॥
କଅବା ଅଟନ୍ତି ଅନଙ୍ଗ । ରତିତ ନାହିଁ ଏହାସଙ୍ଗ ॥
କେବୋଲେ ଚନ୍ଦ୍ର ଅବା ଏହି । ଏତେ ସୁନ୍ଦର ଅବାକାହିଁ ॥
କେ ବୋଲେ ସ୍ୱର୍ଗର ଗନ୍ଧର୍ବ । ଏମନ୍ତ ଅନେକ ଭଣିବ ॥
କେ ବୋଲେ ଅଶ୍ୱିନୀ କୁମାର । ତେଜ ଅଇଲେ ସ୍ୱର୍ଗପୁର ॥
କେ ବୋଲେ ନୁହଇ ଏସନ । ସେହୁ ଅଟନ୍ତି ବେନଜନ ॥
ଅଶ୍ୱିନୀ କୁମାର ହୋଇଲେ । ଆସନ୍ତେ ବେନଜନ ଭଲେ ॥

---

କୋଦଣ୍ଡ — ଧନୁ    ଅନଙ୍ଗ — କନ୍ଦର୍ପ

କେ ବୋଲେ ଜାଣିବା କେମନ୍ତେ । ପୁଛିଲେ ଯିବା ତା ସଙ୍ଗତେ ॥
କେ ବୋଲେ ମୁଁ ଆଗେ ରମିବ । ଏହାର ଘରଣୀ ହୋଇବ ॥
କେ ବୋଲେ ଭାଗ୍ୟଥିବ ଯାର । ତାହାର ହୋଇବ ଏବର ॥
ସ୍ତ୍ରିଙ୍କ ରୂପଗୁଣ ଗୃହି । ତପୀଙ୍କ ତପ ନାଶଯାଇ ॥
ସ୍ତ୍ରିଙ୍କ ନୟନ ଶରରେ । ତଳ ପଡ଼ନ୍ତ ସୁରନରେ ॥
ନମାନ କୁଳ ଶୀଳ ଲଜ । ମଦନେ ହୁଅଇ ଅଧୈର୍ଯ୍ୟ ॥
ବ୍ରହ୍ମା ଈଶ୍ୱର ହୃଷୀକେଶ । ସେ ପୁଣି ସ୍ତ୍ରିସ୍ୱଭାବେ ବଶ ॥
ତେତେ ଲୋକଙ୍କ ଚିତ୍ତ ହରି । ମୋହ କରନ୍ତ ଏହୁନାରୀ ॥
ମୁଁ ଘୁର ସ୍ୱଭାବେ ମନୁଷ୍ୟ । ମୁଁ କମା ନୋହିବଇଁ ବଶ ॥
ଯେ ଅତ ଦୃଢ଼ ନ ରଖନ୍ତ । ଯୁବତୀ ସଙ୍ଗେ ସେ ରମନ୍ତ ॥
ସକଳ ଧର୍ମ ନାଶ ଯାଇ । ଅନ୍ତେଣ ନରକେ ପଡ଼ଇ ॥
ସେମାନେ ନ ଆସୁ ଏଠାକୁ । ଯିବ ମୁଁ ନିଜ ଆଶ୍ରମକୁ ॥
ଏତେ ବଚ୍ଚିର ମୁନିବର । ତକ୍ଷଣେ ହୋଇଲେ ଅନ୍ତର ॥
ବିଷ୍ଣୁ ଚରଣେ ଚିତ୍ତଦେଇ । ଚଳିଲେ ଉଦବେଗ ହୋଇ ॥
ମିଳିଲେ ନିଜ ଆଶ୍ରମରେ । ଶୁଣ ଉଦ୍ଧବ ମନସ୍ଥିରେ ॥
ସେ ପାଞ୍ଚ କନ୍ୟା ନପାକୂଳେ । ଭାଳନ୍ତ ମଦନ ଆକୁଳେ ॥
ବୋଲନ୍ତ କାହୁଁ ସେ ଅଇଲା । ପୁଣି ସେ ଅନ୍ତର୍ଦ୍ଧାନ ହେଲା ॥
ଅତ ସୁନ୍ଦର ତାର କାୟା । ଜାଣଇ ଇନ୍ଦ୍ରଜାଲ ମାୟା ॥
ହରିଲା ମନବୁଦ୍ଧି ପ୍ରାଣ । ଏତେ କହୁଛୁ ପଞ୍ଚବାଣ ॥
କାହିଁ ପାଇବା ତାଙ୍କୁ ଭେଟ । ଦେବତା ଗଲା ଏତେ କଷ୍ଟ ॥
ଖରେଣ ଛାଡ଼ନ୍ତ ନିଃଶ୍ୱାସ । ପୁଣି ଗୃହାନ୍ତ ଦଶଦଶ ॥
ଡାକନ୍ତ କ୍ରୋଧଭର ହୋଇ । କେମନ୍ତ ଗଲ ତୁମ୍ଭେ କାହିଁ ॥
ଏତେ ନିର୍ଦ୍ଦୟ ତୁମ୍ଭ ଚିତ୍ତ । କରୁଣା ନକର କିଞ୍ଚିତ ॥
ଆତ୍ମେତ ନୋହୁ ଅପରାଧୀ । ପ୍ରାପତ ହୋଇଥିଲୁ ନିଧି ॥
ବିଧାତା ଦେଖାଇ ହରିଲା । ସ୍ୱପନ ଧନପ୍ରାୟେ ହେଲା ॥
ଆମ୍ଭର କର୍ମ ବଡ଼ ହୀନ । ପୂର୍ବରେ କରିନାହୁଁ ପୁଣ୍ୟ ॥
ତୁମ୍ଭେ ସେ ମହତ ପୁରୁଷ । ତୁମ୍ଭଙ୍କୁ ଅଗୋଚର କିସ ॥
ଶାସ୍ତ୍ରଯେ ପୁରାଣ ବଖାଣ । ପରର ଦୁଃଖ କି ନଜାଣ ॥

---

ଅନ୍ତର୍ଦ୍ଧାନ — ଲୁଚିବା    ଖରେଣ — ଦ୍ରୁତଭାବେ
ଦଶଦଶ — ଦଶଦିଗ    କରୁଣା — ଦୟା

ସୁଦୟା କଣ୍ଠ ଦେଖାଇଅ । ପୋଡ଼ୁଛି କାମାନଳେ ଦେହ ॥
ତୁମ୍ଭ ଦର୍ଶନେ ଶାନ୍ତ ହେଉ । ବିରହ ତାପ ହୃଦୁ ଯାଉ ॥
ଯଦ୍ୟପି ନ ଦେଖିବୁ ତୋତେ । ବଞ୍ଚିବୁ ନାହିଁ କଦାଚିତେ ॥
ଜୀବନ ଛାଡ଼ିବୁ ଅବଶ୍ୟ । ପାଇବ ସ୍ତ୍ରୀହତ୍ୟା ଦୋଷ ॥
ଏସନ ବୋଲିଣ ସୁନ୍ଦରୀ । ହୃଦେ ବହୁତ ଚିନ୍ତା କରି ॥
କେ ବୋଲେ ପାଳିବେଳ ହୁଏ । କଳି କରିବେ ବାପ ମାଏ ॥
କେ ବୋଲେ ବେଗେ ଯିବା ଚାଲ । ଏକଥା ମାନ ନୋହେ ଭଲ ॥
ଏମନ୍ତ ବୋଲିଣ ତରୁଣୀ । ଗମନ କଲେ ତତକ୍ଷଣି ॥
ଅଳପ ଧଇର୍ଯ୍ୟ ଧରିଣ । ଚଳିଲେ କଷ୍ଟେ କଷ୍ଟେ ପୁଣ ॥
ଗଲେ ସେ ଯେ ଯାହା ଭବନେ । ଅଗ୍ନିକା କଥା ଅଛି ମନେ ॥
ଜନନୀ ପଚାରନ୍ତି ଚାହିଁ । ବିଳମ୍ବ କଲ କାହିଁ ପାଇଁ ॥
ଦ୍ୱାଦଶ ଦଣ୍ଡ ବେଳ ଆସି । କାହାର ପୁରେ ଥିଲ ବସି ॥
ପ୍ରଭାତୁଁ ସ୍ନାନ କରି ଗଲ । ଏତେ ଉଚ୍ଛୁର କଟାଇଲ ॥
କନ୍ୟା ବୋଇଲେ ମାଏ ଶୁଣ । ଗଲୁ ସେ ସ୍ନାହାନ କରିଣ ॥
ସଖିଙ୍କ ସଙ୍ଗେ ସଙ୍ଗ ହୋଇ । କରିଲୁ ଜଳ କ୍ରୀଡ଼ା ତହିଁ ॥
ସ୍ନାହାନ କରିଣ ଆଇଲୁ । କୂଳେ ବାଲୁକା ପୂଜା କଲୁ ॥
ମାତିଲୁ ପୁଣି ହାସ୍ୟରସେ । ତେଣୁ ଉଚ୍ଛୁର ହେଲା ଶେଷେ ॥
ଶୁଣି ଜନନୀ ହେଲେ ତୁନ । ଏମନ୍ତେ ସେ ପାଞ୍ଚ କାମିନୀ ॥
ମଦନ ପୀଡ଼ା ଅଙ୍ଗେ ପାଇ । ଅଗ୍ନିକା ରୂପ ମନେ ଧ୍ୟାଇ ॥
କାମେ ଆସକ୍ତ ତାଙ୍କ ଦେହ । କ୍ଷଣ କ୍ଷଣକେ ଯାନ୍ତି ମୋହ ॥
ଶୁଅନ୍ତି ଉଠନ୍ତି ବସନ୍ତି । ହୃଦ ବେଦନା ନୋହେ ଶାନ୍ତି ॥
କେଶ ବସନ ଉପେକ୍ଷିଲେ । କିଛିହିଁ ଭୋଜନ ନ କଲେ ॥
ଚନ୍ଦନ କର୍ପୂର କସ୍ତୁରୀ । ମଣିଲେ ବିଷ ପ୍ରାୟେ କରି ॥
କ୍ଷଣେହେ ସୁଖ ନାହିଁ ମନ । ଯେସନେ ପୋଡ଼ୁଥାଇ ବନ ॥
ତେଜିଲେ ରତ୍ନମୟ ପୁର ॥ ମଣିଲେ ଅରଣ୍ୟ ଆକାର ॥
ଖଟ ସୁପାତି ତେଜ୍ୟାକରି । କୋମଳ ପତ୍ରେ ଶଯ୍ୟାପାରି ॥
କୋମଳ ପତ୍ର ଶଯ୍ୟା କରି । ପଡ଼ୁଡ଼ ଅଛି କେଉଁନାରୀ ॥
କେହି ଶୀତଳ ପୟଃପାଶେ । ଶୋଇଲା ଜଳଯନ୍ତ୍ର ବସେ ॥
କେତୋଟା ବୃକ୍ଷଛାୟା ଦେଖି । ତହିଁ ଶୋଇଲା ଚନ୍ଦ୍ରମୁଖୀ ॥

---

ସୁପାତି — ଶଯ୍ୟା    ବିଷାଦ — ଦୁଃଖ

କେହ୍ଵ କନ୍ଦର୍ପ ଶରଡରେ । ମହାଦେବଙ୍କ ସେବାକରେ ॥
ମୃଜଇ ନାନା ଦ୍ରବ୍ୟଦେଇ । ବନସ୍ଥ ହୋଇଣ କହଇ ॥
ଯେବଣ ପୁରୁଷକୁ ଡୋଳେ । ଦେଖିଲୁ ମହେଶ୍ଵର କୂଳେ ॥
ତାହାକୁ ଦିଅ ମୋତେ ବର । ମହେଦେବ ଏହ୍ଵ କୃପାକର ॥
ଏହ୍ଵ ପ୍ରକାରେ ପଞ୍ଚବାଳୀ । ବରଦେ ହୁଅନ୍ତି ଆକୁଳ ॥
ମନରେ ହୋଇଣ ବିଷାଦ । ବଜାନ୍ତି ବୀଣା ନାନା ବାଦ୍ୟ ॥
ଲେଉନ୍ତି ପାତକ ପବନ । ବିରସ ସବୁର ବଦନ ॥
ଶୁଆ ଶାରୀଙ୍କି ନ ପଢ଼ାଇ । ମଉନ ବ୍ରତେ ଛନ୍ତି ରହି ॥
ଯେସନେ ଯୋଗୀଜନମାନେ । ବିଷ୍ଣୁଙ୍କୁ ଚିନ୍ତୁଥାନ୍ତି ଧ୍ୟାନେ ॥
ଏହି ପ୍ରକାରେ ପାଞ୍ଚନାରୀ । ଅଗ୍ନିକା ରୂପ ଚିନ୍ତାକରି ॥
ନୟନ ନାସାଅଗ୍ରେ ଦେଇ । ଚିତ୍ତରେ ପୁରୁଷକୁ ଧ୍ୟାୟୀ ।
ରଜନୀ ହୋଇଲାକ ଆସି । ଅନନ୍ତେ ପୁହାଇଲେ ନିଶି ॥
ପୁଣିହିଁ ସେ ପଞ୍ଚ ଯୁବତୀ । ପ୍ରଭାତୁ ଘରୁ ବାହାରନ୍ତି ॥
ସ୍ନାହାନ କରିବାକୁ ଗଲେ । ମିଳଲେ ସେହୁ ନଦୀକୂଳେ ॥
ସ୍ନାହାନ କରି ପଞ୍ଚନାରୀ । ପୁଣିହିଁ ପୂଜନ୍ତି ଗଉରୀ ॥
ଚନ୍ଦନ ଗନ୍ଧପୁଷ୍ପ ନେଇ । ଆବର ଧୂପଦୀପ ଦେଇ ॥
ପୂଜନ୍ତି ହୋଇଣ ହରଷ । ବର ମାଗନ୍ତି ସେ ପୁରୁଷ ॥
ସେ ଦ୍ଵିଜ କଥା ଘେନୁଥାନ୍ତି । ଚତୁର୍ଦ୍ଦିଗକୁ ସେ ଚାହାନ୍ତି ॥
ଏସନ ବେଳେ ସେ ବ୍ରାହ୍ମଣ । ପ୍ରଭାତୁ ଶଯ୍ୟା ଉପେକ୍ଷିଣ ॥
ପିତାଙ୍କୁ କହିଣ ଅଇଲା । ନଦୀରେ ପ୍ରବେଶ ହୋଇଲା ॥
ତାହାଙ୍କୁ ଦୂରହୁଁ ଦେଖିଲେ । ବହୁତ ଆନନ୍ଦ ହୋଇଲେ ॥
ତକ୍ଷଣେ ଧାଇଁଲେ ଯୁବତୀ । ଅତି ହରଷ କଲେମତି ॥
ପତଙ୍ଗ ଅନଳ ଦେଖିଣ । ଯେସନେ ପଡ଼ଇ ଉଡ଼ିଣ ॥
ଯେସନେ କ୍ଷୁଧା ତୃଷା ପାଇ । ଅତି ଆରତେ ମୃଗୀ ହୋଇ ॥
ଧାମଇ ଜଳଦମ୍ଭ ଦେଖି । ତେସନେ ଧାଇଁବେ ମୃଗାକ୍ଷୀ ॥
ମିଳଲେ ମୁନଙ୍କର ପାଶେ । ତାସଙ୍ଗେ ରମିବାର ଆଶେ ॥
ବୋଲନ୍ତି ମୁନି ମୁଖ ଚାହିଁ । ହେନାଥ ଆଜ ଯିବୁ କାହିଁ ॥
କାଲ ଯେ ଆମ୍ଭଙ୍କୁ ଭଣ୍ଡିଲୁ । ଆମ୍ଭର ପ୍ରାଣ ଘେନିଗଲୁ ॥

---

ଅନଳ — ଅଗ୍ନି ପତଙ୍ଗ — ପକ୍ଷୀ
ପାତକ ପାପ

ତୋ ରୂପ ଦେଖି ବଶହେଲୁ । ତୋପାଦେ ଶରଣ ପଶିଲୁ ॥
ଆମ୍ଭେ ତୋହର ଦାସୀପଣେ । ସେବା କରିବୁ ଅନୁକ୍ଷଣେ ॥
ଯୁବକ ପଣକୁ ଭଜନ । ତୋ ବିନୁ ନ ରୁଚଇ ଆନ ।
ହସି ବୋଲନ୍ତି ବ୍ରହ୍ମଚାରୀ । ଯାହାସେ କହିଲେ ସୁନ୍ଦରୀ ॥
ଏକଥା ନୁହଁଇ ଉଚିତ । ଅଛି ମୋ ବ୍ରହ୍ମଚାରୀ ବ୍ରତ ॥
ବ୍ରତ ଧରିଲେ ସିନା ବିଭା । ଗୁରୁଙ୍କ ଆଜ୍ଞା କି ଲଙ୍ଘିବା ॥
ଏଣେ ମୋ ନାହିଁ ବିଭାକାଳ । ତୁ ସଖି ନକର ଜଞ୍ଜାଳ ॥
ନିଷ୍ଠୁର ମୁନି ମୁଖୁଁ ଶୁଣି । ହସିଣ ବୋଲନ୍ତି ତରୁଣୀ ॥
ହେ ମୁନି ଏଡ଼େ ମୂର୍ଖ ତୁମ୍ଭେ । ଭଲ କହିଲୁ ସିନା ଆମ୍ଭେ ॥
ରତି ସୁଖରୁ ସୁଖ ନାହିଁ । ଏଥୁ ଅଧିକ ଭାଗ୍ୟ ବାହିଁ ॥
ଗନ୍ଧର୍ବ ବିଭା ଯେଉଁ ଭାବେ । ସେଭାବେ ବିଭା ହୁଅ ତେବେ ॥
ଏଥିକୁ ନ ବିଚାର କିଛି । ପ୍ରାପତ ନିଧି କେ ଏଡ଼ୁଛି ॥
କଳ୍କ ଔଷଧ ଯେବେ ଖାଇ । ଯାହା ଖାଇଲେ ଶୁଦ୍ଧ ହୋଇ ॥
ତାହା ଛାଡ଼ନ୍ତି ଯେହୁ ପ୍ରାଣୀ । ତାକୁଟି ଅଯୋଗ୍ୟରେ ଗଣି ॥
ଯେଅବା ନୀଚ ଲୋକହେବ । ଉତ୍ତମ ବିଦ୍ୟା ଜାଣିଥିବ ॥
ତାହାଙ୍କୁ ଗୁରୁପ୍ରାପ୍ତ କରି । ଶିଖିବ ନାମକୁ ବିସ୍ତାରି ॥
ଜାଣିବ ଅସଙ୍ଗତ ଠାବେ । ଧନ କାଞ୍ଚନ ଥିବ ଯେବେ ॥
ପାଇଲେ ନ ଛାଡ଼ିବ ତାହା । ବେଦ ଶାସ୍ତ୍ରରେ ଅଛି ଯାହା ॥
ଯେଅବା ଅନ୍ୟଜନ ହେଉ । ମେଳୁଲେ ଦିବ୍ୟସ୍ତ୍ରୀ ଥାଉ ॥
ସେଯେବେ ପ୍ରାପତ ହୋଇବ । ଅବଶ୍ୟ ଭୋଗହିଁ କରିବ ॥
ପୂର୍ବେ ଯେ ଭାଗ୍ୟ କରିଥାଇ । ଉତ୍ତମ ସ୍ତ୍ରୀ ବିଳସଇ ॥
ତୁ ପୁଣ୍ୟବନ୍ତ ମହାତମା । ଆମ୍ଭେ ସୁନ୍ଦରୀ ଦେବବାମା ॥
ତୋତେ ବରିଲୁ ଆମ୍ଭେ ବର । ଆମ୍ଭଙ୍କୁ ଘେନ ଭୋଗକର ॥
ପାରିଲ ପଦାର୍ଥ ଛାଡ଼ିଲେ । ଆଉ ଯେ ନପାଇ ଲୋଡ଼ିଲେ ॥
ମୁନି ବୋଇଲେ ସଖି ଶୁଣ । ଏକଥା ଅଟଇ ପ୍ରମାଣ ॥
ବିଶେଷ ଜ୍ଞାନୀ ଲୋକ ହୋଇ । ଧର୍ମ କେମନ୍ତେ ଛାଡ଼ିବଇଁ ॥
ଗୁରୁଙ୍କୁ ନ ପଚାରି ଏହା । କେମନ୍ତେ କରିବଇଁ ବିଭା ॥
ତୁମ୍ଭେ ଅବଳା ଗଣ ଯାଅ । ମୋଠାରେ ଆଶା ନ ବଳାଅ ॥
ଏମନ୍ତ ଶୁଣି ପଞ୍ଚସଖୀ । ମୁଖ ଶୁଖାଇ ହେଲେ ଦୁଃଖୀ ॥

---

ଭଜନ — ଯୋଗ୍ୟ    କାଞ୍ଚନ ... ସ୍ୱର୍ଣ୍ଣ

ଆକୁଳେ ବରବର୍ଣ୍ଣୀ ନାରୀ । ମୁନଙ୍କ ବାମପାଦ ଧରି ॥
ପୁରବା ଦକ୍ଷିଣ ଚରଣ । ଧଇଲା କବଡ଼ କରଣ ॥
ସୁଶୀଳା ଯାଇ ପୃଷ୍ଠପାଶେ । ବନ୍ଧନ କଲା ବାମପାଶେ ॥
ସୁସ୍ମର ପଛଆଡ଼େ ଥିଲା । ଦକ୍ଷିଣ ଭୁଜ ତା ଧଇଲା ॥
ଚନ୍ଦ୍ରିକା କଲା ଆଲିଙ୍ଗନ । ମୁଖରେ ଦଅଇ ଚୁମ୍ବନ ॥
ସ୍ତୁତି ପ୍ରାୟେକ ହାଇକରି । ଦେଖେଁ ଲାଗିଲେ ପଞ୍ଚନାରୀ ॥
ଅଗ୍ନିକା ପଳାଉଛି ଗୁଡ଼ । ରାଗେ ବୋଲଇ ଆଲୋମୂଢ଼ି ॥
ପିଶାଚୀ ପ୍ରାୟେ ଲାଗିଅଛ । ନାସ୍ତି ବୋଇଲେ ନ ଛାଡୁଛ ॥
ଏବେ ଲୋ ଘେନ ମୋର ଶାପ । ହୁଅଲେ ପିଶାଚୀ ସ୍ୱରୂପ ॥
ଋଷିଙ୍କ ଆଜ୍ଞାରେ ପ୍ରମାଣେ । ପିଶାଚୀ ହେଲେ ପାଞ୍ଚଜଣେ ॥
ଯହୁଁ ସେ ପିଶାଚୀ ହୋଇଲେ । ବିଚାରେ ମୁନଙ୍କି ବୋଇଲେ ॥
ଆମ୍ଭଙ୍କୁ ଶାପ ଦେଲୁ ଋଷି । ସମସ୍ତେ ହୋଇଲୁଁ ପିଶାଚୀ ॥
କିମ୍ପାଇଁ କଲୁ ଏଡ଼େ କୃତ୍ୟ । କେମନ୍ତେ ହୋଇବୁ ମୁକତ ॥
ଯେଅବା ଭକ୍ତ ଜନଠାରେ । ନଜାଣି ଦ୍ରୋହ କର୍ମ କରେ ॥
ମହାପାତକୀ ସେହି ଲୋକ । ଅନ୍ତେଣ ପଡ଼ଇ ନରକ ॥
ମଇତ୍ରଠାରେ ଯେଉଁଜନ । କରନ୍ତି ଦ୍ରୋହ କର୍ମମାନ ॥
ସେପ୍ରାଣୀମାନେ ବଡ ଦୋଷୀ । ଅନ୍ତେ ହୁଅନ୍ତି ନର୍କବାସୀ ॥
ଯେଅବା ଆଶ୍ରିତ ଜନଙ୍କୁ । ଅଦୋଷେ ଦଣ୍ଡନ୍ତି ତାହାଙ୍କୁ ॥
ମହାପାତକୀ ସେହୁ ନର । ଇହ ପରରେ ନାହିଁ ପାର ॥
ତୁମ୍ଭେ ଯେ ଶ୍ରୀ ହରିର ଦାସ । କ୍ଷମା ନକଲ ଆମ୍ଭ ଦୋଷ ॥
ପିଶାଚୀ କଲ ଶାପ ଦେଇ । ଏଡ଼େ ଦାରୁଣ ତୁମ୍ଭ ଦେହି ॥
ଭୁଞ୍ଜିଲୁ ଜନ୍ମ କର୍ମଫଳ । କେତେକ ବଞ୍ଚିବୁ ହନକାଳ ॥
ତୁମ୍ଭେଡ ଜଲୁଯେ ଏସନ । ଆମ୍ଭର ଶାପ ଏବେ ଘେନ ॥
ତୁହି ପିଶାଚ ଏବେ ହୁଅ । ଆମ୍ଭର ସଙ୍ଗେ ମିଳିଯାଅ ॥
ଅଗ୍ନିକା ମହାଭସ୍ମ କଲେ । ଏସନ ବୋଲି ଶାପ ଦେଲେ ॥
ଅଗ୍ନି ପିଶାଚ ରୂପ ହୋଇ । ସେକଥା ଅନ୍ୟଥା ନୁହଇ ॥
ପିଶାଚ ହୋଇ ବ୍ରହ୍ମଋଷି । ତାହାଙ୍କ ସଙ୍ଗତରେ ମିଶି ॥
ରହିଲେ ସେହି ନଦୀ ଘାଟରେ । କାନ୍ଦନ୍ତି ଅତି କୋଧଭରେ ॥

---

ଆଲିଙ୍ଗନ — କୋଳ

କ୍ଷୁଧା ତୃଷାରେ ପୀଡାପାଇ । ଅତି ବ୍ୟାକୁଳ ତାର ଦେହୀ ॥
କହନ୍ତି ପ୍ରଭୁ ଭଗବାନ । ଏକଥା ଅଟଇ ପ୍ରମାଣ ॥
କହଇ ଆଦ୍ୟଅନ୍ତ କରି । ତାହା ଶୁଣିଲେ ଭବୁତରି ॥
ଏଗ୍ରନ୍ଥ ସମାପତ ପାଏ । ଏହାଯେ ନିତ୍ୟ ଶୁଣୁଥାଏ ॥
ଖଣ୍ଡଇ ସକଳ ପାତକ । ଅନ୍ତେ ବସଇ ସ୍ୱର୍ଗଲୋକ ॥
ସୁଜନେ ତର ଏହା ଶୁଣି । ପାମର କୃଷ୍ଣଦାସ ଭଣି ॥
ଉଦ୍ଧବେ କହିଲେ ମୁକୁନ୍ଦ । ଏ ଦୁଇଣ ତରଣ ପଦ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ପଞ୍ଚକନ୍ୟା ବ୍ରହ୍ମରକ୍ଷି ପିଶାଚ କରଣେ ନାମ ସପ୍ତବିଂଶୋଽଧ୍ୟାୟ

—×—

# ଅଷ୍ଟାବିଂଶ ଅଧ୍ୟାୟ

## ଉଦ୍ଧବ ଉବାଚ

ଉଦ୍ଧବ ଗୋବିନ୍ଦ ବଚନେ । ବିସ୍ମୟ ହୋଇ ପଞ୍ଚମନେ ॥
ପୁଣି ଉଦ୍ଧବ ପଚ୍ଚାରଇ । ଶୁଣହେ ପ୍ରଭୁ ସ୍ୱବଗ୍ରାହୀ ॥
ଏ ପଞ୍ଚକନ୍ୟା ବ୍ରହ୍ମଋଷି । ହୋଇଲେ ପାଶାଚ ପିଶାଚୀ ॥
ସେ ରୂପେ କେତେକାଳ ଥିଲେ । କେମନ୍ତେ ଶାପରୁ ତରିଲେ ॥
ଏକଥା ବୁଝାଇ କହିବା । ଶୁଣିଲେ ସଂପ୍ରତେ କରିବା ॥

## ଶ୍ରୀ ଭଗବାନୁବାଚ

ଉଦ୍ଧବ ମୁଖୁଁ ଏହା ଶୁଣି । ବୋଲନ୍ତି ପ୍ରଭୁ ପଦ୍ମପାଣି ॥
ପଞ୍ଚ ଯୁବତୀ ସେ ବ୍ରାହ୍ମଣ । ପିଶାଚ ହେଲେ ଷଡ଼ଜଣ ॥
ରହିଲେ ସରୋବର ତଟେ । ଦିନ ବଞ୍ଚିଲେ ଅତି କଷ୍ଟେ ॥
ବାରତା ପାଇ ତାଙ୍କ ମାତ । ରୋଦନ କଲେକ ବହୁତ ॥
ଅଗ୍ନିକା ପିତା ଏହା ଶୁଣି । ଅନେକ ଶୋକ କଲା ପୁଣି ॥
ବୋଇଲା ବିଧାତା କଷଣ । କେବେହେଁ ନଯାଇ ମେଣ୍ଟଣ ॥
ସକଳ ଗୁଣରେ କୁଶଳ । ପ୍ରଶଂସା କରେ ଆଖଣ୍ଡଳ ॥
ଏହାର ପରି ପୁତ୍ର ମୋର । ବହିଲା ପିଶାଚ ଶରୀର ॥
ମୋର ଶରୀରେ ପ୍ରାଣଥାନ୍ତେ । ସୁପୁତ୍ର ମୂର୍ଚ୍ଛିବ କେମନ୍ତେ ॥
ଏମନ୍ତ ବୋଲି ଉଚସ୍ୱରେ । ରୋଦନ କଲାକ ଶୋକରେ ॥
ବିରସ ହୋଇ ବେଦନିଧି । କହୁଁ ନ ଦିଶଇ ବୁଦ୍ଧି ॥
ଏମନ୍ତେ କେତେକାଳ ଗଲା । ପ୍ରବେଶ ହେମ ଋତୁ ହେଲା ॥
ଧନୁ ଶୁକଳ ଏକାଦଶୀ । ଏମନ୍ତ ହୋଇଲାକ ଆସି ॥
ମାଘ ସ୍ନାହାନ କରିବାକୁ । ଲୋମଶ ଅଇଲେ ସେଠାକୁ ॥
ମିଳଲେ ନଗାଶରେ ଆସି । ଦେଖିଣ ଧାଇଁଲେ ପିଶାଚୀ ॥
ତାହାକୁ ଖାଇବା ନିମନ୍ତେ । ଧାଇଁଲେ ପଛକୁ ଉଦିତେ ॥

---

ରୋଦନ — କ୍ରନ୍ଦନ
ଆଖଣ୍ଡଳ — ସୂର୍ଯ୍ୟ
ସୁପୁତ୍ର — ଉତ୍ତମପୁଅ
ମୂର୍ଚ୍ଛିବ — ଗୁଡ଼ିବ
କଷଣ — କଷ୍ଟ
ବେଦନିଧି — ବ୍ରହ୍ମା

ମିଳଲେ ମୁନିପାଶେ ଯାଇଁ । ରହିଲେ ସ୍ତମ୍ଭୀଭୂତ ହୋଇ ॥
ବାହୁଡ଼ ପଛକୁ ଦେଲେ । ଥୋକାଏ ଦୂରରେ ରହିଲେ ॥
ତାହାଙ୍କୁ ଦେଖି ମହାପତି । ଆଶ୍ଚର୍ଯ୍ୟ ହୋଇ ଗୃହୁଁ ଛନ୍ତି ॥
ଏମନ୍ତ ବେଳେ ବେଦନିଧି । ସାରିଲେ ନିତ୍ୟକର୍ମ ବିଧି ॥
ସ୍ନାହାନ ନିମିତ୍ତ ଚଳିଲେ । ଜଳରେ ପ୍ରବେଶ ହୋଇଲେ ॥
ଲୋମଶ ଋଷିଙ୍କୁ ଦେଖିଣ । ପ୍ରଣାମ କଲେ ତତକ୍ଷଣ ॥
କଲ୍ୟାଣ ବେଦନିଧି ଗଲେ । ମୁନିଙ୍କ ସନ୍ନିଧେ ମିଳିଲେ ॥
ସେଠାରେ ବସି ବୈକଜନ । କୁଶଳ ପୁଚ୍ଛାପୁଚ୍ଛି ହୋନ୍ତି ॥
ଲୋମଶ ପଚାରନ୍ତି ତହିଁ । ଏହାଙ୍କୁ ଦେଖିଲ ତ ନାହିଁ ॥
ଏମାନେ କାହାଁର ଅଟନ୍ତି । ଏଡ଼େ ବିରୂପ ଦିଶୁଛନ୍ତି ॥
ଆମ୍ଭଙ୍କୁ ଦେଖିବା ମାତ୍ରକେ । ଧାଇଁଲେ ଚକ୍ଷୁର ନିମିଷକେ ॥
ସନ୍ନିଧେ ଆକର୍ଷିଲେ ଆସି । ପୁଣି ଘୁଞ୍ଚିଲେ ଅହେଋଷି ॥
ଏଷଡ଼ଗୋଟି ଆହେ କସ । ହୋଇଲେ ଏପରି ଭବିଷ୍ୟ ॥
ଶୁଣିଣ ବେଦନିଧି କହି । ସେକଥା କହିବା ଗୋସାଇଁ ॥
ଏମାନେ ସ୍ୱର୍ଗ ଅପସରି । ଥିଲେ ଯେ ଦିବ୍ୟ ଦେହଧରି ॥
ପାଞ୍ଚେ ଅଟନ୍ତି ଅବିବାହି । ମଦନେ ଉନମତ୍ତ ହୋଇ ॥
ପ୍ରଭାତେ ନିତ୍ୟକର୍ମ ସାରି । ନିତ୍ୟେ ପୂଜନ୍ତି ଶାକମ୍ଭରୀ ॥
ଏଯେ ପିଶାଚ ପୁତ୍ର ମୋର । ଅଗ୍ନିକା ନାମଯେ ଏହାର ॥
ଆସିଣ ଥିଲା ସ୍ନାନ କରି । ଦେଖି ଧାଇଁଲେ ପଞ୍ଚନାରୀ ॥
ଅଗ୍ନିକା ସନ୍ନିଧେ ମିଳିଲେ । ଭରିଯା କରନ୍ତୁ ବୋଇଲେ ॥
ଶୁଣି ଅଗ୍ନିକା କଲାନାସ୍ତି । ଘୁଡ଼ଣ ନଦେଲେ ଯୁବତି ॥
ଦେହେ ଲଗିଲେ ଲାଖପ୍ରାୟେ । ଅଗ୍ନିକା ମହାକୋପ ହୁଏ ॥
ସରୋଷେ ଶାପ ଦେଲା ଋଷି । ବୋଇଲା ହୁଅନ୍ତେ ପିଶାଚୀ ॥
ତକ୍ଷଣେ ପିଶାଚୀ ହୋଇଲେ । ଏମନ୍ତ ମୁନିଙ୍କି ବୋଇଲେ ॥
ତୁଯେ ନବୁଝି ଶାପଦେଲୁ । ଆମ୍ଭଙ୍କୁ ପିଶାଚୀ ଯେକଲୁ ॥
ତହୁଁ ଯେ ଆମ୍ଭ ଶାପ ଘେନ । ପିଶାଚ ହୁଅ ମହାମୁନି ॥
ସେକଥା ଅନ୍ୟଥା ନୋହିଲା । ପିଶାଚ ହେଲା ମୋର ବାଳା ॥
ଆଜକୁ ସହସ୍ରେ ବରଷ । ସ୍ୱରୂପେ ହୋଇଲେ ପିଶାଚ ॥
ଏହାଙ୍କ ଭାଗ୍ୟ ଥିଲା ଭାଳେ । ତୁମ୍ଭଙ୍କୁ ଦେଖିଲେ ଏବେ ଭାଲେ ॥

ଭରତେ — ଶିବ ଶାକମ୍ଭରୀ -- ଦୁର୍ଗା

ତୁମ୍ଭେ ଏହାଙ୍କୁ କୃପା କର । ପାଆନ୍ତୁ ନିଜ କଳେବର ॥
ଯହିଁ ଆଦିତ୍ୟ ଉଦେହୋଏ । ତହିଁ କି ଅନ୍ଧକାର ମଧ୍ୟେ ॥
ପୂର୍ବେ ସେ ତପ କରିଥାଇ । ସେ ସାଧୁ ଜନଙ୍କୁ ଭେଟଇ ॥
ସାଧୁ ଦର୍ଶନେ ପାପକ୍ଷୟେ । ଗଙ୍ଗା ସ୍ନାହାନ ଫଳପାଏ ॥
ସାଧୁଙ୍କ ସଙ୍ଗେ ସଙ୍ଗ ହେଲେ । ସ୍ୱର୍ଗ ପ୍ରାପତ ହୁଏ ଭଲେ ॥
ବିଶେଷ ତୁମ୍ଭେ ବଡ଼ ଜଣ । ଏହାଙ୍କୁ କରସି କାରଣ ॥
ଯୋଗେ ବିଜୟ କଲ ଏଥି । ଏମାନେ ହୁଅନ୍ତୁ କୃତାର୍ଥ ॥
ଲୋମଶ ଏହା ଶୁଣି କରି । ସୁଦୟା କଲେ ତପସ୍ୱୀ ॥
ବୋଇଲେ ଧର୍ମର ବିପ୍ରର । କହିବା ଏହାଙ୍କ ଆଗର ॥
ତେବେ ସେ ଶରୀର ପାଇବେ । ପାପରୁ ମୁକତ ହୋଇବେ ॥
ଶୁଣିଣ ବେଦ ନିଧି ଭଣି । ସେ ଧର୍ମ କହି ମହାମୁନି ॥
କେମନ୍ତେ ପାଇବେ କାରଣ । ଖଣ୍ଡିବ ଏହାଙ୍କ କଷଣ ॥
ତାହା ବିସ୍ତର କହପତ । ଆମ୍ଭେ ହୋ ହୋଇବୁ ମୁକତ ॥
ଲୋମଶ ବୋଲନ୍ତି ବଚନ । ଶୁଣ ହୋ ଧର୍ମ କୀର୍ତ୍ତିମାନ ॥
ସ୍ନାହାନ କଲେ ମାସେ ମାତ୍ର । ନିଷ୍ପାପ ହେବ ତାଙ୍କ ଗାତ୍ର ॥
ତେବେ ପାଇବେ ନିଜଦେହ । ଏଥିରେ ନାହିଁଟି ସଂଶୟ ॥
ନୋହିଲେ ଅନ୍ୟପାର ନାହିଁ । ସ୍ୱରୂପ କହୁଅଛି ମୁହିଁ ॥
ଯେଅବା ପୁଣ୍ୟତୀର୍ଥେ ଯାଇ । ମକର ସ୍ନାହାନ କରଇ ॥
ସେ ପ୍ରାଣୀ ଲଭେ ବସି ଧର୍ମ । ତୁଟଇ କଳକାଳ ଶ୍ରମ ॥
ଯେଅତ ବଡ଼ ପାପୀଜନ । ପ୍ରାୟଶ୍ଚିତ୍ତ ନାହିଁ ତାକୁ ଆନ ॥
କଥାଏ ଅଛି ପ୍ରତକାର । ମାଘ ସ୍ନାହାନେ ଅଛି ପାର ॥
ଶତେ ଜନ୍ମର ପାପ ଥିଲେ । ଖଣ୍ଡଇ ମାଘସ୍ନାନ କଲେ ॥
ପୂର୍ବେ ଯେ ବିଧାତା ପୁରୁଷ । ଏଧର୍ମ କଲା ତୁଳ କଷ ॥
ସଂସାରେ ଯେତେ ବାରବ୍ରତ । ଗଙ୍ଗା ସହିତେ ଯେତେତୀର୍ଥ ॥
ଦାନ ଦକ୍ଷିଣା ତପଯଜ୍ଞ । ଆବର ଯେତେ ପୁଣ୍ୟକର୍ମ ॥
ସମସ୍ତ ଆଡେକ ଥୋଇଲା । ମାଘ ସ୍ନାହାନ ଆଡ଼େ କଲା ॥
ତୁଳିଲା ତରାଜୁ ଯେଣେ । ବୁଝିଲା ସାନବଡ ପୁଣ ॥
ଅଧିକ ମାଘସ୍ନାନ କଲା । ତେବେ ମନକୁ ପ୍ରତେଗଲା ॥

---

ଆଦିତ୍ୟ — ସୂର୍ଯ୍ୟ    ଗାତ୍ର — ଦେହ
ତରାଜୁ — ନିକିତି, ତୁଳାଦଣ୍ଡ

ସେକଥା ପୁରାଣେ ବଖାଣ । ତେଣୁ ଜାଣିଲେ ସର୍ବଜନ ।
ଆଉ କଥାଏ ଶୁଣ ଏବେ । ଅବନ୍ତୀ ନଗ୍ରେ ରାଜା ପୂର୍ବେ ॥
ଥିଲେ ନୃପତି ବୀରସେନ । ସେ ବଡ ପ୍ରତାପୀ ରାଜନ ॥
ବହୁତ ଦାନଧର୍ମ କଲା । ଭକତି ଭାବେ ଧନ ନେଲା ॥
ରେବା ତଟରେ ରାଜାଯାଇ । ଯାଗ ଆରମ୍ଭ କଲାଥାଇଁ ॥
ଷୋଳଶ ଅଶ୍ୱମେଧ ଯାଗ । କଲା ସେ ଥିଲା ପୂର୍ବେ ଭୋଗ ॥
ପର୍ବତ ସମାନରେ ସ୍ୱର୍ଣ୍ଣ । ବ୍ରାହ୍ମଣେ ରାଜା ଦେଲାଦାନ ॥
ଆବର ଧେନୁ ଦାନକଲା । ଅନେକ ଧନଦ୍ରବ୍ୟ ଦେଲା ॥
ତେଣୁ ହୋଇଲା ମହାପୁଣ୍ୟ । ସମସ୍ତେ କଲେ ଧନ୍ୟଧନ୍ୟ ॥
ବୋଲନ୍ତି ପ୍ରଭୁ ଦେବରାଜେ । ଶୁଣହେ ରହସ୍ୟ କଥାଏ ॥
ସେ ରାଜ୍ୟେ ଏକ ବିପ୍ର ଥିଲେ । ଧର୍ମ ବିଗ୍ଭର ସେ ନ କଲେ ॥
ଭରତ ବୋଲି ନାମ ତାର । ଅମିତ କଲାକ ଅପାର ॥
ପ୍ରାତଃ ସ୍ନାହାନ ନ କରଇ । ଜନ୍ମରୁ ମୂରୁଖ ଅଟଇ ॥
ପାଷାଣ୍ଡ ପଣେ ନେଲାଧନ । ନକଲା ଧର୍ମ କର୍ମମାନ ॥
ନିର୍ଦ୍ଦୟ ନରପେକ୍ଷ ପଣେ । ଧନ ବଞ୍ଚଇ ଅକାରଣେ ॥
ଅବଦ୍ୟାମାନ ଦେଖି ତାର । ବନ୍ଧୁ କୁଟୁମ୍ବ କଲେ ଦୂର ॥
ଗୃହ ତେଜଣ ବାଇ ପ୍ରାୟେ । ଚତୁର୍ଦ୍ଦିଗରେ ବୁଲୁଥାଏ ॥
ନରହେ ଏକଠାବ ହୋଇ । ମିଳଲା ପ୍ରୟାଗରେ ଯାଇଁ ॥
ମକର ଶେଷରେ ମିଳଲା । ପୂର୍ଣ୍ଣିମା ତିନଦିନ ଥିଲା ॥
ପ୍ରଭାତେ କଲା ସେହୁସ୍ନାନ । ନଜାଣେ ପାପପୁଣ୍ୟମାନ ॥
ଏମନ୍ତେ ତିନଦିନ ଯାଏ । ସ୍ନାହାନ କଲାକ ସେଠାଏ ॥
ଯେତେ ପାତକ ତାର ଥିଲା । ମାଘ ସ୍ନାହାନେ କ୍ଷୟଗଲା ॥
ହୋଇଲା ଅପ୍ରମିତ ଧର୍ମ । ଭଲ ଅଟଇ ତାର କର୍ମ ॥
ଏମନ୍ତେ କେତେ ଦିନ ଗଲା । ସେ ଦ୍ୱିଜ ପ୍ରାଣ ତ୍ୟାଗକଲା ॥
ବ୍ରାହ୍ମଣ ମଲା ଯେଉଁ ଦିନ । ମଲା ସେ ରାଜା ବୀରସେନ ॥
ଏକା ବେଳକେ ଦୁହେଁ ମଲେ । ଯମଦୂତ ତହିଁ ମିଳଲେ ॥
ସ୍ୱର୍ଗରୁ ବିମାନ ଘେନଣ । ନେଇ ଅଇଲେ ବିଷ୍ଣୁଗଣ ॥
ଯମ ଦୂତଙ୍କୁ ଦେଖିକରି । କୋପେଣ ଗୋଡ଼ାଇଲା ମାରି ॥
ଦୁହିଁଙ୍କି ରଥେ ବସାଇଲେ । ଅତି ସମ୍ଭ୍ରମେ ବିଜେ କଲେ ॥

---

ପାଷାଣ୍ଡ — ମୂର୍ଖ, ପାପୀ ଠାବ — ସ୍ଥିର

ଆଗେ ବଜାଇ ଘୋର ତୂର । ଚାଳନ୍ତି ଆଲଟ ଚାମର ॥
ନୃତ୍ୟ କରନ୍ତି ଅପସରା । ଡାକ ପକାଇ ହରି ହରି ॥
କେ ଗୀତ ଗାଇଲେ ସୁସ୍ୱରେ । ବିମାନ ଚଳଇ ସଧୀରେ ॥
ମିଳିଲେ ଅମର ଭୁବନେ । ରଥୁଁ ଓହ୍ଲାଇ ବେନିଜନେ ॥
ବସିଲେ ଦେବସଭା ମଧ୍ୟେ । ଦେଖି ଅଛନ୍ତି ସୁର ସିଦ୍ଧେ ॥
ଆପଣେ ସୁରପତି ଥାଇ । ଦୁହିଁଙ୍କି ସୁବେଶ କରାଇ ॥
ପିନ୍ଧାଇ ଦେବାଙ୍ଗ ବସନ । ଲେପିଲେ ମଳୟ ଚନ୍ଦନ ॥
ସୁଖେ ଅମୃତ ପାନକଲେ । ଦେବଙ୍କ ସଙ୍ଗତେ ରହିଲେ ॥
ଏଥି ଉତ୍ତାରୁ କଥା ଶୁଣ । ବାହୁଡ଼ି ଗଲେ ଯମଗଣ ॥
କହିଲେ ନୃପତି ଗୁମୁରେ । ରାଜାଏ ଥିଲେ ମଞ୍ଜପୁରେ ॥
ସେ ରାଜା ମହା ପୁଣ୍ୟବନ୍ତ । ବିଷ୍ଣୁରେ ବଡ଼ାଇ ଭକତ ॥
ରେବା ତୀର୍ଥରେ ଯଜ୍ଞକଲା । ବ୍ରାହ୍ମଣେ ବହୁ ଦାନ ଦେଲା ॥
ଆଜସେ ହରାଇଲା ପ୍ରାଣ । ଘେନିଣ ଗଲେ ବିଷ୍ଣୁଗଣ ॥
ଆଉ କଥାଏ ଶୁଣରାୟେ । ଥିଲାଯେ ବ୍ରାହ୍ମଣ ଗୋଟାଏ ॥
ସେ ମୂଢ଼ ବଡ଼ଇ ଅଜ୍ଞାନ । କିଛି ନକଲା ଦାନ ଧର୍ମ ॥
ନର୍ଦ୍ଧସ୍ୱ ସବ ଜୀବଠାରେ । କିଛିହେଁ ଧର୍ମ ସେ ନକରେ ॥
ସେ ଆଜ ହୋଇଲା ବିନାଶ । ଆମ୍ଭେ ଯେ ଗଲୁ ତାର ପାଶ ॥
ଆମ୍ଭଙ୍କୁ ଦେଖି ବିଷ୍ଣୁଦୂତେ । ଘଉଡ଼ି ଦେଲେ କୋପଚିତ୍ତେ ॥
ବିପ୍ରଙ୍କୁ ନେଲେ ସ୍ୱଗପୁର । ଏକଥା ବୁଝ ଦଣ୍ଡଧର ॥
ଯମ ଏସନ ଶୁଣି କରି । ମନ୍ତ୍ରୀଙ୍କି ଗୃହିଁଣ ପଚାରି ॥
କହୋ ଚିତ୍ର ଗୁପତ ବେନି । ନୃପତି ଯେତେ ବଡ଼ଜ୍ଞାନୀ ॥
ଅନେକ ଧର୍ମ କରିଥିଲା । ସେଅବା ବୈକୁଣ୍ଠକୁ ଗଲା ॥
ବିପ୍ର ନକଲା କିଛି ଧର୍ମ । ହୋଇଲା ରାଜା ସଙ୍ଗେ ସମ ॥
ଏକଥା ବିଚାରିଣ କହ । ମନ୍ତ୍ରୀ କହିଲେ ଦେବଦେବ ॥
ଦେଖିଲେ ପାଞ୍ଜି ଫେଡ଼ିବେଗେ । ମନ୍ତ୍ରୀ କହିଲେ.ରାଜା ଆଗେ ॥
ଶ୍ରୀଦେବ ବିପ୍ର ବଡ଼ ପାପୀ । କେତାହା କହିବ ସଂକ୍ଷେପି ॥
ଏକ କଥାଏ କରିଥିଲା । ଗୃହ କୁଟୁମ୍ବ ତେଜିଗଲା ॥
ପ୍ରୟାଗେ ମକର ସ୍ନାହାନ । କରିଣ ଥିଲା ଛିନଦିଏ ॥

---

ତୂର — ବାଜାବାଜା    ମୂଢ — ମୂର୍ଖ
ବୈକୁଣ୍ଠ — ବିଷ୍ଣୁଙ୍କ ଧାମ

ତେଣୁ ଅନେକ ଧର୍ମପାଇ । ଅନ୍ତେ ବସିଣ ସ୍ୱର୍ଗେଯାଇ ॥
ନୃପତ ଯେତେ ଯଜ୍ଞ କଲା । ଦାନ ଦକ୍ଷିଣା ଯେତେଦେଲା ॥
ତହିଁ ହୋଇଲା ପୁଣ୍ୟ ଯେତେ । ବପ୍ରର ଫଳ ହେଲା ତେତେ ॥
ସକଳ ପାପୁଁ ପାର ହେଲା । ବ୍ରାହ୍ମଣ ବୈକୁଣ୍ଠକୁ ଗଲା ॥
ଶୁଣି ବୋଇଲେ ଜନ୍ତୁଗଣ । ଏକଥା ଅଟଇ ପ୍ରମାଣ ॥
ଦୂତକୁ ଆଜ୍ଞା ଦେଲେ ଯମ । ଯେ ଶୁଣେ ମାଘ ମହାତମ ॥
ଯେ ମାଘସ୍ନାନ କରିଥିବ । ତୁମ୍ଭେ ତା ନିକଟେ ନଯିବ ॥
ଯେ ମାଘସ୍ନାନ କରିଅଛୁ । ତାହାକୁ ନବୋଲିବ କଛୁ ॥
ଉଗର ସନମତ କଲେ । ସ୍ୱେଦେବ ନଯିବୁ ବୋଇଲେ ॥
କହନ୍ତି ପ୍ରଭୁ ଜଗନ୍ନାଥେ । ମାଘ ସ୍ନାହାନ ଫଳ ଏତେ ॥
ସୁଜନେ କର ଏହି କୃତ୍ୟ । ଭଣେ ନୃସିଂହ ଦାସସୁତ ॥
ପାମର କୃଷ୍ଣ ଦାସ ଭଣି । ଶଏ ଶତଗୁଳଣ ପୁଣି ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ବୀରସେନ ରାଜା ବ୍ରାହ୍ମଣ ମୋକ୍ଷଣେ ନାମ ଅଷ୍ଟାବିଂଶୋଽଧ୍ୟାୟ

—×—

ଭଣି — କହିବା

# ଊନବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ପ୍ରଭୁ ପଦ୍ମନାଭ | ଶୁଣ ଉଦ୍ଧବ ଏକଚିତ୍ତ ||
ଏଗ୍ରନ୍ଥ ମାଘ ମାହାତମ | ଅଶେଷ ବାରିନିଧି ସମ ||
କେ ତାହା କହିବ ବିସ୍ତାର | ନୁହଇ ଆଦିଅନ୍ତ କାର ||
କେବଳ ତୋହର ଶ୍ରଦ୍ଧା ଅର୍ଥେ | ଅଳ୍ପେ କହିବା ପଦକେତେ ||
ସାନନ୍ଦେ ଲୋମଶ ବୋଲନ୍ତି | ଶୁଣହେ ବେଦନିଧି ଯତି ||
ଶୁଣହେ ଅପସରୀମାନେ | ତୋପୁଣ୍ୟେ ଶୁଣ ଏକମନେ ||
ପୂର୍ବର ପୁରାତନ କଥା | ଶୁଣି ତୁଟିବ ମନୁବ୍ୟଥା ||
ଆହୁର ପିଶାଚ ଗୋଟାକୁ | ବିପ୍ର ସେ ମୋକ୍ଷକଲା ତାକୁ ||
ସେକଥା ବଡ଼ଇ ରହସ୍ୟ | କହିଲେ ନୁହଇ ସେ ଶେଷ ||
ଶୁଣି ବେଦନିଧି ପଚାର | କରୁଣା କର ତପସ୍ୱୀଶ ||
କେଉଁ ପିଶାଚ ପୂର୍ବେଥିଲା | କେଉଣ ବିପ୍ର ମୋକ୍ଷକଲା ||
ତାହାର ନାମ ଗୋଟି କିସ | କେଉଁ ଦେଶରେ ତାରବାସ ||
ସେକଥା କହ ମୁନିବର | ଶୁଣିବା ଶରଧା ମୋହର ||
ହସିଣ ବୋଲନ୍ତି ଲୋମଶ | ପ୍ରାଚୀ ପାର୍ବଣ ନାମଦେଶ ||
ବେଦପତି ନାମେ ବ୍ରାହ୍ମଣ | ସେ ନଗ୍ରେ ତାହାର ବିଶ୍ରାମ ||
ଉତ୍ତମ ଦିବ୍ୟସ୍ଥାନ ବାଛି | ବ୍ରାହ୍ମଣ ମନ୍ଦିର କରିଛି ||
ଅତି ରମ୍ୟକ ସ୍ଥାନ ଗୋଟା | ରହିଛି ନାନା ବର୍ଣ୍ଣେ ତୋଟା ||
ଆମ୍ବ ପଣସ ନାରିକେଳ | ଟଭା ନାରଙ୍ଗ ନାନାଫଳ ||
ଜାମୁଜମ୍ବିଳ ବରକୋଳି | ଲେମ୍ବାଓ କେରନ୍ଦା କଦଳୀ ||
ବେଲ କରୁଣା କରମଙ୍ଗ | କଇଁଥ ତେନ୍ତୁଳି ପୁନ୍ନାଗ ||
ଆବର ବୃକ୍ଷ ଅଛି ଯେତେ | ସଞ୍ଚପି କହିବା ତା କେତେ ||
ବିବିଧ କୁସୁମ ଅଛଇ | ମଲ୍ଲୀ ମାଳତୀ ଯାଇ ଯୁଇ ||
ଚମ୍ପା କେତକୀ ନାଗେଶ୍ୱର | ପାଟଳୀ ଅଶୋକ ମନ୍ଦାର ||
କାଞ୍ଚନ ଛୁରିଅନା ଗଛ | କୁନ୍ଦ କାମୋଦି ସମିବୃକ୍ଷ ||

---

ବାରିନିଧି — ସମୁଦ୍ର

ମରୁଆ ମନ୍ଦାର ରଙ୍ଗଣୀ । ଆବର କେ ପାରବ ଗଣି ॥
ଫଳନ୍ତ ଫୁଟନ୍ତ ପଡ଼ନ୍ତ । ଭ୍ରମରମାନେ ଚ ମୁଥାନ୍ତ ॥
ସନ୍ଧିଧେ ସରସ୍ୱତୀ ନଦୀ । ବହୁଛି ପାତାଳକୁ ଭେଦ ॥
ତୀରେ ଅନେକ ବୃକ୍ଷଅଛୁ । କ୍ରୀଡ଼ା କରନ୍ତ ନାନାପକ୍ଷୀ ॥
ବଣ ଡାହୁକ ଶୁକ ଶାରୀ । ମୟୂର ମରାଳ ଡଡ଼ିଆ ॥
ଶୀତଳ ବହଇ ପବନ । କୋକିଳ ରବେ ଘନଘନ ॥
ବୃକ୍ଷ ଗହଳ ଶୋଭାପାଇ । ରବି କିରଣ ନ ଲାଗଇ ॥
ତୋଟା ଦିଶଇ ମନୋହର । ନନ୍ଦନବନ ପଟାନ୍ତର ॥
ବ୍ରାହ୍ମଣ ବେଦବିଦ୍ୟା ହୋଇ । ଆଶ୍ରମ କରେଅଛି ତହିଁ ॥
ସେ ବିପ୍ର ବହୁ ଶାସ୍ତ୍ରଜାଣେ । ଆଗମ ନିଗମ ବଖାଣେ ।
ବ୍ରହ୍ମା ସମାନେ ଦ୍ୱିଜବର । କଲେ କର୍ମଧର୍ମ ଆଚାର ॥
ଲକ୍ଷଣେ ଅଟଇ ନର୍ଜିତ । ବସ୍ତ୍ରରେ ବଢ଼ାଇ ଭକତ ॥
ଗ୍ରୀଷମ କାଳେ ଅଗ୍ନିଜାଳ । ଊର୍ଦ୍ଧ୍ୱକୁ ବେନି ବାହୁ ତୋଳ ॥
ସୂର୍ଯ୍ୟକୁ ଚାହିଁ ତପକରି । କ୍ଷୁଧା ତୃଷାକୁ ସେ ନଡରି ॥
ଆବର ନଦ୍ରା ମଇଥୁନ । ବ୍ରାହ୍ମଣ ତେଜିଲା ଏମାନ ॥
ଜ୍ଞାନ ସାଧଇ ଦୃଢ଼କରି । ହୃଦେ ନାରାୟଣ ସୁମରି ॥
ବରଷା କାଳେ ଭିଜୁଥାଇ । କେବେହେଁ ବିରସ ନୁହଇ ॥
ହିମ ଋତୁରେ ଜଳେପଶି । ତପ କରଇ ଅହର୍ନିଶି ॥
ଏମନ୍ତେ ସହସ୍ରେ ବରଷ । ତପସ୍ୟା କଲା ବିପ୍ରଶିଷ୍ୟ ॥
ସନ୍ଧ୍ୟା ତର୍ପଣ ଦେବପୂଜା । କେବେହେଁ ନଛାଡ଼ଇ ଦ୍ୱିଜା ॥
ତପସ୍ୟା କରିବାରୁ ତାର । ଦୁର୍ବଳ ହୋଇଲା ଶରୀର ॥
କେବଳ ଅସ୍ଥି ଚର୍ମ ଅଛି । ଶରୀରେ ବଳନାହିଁ କିଛି ॥
ଜୀବନ ମାତ୍ର ଅଛି ରହି । ତପ ସାଧଇ କଷ୍ଟ ସହି ॥
କର୍ମ କରଇ କୃଷ୍ଣ ଅର୍ଥେ । ସେବଣ ଥାଇ ହୃଷ୍ଟ ଚିତ୍ତେ ॥
ତାହାର ତପସ୍ୟା ବଳରୁ । ଷଣ ଋତୁରେ ଫଳେତରୁ ॥
ସେ ବନେ ଯେତେ ଜୀବଥିଲେ । ସମସ୍ତେ ଅହଂସା ଗୁଡ଼ିଲେ ॥
ବ୍ୟାଘ୍ର ସଙ୍ଗତେ ଛେଳିଚରେ । ଖେଳନ୍ତ ଶଶା ଶୃଗାଳେ ॥
ଗଜ କେଶରୀ ଏକମେଳେ । ଖେଳନ୍ତ ମଞ୍ଜାରୀ ଇନ୍ଦୁରେ ॥

---

ଆଗମ — ତନ୍ତ୍ର    ନିଗମ — ବେଦ
ସହସ୍ରେ — ହଜାରେ

ସର୍ପ ମଣ୍ଡୂକ ଏକଠାବେ । ଭକ୍ଷ ଗୁଡ଼ଣ ଖେଳେ ସର୍ବେ ॥
ବକ ଶାମଳ ଏକମୂର୍ତ୍ତି । ପାରୁଆ ଛଞ୍ଚାଣ ଚରନ୍ତି ॥
ସମସ୍ତେ ଗୁଡ଼ ହଂସାମାନ । ସୁଖେଣ ବହରନ୍ତି ବନ ॥
ଧନ୍ୟ ଭକତ ବେଦପଣ୍ଡ । ବିଷ୍ଣୁରେ ହୋଇଲ ଭକତ ॥
ଦୟାନିଧିଙ୍କ ପ୍ରସାଦେଣ । ହୋଇଲ ଏତେ ସତପୂଣ ॥
ଦିନେକି ବୈଶାଖ ମାସରେ । ଶ୍ରୀ ଏକାଦଶୀ ରବିବାରେ ॥
ପ୍ରଭାତୁଁ ନିତ୍ୟକର୍ମ ସାରି । ବ୍ରାହ୍ମଣ ବିଷ୍ଣୁ ସେବା କରି ॥
ଆସନେ ବସି ବେଦପଣ୍ଡ । ବାସୁଦେବଙ୍କୁ କଲସ୍ତୁତ ॥
ତାହା ଜାଣିଲେ ନାରାୟଣ । ବିଜୟ କଲେ ତତକ୍ଷଣ ॥
ଶରୀର ଶ୍ୟାମମେଘ ଜିଣି । ଶିରେ କିରୀଟ ନାନାମଣି ॥
ଚନ୍ଦନ ତିଳକ ଲଲାଟେ । କୌସ୍ତୁଭ ମଣିକଣ୍ଠତଟେ ॥
ନୟନ ପଦ୍ମର ସଦୃଶ । ରଙ୍ଗ ଅଧରେ ମନ୍ଦହାସ ॥
କର୍ଣ୍ଣେ କୁଣ୍ଡଳ ଶୋଭାବନ । ହୃଦରେ ଶ୍ରୀବତ୍ସର ଚିହ୍ନ ॥
ବିବିଧ ରତ୍ନ ଶୋଭେ ଅଙ୍ଗେ । ବିଜୁଳି ଯେସ୍ନେ ନୀଳମେଘେ ॥
ପୀତ ବସନ ପରିଧାନ । ନୂପୁର ଶୋହଇ ଚରଣ ॥
ସାରଙ୍ଗ ଚତୁର୍ଭୁଜେ ଶୋଭେ । ରୂପେ ଜଗତ ଜନ ମୋହେ ॥
ଗରୁଡ଼ ଚଢ଼ି ଦେବରାଜେ । ଭକତ ଆଗେ କଲେ ବିଜେ ॥
ବିଷ୍ଣୁଙ୍କୁ ଦେଖି ବେଦପଣ୍ଡ । ଆସନୁ ଉଠିଲେ ତରତ ॥
ହୋଇଲ ଦଣ୍ଡ ପରମାଣି । ଉଠ ବୋଇଲେ ଦେବସ୍ୱାମୀ ॥
ଦକ୍ଷିଣ ବୋଲନ୍ତି ଉତ୍ତର । ତୁ ଅଟୁ ଭକତ ମୋହର ॥
ମୁଁ ତୋତେ ହୋଇଲି ପ୍ରସନ୍ନ । ଯେବାଞ୍ଛା ବର ମାଗି ନେନ ॥
ବ୍ରାହ୍ମଣ ବେନିକର ଯୋଡ଼ି । ବୋଇଲେ ପାଦପଦ୍ମେ ପଡ଼ି ॥
ଶ୍ରୀଦେବ ପ୍ରଭୁ ଜଗନ୍ନାଥ । ଦର୍ଶନେ ହୋଇଲି କୃତାର୍ଥ ॥
ଆଉକି ବର ମାଗିବଇଁ । ଅନ୍ୟ ବରରେ କାର୍ଯ୍ୟନାହିଁ ॥
ଏକ କଥାଏ ମୋତେ ଦେବା । ଯେବେ ହେଲିଲି ମୋର ସେବା ॥
ଏତୁମ୍ଭ ଅଭୟ ଚରଣ । ହୃଦରେ ଥିବ ଅନୁକ୍ଷଣ ॥
ମୋମନ ତୁମ୍ଭଠାରେ ରହୁ । ଏମନ୍ତ ବର ଆଜ୍ଞା ହେଉ ॥
କରୁଣା ସାଗର ମୁରାରି । ଭକତ ଠାରେ ଦୟା କରି ॥

---

ମଣ୍ଡୂକ — ବେଙ୍ଗ ବାସୁଦେବ ବିଷ୍ଣୁ

ଦପି ଖ୍ୱାଇଲେ ଅସ୍ତଦେହ । ଅନ୍ତର୍ଦ୍ଧାନରେ ଗଲେ ତହିଁ ॥
ଲୋମଶ ମୁଖଁ ଏହାଶୁଣି । ପୁଚ୍ଛିଲେ ବେଦନିଧି ପୁଣି ॥
ହେମୁନି ବିଷ୍ଣୁର ଚରିତ । ଶୁଣି ମୁଁ ହୋଇଲି କୃତାର୍ଥ ॥
ଧନ୍ୟ ଭକତ ବେଦପତି । କେବଳ ଭାବେ ଭଲସ୍ତୁତି ॥
ସେକଥା କୁହ ମହାମୁନି । ଶୁଣିବି ପୁଣ୍ୟମୟ ଧ୍ୱନି ॥
ଲୋମଶ ବୋଇଲେ ହେ ଶୁଣ । ଯେସ୍ତୁତି କଲେକ ବ୍ରାହ୍ମଣ ॥
ହରିର ଦାସ ଖଗମଣି । ବିଷ୍ଣୁର ମୁଖୁଁ ଏହା ଶୁଣି ॥
ଯେଣୁ ଜାଣିଲେ ଖଗବର । ମୁହିଁ ଶୁଣିଲି ମୁଖୁ ତାର ॥
ତୋତେ କହିବା ତାହା ଏବେ । ଶରଧା କଲୁ ତୁହି ଯେବେ ॥
ବ୍ରାହ୍ମଣ ଆସନେ ବସିଲ । ନାରାୟଣଙ୍କୁ ସ୍ତୁତିକଲ ॥
ନମସ୍ତେ ପ୍ରଭୁ ଦାମୋଦର । ଭକତଜନଙ୍କ ଠାକୁର ॥
ଜୟତୁ ବ୍ରହ୍ମା ବିଷ୍ଣୁ ରୂପୀ । ସକଳ ଭୂତେ ଅଛୁ ବ୍ୟାପୀ ॥
ଚଉଦ ବ୍ରହ୍ମାଣ୍ଡ ଯାତନା । ଏସବୁ ତୋହର ରଚନା ॥
ସୃଷ୍ଟି ଉତ୍ପତ୍ତି ପ୍ରଳୟକର । ପୁଣିତୁ ଗର୍ଭରେ ସଂହର ॥
ଅଗଣ୍ଣ କୋଟି ବସୁନ୍ଧର । ଉଦରେ ଅଛି ତୋହ ପର ॥
ତୋହର ନିଶ୍ୱାସ ମରୁତ । ତହୁଁ ହୋଇଲେ ବେଦଜାତ ॥
ତୁ ବ୍ରହ୍ମା ରୁଦ୍ର ବିଷ୍ଣୁ ତୁହି । ତୋ ତହୁଁ ଅନ୍ୟ ନାହିଁ କେହି ॥
ତୁହି ସେ ଅଟୁ ଦେବ ଇନ୍ଦ୍ର । ନୟନ ତୋର ସୂର୍ଯ୍ୟଚନ୍ଦ୍ର ॥
କଣ୍ଠରୁ ଜାତ ସରସ୍ୱତୀ । ଉଦରୁ ଅନନ୍ତ ମୂରତି ॥
ସଦା ଚଞ୍ଚଳ ନିଦ୍ରାନାହିଁ । ଅରୂପେ ଅଛୁ ଶୂନ୍ୟେରହି ॥
ତୋହର ନାମ କଲେ ଲୟ । ସକଳ ପାପ ହୋଏକ୍ଷୟ ॥
ଯେ ତୋର ନାମ ସୁମରଇ । ଦରିଦ୍ର ଅବସ୍ଥା ହରଇ ॥
ନାମ ଘୋଷିଲେ ନିରବଧି । ଖଣ୍ଡଇ ଶୋକ ରୋଗବ୍ୟାଧି ॥
ଆରତ ଭଞ୍ଜନ ତୋ ବାନା । ଆତଙ୍କ କାଳେ ହୁଏ ସେନ୍ଧା ॥
ହୋଇଲ ଦଶ ଅବତାର । ନାଶିଲ ଅବନୀର ଭାର ॥
ଧର୍ମ ପାଳକ ଦେବବର । ସନ୍ଥ ପାଳଣ ଦୁଷ୍ଟ ମାର ॥
ହୋମ କରିବା ରୂପଭୁଞ୍ଜି । ଆପଣେ ବସ ତହିଁ ଯାଇଁ ॥
ତୁ ନାଥ ଅନାଦି ପୁରୁଷ । ନାହିଁ ତୋ ଆଦିଅନ୍ତ ଶେଷ ॥

---

| | | | | | |
|---|---|---|---|---|---|
| ଲୋମଶ | — | ଋଷିଙ୍କ ନାମ | ଖଗମଣି | — | ଗରୁଡ଼ |
| ଅବନୀ | — | ପୃଥିବୀ | ସନ୍ଥ | — | ସାଧୁ |

ଭୁଅବା ଅଟୁ ରବ ସୁତ । ବେଦ ନଜାଣେ ତୋରତତ୍ତ୍ୱ ॥
ଯେତୋତେ ଦର୍ଶନ କରଇ । ଯମ ତା ନକଟେ ନଯାଇ ॥
ବଟପୀ ଯୁବଣଙ୍କ ମନ । ଜାର ପୁରୁଷେ ଥାଇମାନ ॥
ସେହୁ ପ୍ରକାରେ ମୋର ମନ । ତୋଠାରେ ରହୁ ଭଗବାନ ॥
ଏମନ୍ତେ ସ୍ତବେ କଲସ୍ତୁତି । ପ୍ରସନ୍ନ ହୋଇଲେ ଶ୍ରୀପତି ॥
ଏସ୍ତୁତ ପଢ଼ନ୍ତେ ଶୁଣନ୍ତେ । ସ୍ୱର୍ଗ ପ୍ରାପତ ହୁଏ ଅନ୍ତେ ॥
ଏସ୍ତୁତ ଶ୍ରବଣେ ଶୁଣିଲେ । ହୁଅଇ ବାଞ୍ଛା ସିଦ୍ଧି ଭଲେ ॥
ବଢ଼ଇ ବାଲବୀର୍ଯ୍ୟ ଯଶ । ଖଣ୍ଡଇ ସକଳ କଳୁଷ ॥
ଏହାଯେ ପଢ଼ନ୍ତି ଶୁଣନ୍ତି । ତାଙ୍କୁ ନଲଗେ ଯମଶାସ୍ତି ॥
ଏଥାଏ ବ୍ୟାଘ୍ର ଭାଲୁ ଭୟ । ବଇରୀମାନେ ହୋନ୍ତି କ୍ଷୟ ॥
ପ୍ରେତ ପିଶାଚ ଭୂତଗଣ । ସନ୍ନିଧେ ନଆସନ୍ତି ପୁଣ ॥
ପଢ଼ିଲେ ଋକ ବେଦ କଣ୍ଠେ । ତହୁଁ ହୋଇବ ଧର୍ମ ଯେତେ ॥
ସ୍ତୁତ ପଢ଼ିଲେ ତେତେଫଳ । ତାହାର ହୁଅଇ ମଙ୍ଗଳ ॥
ଏସ୍ତୁତ ମୁଖେ ଯେବେ ଗାଇ । ଯଜ୍ଞ କରିବା ଫଳ ପାଇ ॥
ସମସ୍ତ ତିଳପାତ୍ର ଦାନ । ଦେଲେ ହୁଅଇ ଯେତେ ପୁଣ୍ୟ ॥
ସ୍ତୁତ ପଢ଼ିଲେ ତେତେ ପୁଣ୍ୟ । ତାହାକୁ ନଦଣ୍ଡଇ ଯମ ॥
ସହସ୍ର ଗୋରୁ ଦାନଦେବ । ତହିଁରେ ଯେତେ ଧର୍ମ ହେବ ॥
ସ୍ତୁତ ଶୁଣିଲେ ଫଳ ତେତେ । ଲଭଇ ବଇକୁଣ୍ଠ ସ୍ଥାନ ଅନ୍ତେ ॥
ଗଙ୍ଗା ସଙ୍ଗତେ ତୀର୍ଥ ଯେତେ । ସ୍ନାହାନ କଲେ ଧର୍ମ ଅର୍ଥେ ॥
ସ୍ତୁତ ଶୁଣିଲେ ଧର୍ମ ଯେତେ । ହୋଆଗେ କହିଲ ନୃପତେ ॥
ଅଶୁଭ ସ୍ୱପନ ଦେଖିଲେ । କଅବା ଗ୍ରହ ପିଡ଼ାଥିଲେ ॥
ସେଦୋଷମାନ କ୍ଷୟ ଯାଇ । ଯଦ୍ୟପି ଏ ସ୍ତୁତ ପଢ଼ଇ ॥
କହିଲେ ମୁନ ପୁଣ୍ୟଦେହା । ଶୁଣହୋ ବେଦବଧି ଏହା ॥
ପିଶାଚ ମୋକ୍ଷ ଯେଉଁଭାବେ । ସେକଥା କହିବା ତୋ ଆଗେ ॥
ଦ୍ରାବିଡ଼ ନାମେ ଏକଦେଶ । ସେ ରାଜ୍ୟ ସୀମା ଏକବଂଶ ॥
ଚିତ୍ର ନାମେଣ ତହିଁ ରଜା । ସୁଖେ ପାଳଇ ଜନପ୍ରଜା ॥
କୁଳର ପ୍ରୋହିତ ବ୍ରାହ୍ମଣ । ତାହାକୁ ସେନ ମହାରାଣ ॥
ବହୁତ ଦେବଧାନ କଲ । ଆନନ୍ଦେ ଧର୍ମ ଆଚରିଲ ॥
ପୃଥ୍ୱୀ ସାଧିଲ ବାହୁବଳେ । ତା ପାଦେ ଖଟିଲେ ସକଳେ ॥

---

ବଟପୀ — ବେଶ୍ୟା । ପ୍ରୋହିତ — ପୁରୋହିତ

ଅନେକ ଧନରତ୍ନ ମାନ । ଭଣ୍ଡାର କଲ ଆଣିପୂର୍ଣ୍ଣ ॥
ଗଜ ତୁରଙ୍ଗ ରଥବର । ଅଛଇ ଅପାରୁ ଅପାର ॥
ଦକ୍ଷିଣ ସିନ୍ଧୁ ପଶ୍ଚପନ୍ତେ । ପରଜା ପାଳଇ ନଭଚେ ॥
ଅନ୍ନ ବସନ ଜଳପାନ । ବ୍ରାହ୍ମଣେ କଲ ରାଜାଦାନ ॥
ଅତିଥି ମାନଙ୍କୁ ଦେଖିଲେ । ପୂଜା କରଇ ତାଙ୍କୁ ଭଲେ ॥
ନାହିଁ ତା ଅନ୍ୟାୟ ଅରୀତ । ସମସ୍ତେ ପ୍ରଶଂସା କରନ୍ତ ॥
ସେରଜା ବନେକଲେ ବନେ । ଦେଶ ଭ୍ରମଣ ତୋଷମନେ ॥
ମିଳଲେ ଜଟାଳଙ୍କ ପୁରେ । ନମିଲେ ତାହାଙ୍କ ପଦ୍ମରେ ॥
କଲ୍ୟାଣ କରଣ ଜଟାଳ । ବୋଇଲେ ବସ ମହୀପାଳ ॥
ଶୁଣି ସାନନ୍ଦେ ମହୀପତ । ବସିଲେ ଜଟାଳଙ୍କ କତ ॥
କୁଶଳେ ବୋଲନ୍ତ ବଚନ । କୁଶଳେ ଅଛୁତ ରାଜନ ॥
କେବଣ ଧର୍ମ ତୁ ଆଚରୁ । କାହାକୁ ଭଜନ ତୁ କରୁ ॥
କେଉଁ ଦେବତା କରୁପୂଜା । ସ୍ୱରୂପ କହ ମହାରାଜା ॥
ଶୁଣି ବୋଲଇ ନରନାହା । ଯେମନ୍ତ ପଚ୍ଛଲ ସାହା ॥
କୁଶଳେ ତୁମ୍ଭ ପରସାଦେ । ରାଜ୍ୟ କରଇ ଅପ୍ରମାଦେ ॥
ପରଜା ପୁତ୍ର ସମକରି । ପାଳୁ ଅଛଇ ଚପଶ୍ରୁରି ॥
ଯାବତ ଧର୍ମ କରୁଥାଇ । ଅସତ୍ୟ ପଙ୍ଗକୁ ନଯାଇ ॥
ଭଜଇ ଗୋବନ୍ଦର ନାମ । ନତ୍ୟ ଆଚରି ଥାଇଧର୍ମ ॥
ବ୍ରାହ୍ମଣ ଲକ୍ଷେକ ଭୋଜନ । ଦାନ ଦଅଇ ପ୍ରତଦନ ॥
ସପତ ବେଳେ ଯଜ୍ଞକଲ । ଅନେକ ରାଜାଙ୍କୁ ପୂଜଲ ॥
ବେଦ ଶାସ୍ତ୍ରରେ ମୋରମତ । ପୁରାଣ ଶୁଣୁଥାଇ ନତ ॥
ସୁଯୋଗେ ଭ୍ରମି ମୁଁ ଅଇଲ । ଯେମନ୍ତ ତୁମ୍ଭଙ୍କୁ ଭେଟିଲ ॥
ଆଜ ସୁଫଳ ମୋର ଧନ୍ୟ । ତୁମ୍ଭର ପାଇଲ ଦର୍ଶନ ॥
ଜଟାଳେ ବୋଲନ୍ତ ବଚନ । ହେରାଜା ଏତେ ତୁ ଅଜ୍ଞାନ ॥
ଈଶ୍ୱର ପ୍ରାପ୍ତ ଦେବତାଙ୍କୁ । ଘୃଣଣ ଭଜଲୁ ତାହାଙ୍କୁ ॥
ବସ୍ତୁଙ୍କୁ କରୁଛୁ ଯେ ସେବା । ତହିଁକ ଫଳ ଦେବଅବା ॥
ବୃଥ ବୋଲଣି ଯାହାକରୁ । ବଅର୍ଥେ ଉପହାସେ ମରୁ ॥
ଯାଗଯେ କରୁ ଅକାରଣେ । କେବଣ ଧର୍ମ ଅଛି ତେଣେ ॥
ବ୍ରାହ୍ମଣେ ଯାହା ଦେଉ ଦାନ । ବଫଳ ଯାଇ ଦ୍ରବ୍ୟମାନ ॥

ତୁରଙ୍ଗ — ଘୋଡ଼ା

ବେଦ ପଢ଼ିଲେ କିସଫଳ । ସେକଥା ନୁହଇ କୁଶଳ ॥
ଯେଅବା ଶିବଙ୍କୁ ସେବନ୍ତି । ସେ ନର ମୁକତ ହୁଅନ୍ତି ॥
ଶିରରେ ଜଟା ବାନ୍ଧିଥିବ । ନୋହିଲେ ଲଣ୍ଡାମୁଣ୍ଡ ହେବ ॥
ସର୍ବାଙ୍ଗେ ଭସ୍ମ ବିଲେପନ । ଏଥୁଁ ଅଧିକ ନାହିଁ ପୁଣ୍ୟ ॥
ଶିବ ଗଣରେ ଅଧିପତି । ସେପ୍ରାଣୀ ନିକଟେ ହୁଅନ୍ତି ॥
ରାଜା ବୋଇଲେ ତୁମ୍ଭେ ଶୁଣ । କହନ୍ତେ ହରଙ୍କର ଗୁଣ ॥
କି ଭାବେ ହରଙ୍କୁ ସେବିବା । କିଧର୍ମ ଆଚରି କରିବା ॥
ଏକଥା ବିସ୍ତାରି କହ । ମନରୁ ଫିଟୁ ମୋ ସନ୍ଦେହ ॥
ଯତି ବୋଇଲେ ଶୁଣ ରାଜେ । ଶିବ ଭକତ ଯେବେ ହୁଏ ॥
ବିଭୂତି ଜଟାରେ ଭୂଷଣ । କଷା ବସନ ପରିଧାନ ॥
ଶିବଙ୍କୁ କରୁଥିବ ଧ୍ୟାନ । ଶିବ ଚରିତ ନିତ୍ୟଗାନ ॥
ବିଷ୍ଣୁ ପୁରାଣ ନିନ୍ଦାକରି । ମୁଖେ ନବୋଲିବ ଶ୍ରୀହରି ॥
ବିଷ୍ଣୁ ଭକତଙ୍କୁ ଦେଖିଲେ । ସଙ୍ଗ ନୋହିବ ତାଙ୍କ ତୁଲେ ॥
ତାହାଙ୍କୁ ନିବାରି କରିବ । ମାରି ଘଉଡ଼ି ବେଗେଦେବ ॥
ଏମନ୍ତ କରେ ଯେଉଁପ୍ରାଣୀ । ତାଧର୍ମ କହିଲେ ନଗଣି ॥
ଜଡ଼ ବଧିର ଶ୍ରେଷ୍ଠା କୁଜା । ଏମାନେ ହେଲେ ପାନ୍ତ ପୂଜା ॥
ଶିବଙ୍କ ସଙ୍ଗେ ବିହରନ୍ତି । ଅନ୍ତେସେ ବୈକୁଣ୍ଠେ ବସନ୍ତି ॥
ହେରାଜା ଆମ୍ଭ ବୋଲକର । ତୁ ଏବେ ଶିବ ନାମ ଧର ॥
ହରିର ନାମ ନ ଧରିବୁ । ହରି ଦର୍ଶନ ନ କରିବୁ ॥
ବିଭୂତି ବିଲେପନ ହୁଅ । ପବିତ୍ର ହେଉ ତୋର ଦେହ ॥
ବିଭୂତି ମହିମା ଅପାର । ନଷ୍ଟେ ହୋଇବୁ ଅଜାମର ॥
ଆରୋଗ୍ୟ ହେବ ତୋର କାୟ । ଦୁରିତ ମାନ ହେବ କ୍ଷୟ ॥
ହରି ଚରିତ ଏବେ ଛାଡ଼ । ତାଲେହେଁ ଅମଡ଼ା ନମାଡ଼ ॥
ଜଟାଳ ବାକ୍ୟ ରାଜା ଶୁଣି । ସମ୍ମତ କଲା ନୃପମଣି ॥
ମସ୍ତକେ ଜଟାଭାର ବାନ୍ଧି । କଟିରେ କଷାବସ୍ତ୍ର ପିନ୍ଧି ।
ହୋଇଲା ଭସ୍ମ ବିଲେପନ । ଛାଡ଼ିଣ ବେଦବାକ୍ୟ ମାନ ॥
ତାଲେହେ ଧର୍ମହିଁ ଛାଡ଼ିଲା । ଶାସ୍ତ୍ର ପୁରାଣ ନ ଶୁଣିଲା ॥
ନିନ୍ଦିଲା ବ୍ରାହ୍ମଣ ବୈଷ୍ଣବ । ବହିଲା ଅତି କୁରଭାବ ॥
ଛାଡ଼ିଲା ଜପତପ ଯାଗ । ଆପଣେ ପଶିଲା କୁମାର୍ଗ ॥
ଈଶ୍ୱର ନାମ କଲାଜପ । ମନେ ସାନନ୍ଦ ହେଲା ନୃପ ॥

ହରଷେ ଜଟାଳ ମାନଙ୍କୁ । ଗଜ ତୁରଙ୍ଗ ଦେଲ ତାଙ୍କୁ ॥
ବହୁତ ଧନରତ୍ନ ଦେଲ । ଉତ୍ତମ ଗ୍ରାମ ସମର୍ପିଲ ॥
ତାହାଙ୍କ ସନ୍ତୋଷ କରିଣ । ବାହୁଡ଼ି ଅଇଲ ତକ୍ଷଣ ॥
ଆପଣା ରାଜ୍ୟରେ ମିଳିଲ । ଦୋସାଧୁ ରାଇ ଆଜ୍ଞାଦେଲ ॥
ବୋଇଲ ଯାଅ ଏହିକ୍ଷଣ । କଟକେ ଦିଅ ଘୋଷଣ ॥
ମୋ ରାଜ୍ୟେ ଯେତେ ଜନ ପ୍ରଜା । ସର୍ବେ କରନ୍ତୁ ଶିବପୂଜା ॥
ବିଷ୍ଣୁ ଚରିତ ନ ଶୁଣିବେ । ବିଷ୍ଣୁର ଗୁଣ ନ ଗୁଣିବେ ॥
ଯେଆନ୍ତ ଆଜ୍ଞା ଭ୍ରଷ୍ଟ କରି । ମୁଖରେ ଉଚାରିବେ ହରି ॥
ତାହାଙ୍କ ପ୍ରାଣେ ସଂହାରିବ । ସର୍ବ ସମ୍ପଦ ହରିନେବ ॥
ବିଷ୍ଣୁ ପ୍ରତିମା ଯେତେଛନ୍ତି । ଜଳରେ ମାଡ଼ିବ ସବୁନ୍ତି ॥
ଦେଉଳ ମଣ୍ଡପ ଭଙ୍ଗାଅ । ସାଧୁଙ୍କୁ ଘଉଡ଼ାଇ ଦିଅ ॥
ଏସନ ରାଜା ମୁଖୁଁ ଶୁଣି । ଦୋସାଧୁ ଗଲ ସେହିକ୍ଷଣି ॥
ରାଜ୍ୟରେ ଡେଙ୍ଗୁରା ଦିଆଇ । ଦୋସାଧୁ ଉଚେ ଡ଼ାକଦେଇ ॥
ସମସ୍ତେ ଶିବଙ୍କୁ ତୋଷିବ । ଗୋବିନ୍ଦ ନାମ ନଭଜିବ ॥
ସମସ୍ତେ ଶିରେ ଜଟାବାନ୍ଧି । କଟିରେ କଷାବସ୍ତ୍ର ପିନ୍ଧି ॥
ଦେହରେ ଘେନିଣ ବିଭୂତି । ଈଶ୍ୱରେ କରିବେ ଭକତି ॥
ଏସନ ବୋଲି ଉଚେ କହି । ଘୋଷଣା ଦେଲ ସର୍ବଠାଇଁ ॥
ଶୁଣିସେ ପୁର ସର୍ବଜନ । ଛାଡ଼ିଲେ ହରିର କୀର୍ତ୍ତନ ॥
ଜଟା ବାନ୍ଧିଲେ ଶିରପରେ । ବିଭୂତି ଘେନିଲେ ଶରୀରେ ॥
ପିନ୍ଧିଲେ କଷା ବସ୍ତ୍ରମାନ । ନକଲେ କିଛି ଦାନ ପୁଣ୍ୟ ॥
ବିଷ୍ଣୁ ପ୍ରତିମା ମାନନେଇ । ଜଳରେ ଦେଲେକ ପକାଇ ॥
ଯେତେ ଠାବରେ ବିଷ୍ଣୁଥିଲେ । ସେଠାବ ଭାଙ୍ଗି ପକାଇଲେ ॥
ଶଙ୍କର ନାମେ କଲେ ଲୟେ । ଉଚେଣ ନୃପତିର ଭୟେ ॥
ଯେଅବା ଶ୍ରୀହରିର ଦାସ । ସର୍ବଦା ବିଷ୍ଣୁରେ ବିଶ୍ୱାସ ॥
ସେଲୋକମାନେ ନରହିଲେ । ରାଜ୍ୟ ଛାଡ଼ିଣ ପଳାଇଲେ ॥
ଏମନ୍ତେ ଗଲ କେତେକାଳ । ମୃତ୍ୟୁ ଲଭିଲ ମହୀପାଳ ॥
ତାହାର ନିଧନ ଦେଖିଣ । ଆସି ମିଳିଲେ ଯମଗଣ ॥
ଚର୍ମ ରଜ୍ଜୁରେ ବାନ୍ଧିକରି । ରାଜା ଗ୍ରୀମୁକୁ ନେଲେଧରି ॥
ବିବିଧ ମାଡ଼ହିଁ ମାଇଲେ । କଣ୍ଟା ପାପାଣ ବାଟେ ନେଲେ ॥

---

ଗ୍ରାସ — ଖାଦ୍ୟ

ତପତ ବାଲି ଯେଣେଯାଏ । ଅଗ୍ନି ପ୍ରାୟେକ ତାତିଥାଏ ॥
ସେପଥେ ଘେନିଗଲେ ବଳେ । ନୃପତି ରୋଦଇ ବିକଳେ ॥
ଦେଖି ପ୍ରହରୀମାନେ ଛନ୍ତି । ଲୁହା ଠେଙ୍ଗାରେ ପ୍ରହାରନ୍ତି ॥
ହାଣନ୍ତି ଖଣ୍ଡ ଖଣ୍ଡ କରି । ମାଉଁସ ପକାନ୍ତି ବିଦାରି ॥
କୁକୁରମାନେ ଗୋଡ଼ାଇଲେ । ଆଣ୍ଟେଣ ଧରି କାମୁଡ଼ିଲେ ॥
ଏମନ୍ତେ ନାନା ଦୁଃଖଦେଇ । ରାଜା ସମ୍ମୁରେ କଲେନେଇ ॥
ବନ୍ଧ ଦେଖିଣ ଜନ୍ତୁସାଇଁ । ପୁଚ୍ଛଇ ମନ୍ତ୍ରୀ ମୁଖଚାହିଁ ॥
ହେମନ୍ତ୍ରୀ କେବଣ ଜନମ । କହ ଏହାର ପାପପୁଣ୍ୟ ॥
ରାଜା ବଚନେ ମନ୍ତ୍ରୀବର । ପାଞ୍ଜି ଫେଡ଼ିଲେ ଧାତକାର ॥
ବୋଇଲେ ଶୁଣ ଦଣ୍ଡଧର । ଏହାର ପାପ ଅଗୋଚର ॥
ଦ୍ରାବିଡ଼ ନାମେ ଏକପୁର । ସେନଗ୍ରେ ଏହୁ ନୃପବର ॥
ପ୍ରଥମେ ଧର୍ମ ଆଶ୍ରେକଲା । ଟଛକୁ ଦୁର୍ବୁଦ୍ଧି ଧଇଲା ॥
ପାଷାଣ୍ଡ ଯୋଗୀଙ୍କ ବଚନେ । ହରିଙ୍କି ନଭଜିଲା ମନେ ॥
ଶାସ୍ତ୍ର ପୁରାଣାଦି ନନ୍ଦିଲା । ବିଷ୍ଣୁର ଭକ୍ତଙ୍କୁ ମାରିଲା ॥
ବିଷ୍ଣୁ ନାମକୁ କଲାକୋପ । ଈଶ୍ୱର ନାମ କଲା ଜପ ॥
ସେ ଘେନି ପାପୀଏ ରାଜନ । ନର୍କଦଣ୍ଡକୁ ଏ ଭାଜନ ॥
ଶୁଣିଣ ଯମ କୋପକଲା । ବହୁତ ଦଣ୍ଡ ଦିଆଇଲା ॥
ବୋଇଲା ଏଥୁ ଘେନିଯାଅ । ନେଇଣ ନରକେ ପକାଅ ॥
ରାଜା ଆଜ୍ଞାରେ ଘେନିଗଲେ । ନେଇଣ ନର୍କେ ପକାଇଲେ ॥
ସମସ୍ତେ କଲା ନର୍କପାନ । ସେଠାରୁ ଆଣିଲେ କାଢ଼ିଣ ॥
ପୁଣିହିଁ ଆନ ନର୍କେ ନେଇ । ତହିଁରେ ନେଇଣ ପକାଇ ॥
ବୈରଣୀ କୁଣ୍ଡ ନର୍କଥିଲା । ସମସ୍ତଠାରେ ପକାଇଲା ॥
ଏମନ୍ତେ ଏକୋଇଶ ଯୁଗ । ରାଜନ କଲା ନର୍କଭୋଗ ॥
ତଦନନ୍ତରେ ଜନ୍ତୁନାଥ । ପିଶାଚ ରୂପେ କଲା ଜାତ ॥
ପିଶ ଚ ରୂପ ବନ୍ଧକରି । ଦୁଃଖେ ବୁଲଇ ବନଗିରି ॥
ପଶିଣ ସେ ଘୋର ବନରେ । ରହିଲା ବାହାଡ଼ା ବୃକ୍ଷରେ ॥
କ୍ଷୁଧା ତୃଷାରେ ଦୁଃଖପାଇ । ବିକଳେ ରୋଦନ କରଇ ॥
ବ୍ରାହ୍ମଣ ବେଦପତି ନାମ । ଯେବନେ ତାହାଙ୍କ ବିଶ୍ରାମ ॥
ପିଶାଚ ରୋଦନ କରନ୍ତେ । ଶବ୍ଦ ଶୁଣିଲେ କର୍ଣ୍ଣପଥେ ॥
ମଢରୁ ବାହାର ହୋଇଲେ । ଥୋକାଏ ଦୂର ଅନାଇଲେ ॥

---

ରୋଦଇ — କାନ୍ଦିବା

ଦେଖିଲେ ପିଶାଚ ସ୍ୱରୂପ । ଦିଶୁଛୁ ଅତିହିଁ ବିରୂପ ॥
ଲୌହ ପ୍ରାୟକ ଦିଶେ ଦେହ । ଜିହ୍ୱା କରୁଛୁ ଲହଲହ ॥
ଖୋଠ ପ୍ରାୟେକ ଚକ୍ଷୁଦୁଇ । ଅତି ବିରୂପ ଅଛୁ ହୋଇ ॥
କଙ୍କାଳ ପେଟ ଦିଶେ କ୍ଷୀଣ । ବିକଳ ହୋଇଲେ ଅପାର ॥
ତାହାଙ୍କ ନିକଟକୁ ଗଲେ । କିଏତୁ ବୋଲି ପଚାରିଲେ ॥
କିମ୍ପାଇଁ କରୁଛୁ ରୋଦନ । ଦିଶୁଛୁ ଅତି ଅପ୍ରଛନ ॥
କେଉଁ ସ୍ଥାନରେ ଭୁହିଥିଲୁ । ଏଠାକୁ କେମନ୍ତେ ଅଇଲୁ ॥
ତୋରୂପ ଦେଖି ମୋ ନୟନେ । ବିକଳ ଲାଗିଲା ମୋ ମନେ ॥
ସ୍ୱରୂପ କହ ମୋ ଆଗର । ଆଜ ଫେଡ଼ିବି ଦୁଃଖ ତୋର ॥
ଆମ୍ଭଙ୍କୁ ଯେପ୍ରାଣୀ ଦେଖଇ । ଅବଶ୍ୟ ମୁକତ ହୁଅଇ ॥
ପିଶାଚ ବୋଲଇ ଗୋସାଇଁ । ରାଜା ଥିଲଇଁ ପୂର୍ବେମୁହିଁ ॥
ଦ୍ରାବିଡ ନାମେ ଏକଦେଶେ । ତହିଁ ମୁଁ ରାଜା ସୋମ ବଂଶେ ॥
ଚଣ୍ଡ ବୋଲଣ ମୋର ନାମ । ବହୁତ ଆଚରିଲି ଧର୍ମ ॥
ସକଳ ବାରବ୍ରତ ଯାଗ । ମନପ୍ରେ କଲି ମୁହିଁ ଭୋଗ ॥
ଖଳ ଲୋକଙ୍କ ବୋଲେ ପଡ଼ି । ସକଳ ଧର୍ମ ଦେଲି ଏଡ଼ି ॥
ଗୋବିନ୍ଦ ନାମ ନ ଭଜିଲି । ବିଅଧେ ଶିବଙ୍କୁ ସେବିଲି ॥
ଏମନ୍ତେ ଗଲା କେତେଦିନ । କାଳେମୁ ହୋଇଲି ନିଧନ ॥
ଯମ ବହୁତ ଦଣ୍ଡଦେଲା । ନରକେ ନେଇ ପକାଇଲା ॥
ପିଶାଚ ଜନ୍ମ କଲାପୁଣି । ଅପାର କାଳେ ମୋତେ ଆଣି ॥
ଗହନ ବନର ପ୍ରଦେଶେ । ଭ୍ରମି ମରୁଛି ଶୋକଶୋଷେ ॥
କିଛିହିଁ ଆହାର ନପାଇ । କ୍ଷୁଧାରେ ନସତ ମୋ ଦେହା ॥
ବିଷ୍ଣୁରେ ହୋଇଲି ଦୋରେହା । ତେଣୁ ମୁଁ ଭୁଞ୍ଜିଲଇଁ ଏହା ॥
ବିଷ୍ଣୁ ମହିମା ଏତେ ବୋଲି । ମୁଁ ମୂଢ ଏବେତ ଜାଣିଲି ॥
ଯେ ବିଷ୍ଣୁ ବ୍ରହ୍ମାଣ୍ଡ ଈଶ୍ୱର । ସର୍ବ ଯାହାର ଖେଳଘର ॥
ବ୍ରହ୍ମା ଶଙ୍କର ଦେବଗଣ । ସେବନ୍ତି ଯାହାର ଚରଣ ॥
ଶୁକ ଶୌନକ ବେଦବ୍ୟାସ । ନାରଦ ଅଙ୍ଗିରା ଦୁର୍ବାସା ॥
ଆବର ଯେତେ ମୁନିଛନ୍ତି । ସମସ୍ତେ ବିଷ୍ଣୁଙ୍କୁ ସେବନ୍ତି ॥
ସେ ପ୍ରଭୁଠାରେ କଲି ଦ୍ରୋହ । ପାଇଲି ପିଶାଚର ଦେହ ॥
ଯଦ୍ୟପି ଏଥୁଁ ନିସ୍ତରିବି । ବିଷ୍ଣୁଙ୍କୁ ବହୁତ ସେବିବି ॥

---

ଶୁକ — ବ୍ରହ୍ମାଙ୍କ ପୁତ୍ର          ନସନ — ଦୁର୍ବଳ

ବିଷ୍ଣୁଙ୍କଠାରେ ଦୋଷ କଲି । ଏ ଜନ୍ମେ ପିଶାଚ ହୋଇଲି ॥
ବିଷ୍ଣୁଙ୍କୁ ଯେହୁ ନିନ୍ଦାକରେ । ଏକଷ୍ଟ-ସେହୁ ଭୋଗକରେ ॥
ଯେକର୍ମ କରି ନ ପାରିବ । କେବେହେଁ ନିନ୍ଦା ନକରିବ ॥
ଜାଣିଲେ ଗୃଣିବେଦ ସନ୍ଧ୍ୟା । କରିବ ନାହିଁ ବିଷ୍ଣୁନିନ୍ଦା ॥
ମୁହିଁ ଯେ ନିନ୍ଦିଲି ଶ୍ରୀହରି । ତେଣୁ ହୋଇଲି ହତଶିରି ॥
ଏବେ ସୁଭାଗ୍ୟ ଏତେକାଳେ । ତୁମ୍ଭଙ୍କୁ ଦେଖିଲଇଁ ଭୋଳେ ॥
ଏମନ ବୋଲି କରଯୋଡ଼ି । ବିପ୍ର ଚରଣ ତଳେପଡ଼ି ॥
ବୋଲଇ କରି ପ୍ରତିକାର । ନମିଲି ଚରଣେ ତୁମ୍ଭର ॥
ତୁମ୍ଭ ବାକ୍ୟରେ ଆନକେହି । ମୋ ଦୁଃଖ ନପାରିବ ଫେଇ ॥
ପୂର୍ବ ଜନ୍ମର କର୍ମଫଳେ । ତୁମ୍ଭଙ୍କୁ ଦେଖିଲି ମୁଁ ତୋଳେ ॥
ଶୁଣି ବୋଲନ୍ତି ବିପ୍ରବର । ପିଶାଚ ମୋର ବୋଲକର ॥
ତୁଏବେ ପ୍ରୟାଗକୁ ଯିବୁ । ମକର ସ୍ନାହାନ କରିବୁ ॥
ତେବେ ଖଣ୍ଡିବ ସର୍ବଦୋଷ । ମୁକତ ହୋଇବୁ ଅବଶ୍ୟ ॥
ଏସନ ବେଦପତି ବାଣୀ । ପିଶାଚ ତାହା ହୃଦେଶୁଣି ॥
ସୁଜନେ ହେତୁ କର ମନେ । ମାଘ ସ୍ନାହାନ କର ଜନେ ॥
ଅନ୍ତେ ପାଇବ ସ୍ୱର୍ଗେବାସ । ଭବେ ଭଣଇ କୃଷ୍ଣଦାସ ॥
ଉଦ୍ଧବେ କହିଲେ ଅଚ୍ୟୁତ । ଏ ଦୁଇ ପଦ ଶୁନଶତ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଉତ୍ତରଖଣ୍ଡେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ
ଚିତ୍ରରଜା ଗନ୍ଧଜନ୍ମ କଥନେ ନାମ ଊନବିଂଶୋଽଧ୍ୟାୟ

—×—

# ବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

ବୋଲନ୍ତି ପ୍ରଭୁ ଦଇତାରି । ଶୁଣ ଉଦ୍ଧବ ହେତୁକରି ॥
ସେ ବେଦପାଠ ଦ୍ୱିଜବର । ଜାଣଇ ଧର୍ମର ବିଚାର ॥
କହିଲା ମଧୁର ବଚନ । ତୋଷିଲା ପିଶାଚର ମନ ॥
ପୁଣିହଁ କହିଲା ବ୍ରାହ୍ମଣ । ତୁ ଏବେ ଧର୍ମକଥା ଶୁଣ ॥
ତୋ ଆଗେ କହିବା ବୁଝାଇ । ଶୁଣତୁ ଏକମନ ହୋଇ ॥
ମର୍ତ୍ତ୍ୟ ମଣ୍ଡଳେ ଦେହଧରି । ଯେଅବା ଦୁଃଖେ ତନହରି ॥
ଯଦ୍ୟପି ନଥାଇ ତା ବଂଶ । ସେ ଯେବେ ହୁଅଇ ବିନାଶ ॥
କେହି ନକରନ୍ତି ଦହନ । ନୁହଇଁ ଦଶାହ କ୍ରିୟା ମାନ ॥
ସେ ପ୍ରାଣୀ ପିଶାଚ ହୁଅଇ । କ୍ଷୁଧା ତୃଷାରେ ଭ୍ରମୁଥାଇ ॥
ଅପାର କାଳେ ମୋକ୍ଷ ହୋଇ । ଏକଥା କେବେ ଆନନୋହି ॥
ଯେଅବା ଧର୍ମବନ୍ତ ପ୍ରାଣୀ । ଧର୍ମ ଶାସ୍ତ୍ରକୁ ଥିବଶୁଣି ॥
ସେ ଯେବେ ବସନ କାଞ୍ଚନ । ବ୍ରାହ୍ମଣେ ନ ଦିଅଇ ଦାନ ॥
ଅନ୍ତେ ଲଭଇ ଏହିଗତି । ଅବଶ୍ୟ ପିଶାଚ ହୁଅନ୍ତି ॥
ସ୍ତ୍ରୀ ମାନଙ୍କ ଅଳଙ୍କାର । ବନ୍ଦୀ କରନ୍ତି ଯେଉଁନର ॥
ସେ ପ୍ରାଣୀ ବଡ଼ ଦୋଷପାଏ । ଅନ୍ତେ ପିଶାଚ ରୂପ ହୋଏ ॥
ଯେଅବା ବାଳକଙ୍କ ଧନ । ହରନ୍ତି କରି ଲୋଭମନ ॥
ମହାପାତକୀ ସେହୁଜନେ । ପିଶାଚ ହୁଅନ୍ତି ସେମାନେ ॥
ଯେଅବା ସଙ୍କଟ କାଳରେ । ପର ଦ୍ରବ୍ୟକୁ ଆଶାକରେ ॥
ତାହା ସେ ରକ୍ଷା ନକରଇ । ଶରଣ ବଢ଼ାଇଣ ଦେଇ ॥
ସେଲୋକ ମହାପାପୀ ଜାଣ । ପିଶାଚ ହୁଏ ଅନ୍ତେ ପୁଣ ॥
ଯେହାସ୍ୟ କରଣ ମନର । ପୋଡ଼ ଦିଅଇ ପରଘର ॥
ସେ ପ୍ରାଣୀମାନେ ବଡ଼ ଦୋଷୀ । ମଲେ ପିଶାଚ ହୋନ୍ତି ଆସି ॥
ଯେଅବା ପାପକୁ ନଡ଼ରେ । ପର ଦ୍ରବ୍ୟକୁ ଆଶାକରେ ॥

---

ଦଶାହ କ୍ରିୟା — ମୃତ୍ୟୁ ପରେ ଯେଉଁ କ୍ରିୟା କରାଯାଏ ।
ପାରଲୌକିକ କ୍ରିୟା

ଅନ୍ଧ କୁବୁଜା ଗ୍ଳେଷ୍ଟାମାନେ । ଅପାରଗନ୍ତି ସେହିମାନେ ॥
କିଅବା ଅନ୍ତ ବ୍ୟାଧିମନ୍ତ । ଏପର ସବୁଙ୍କର ହିତ ॥
ତାହାଯେ ନଅଇ ସ୍ନେହଇ । ସେ ପ୍ରାଣୀ ପିଶାଚ ହୁଅଇ ॥
ଏକଥା ଧ୍ରୁବ ବୋଲି ଜାଣ । ବିଧାତା କରିଛି ଭିଆଣ ॥
ଦୁର୍ବୁଦ୍ଧି କରି ଯେଉଁ ସୁତ । ଅନ୍ୟାୟ କରଇ ବହୁତ ॥
ପିତା ବଚନ ନମାନଇ । ଭଲ କହିଲେ ନ ବୁଝଇ ॥
ମାତା ପିତାଙ୍କୁ ନପୋଷିଣ । ରହଇ ପତ୍ନୀକୁ ଘେନିଣ ॥
ଏମନ୍ତ ଭାବେ ଯେଉଁ ଜନ । ଅନ୍ତେ ପିଶାଚ ହୋଏ ପୁଣ ॥
ଏକଥା ନୋହେ କେବେ ଆନ । ଯେଅବା ହିଅନ୍ତି ଗୋ ଦାନ ॥
ନୋହିଲେ ଭୂମି ଧାନଦେବ । ପୁଣି ତା ଲୋଭରେ ହରିବ ॥
ସେଲୋକ ମହାପାପୀ ହିନ୍ତି । ଅନ୍ତେ ଲଭଇ ନର୍କଗତି ॥
ପିଶାଚ କରେ ଯାକୁ ଯମ । ଭୁଞ୍ଜିକୁ ଅରଜିଲା କର୍ମ ॥
ଏକଥା ସ୍ୱରୂପ ଅଟଇ । କେବେହେଁ ଅନ୍ୟଥା ନୁହଇ ॥
ଯେ ବିଷ୍ଣୁ ପୂଜା ନକରିଣ । ଅର୍ଣ୍ଣ ଭୋଜନେ ହିଏମନ ॥
ବିଷ୍ଣୁ ମହିମା ନିନ୍ଦୁଥାଇ । ଅନ୍ୟ ଦେବତାଙ୍କୁ ସେବଇଁ ॥
ଏଭାବେ ଥାଏ ଯେଉଁ ଲୋକ । ଅନ୍ତେ ସେ ଲଭଇ ନରକ ॥
ସମସ୍ତେ କରି ନର୍କପାନ । ପିଶାଚ ହୁଏ ସର୍ବଦନ ॥
ତୁ ରାଜା ବିଷ୍ଣୁ ନିନ୍ଦାକଲୁ । ଅନ୍ୟ ଦେବତାଙ୍କୁ ସେବିଲୁ ॥
ତେଣୁଟି ପିଶାଚ ହୋଇଲୁ । ଗତଜନ୍ମ ଦୋଷ ଭୁଞ୍ଜିଲୁ ॥
ଯେବେହେଁ ନୋହିଲା ଅନ୍ୟଥା । ଶୁଣହେ ପୁରାତନ କଥା ॥
ପୂର୍ବେଯେ କେରଳ ଦେଶରେ । ଥିଲା ଉତ୍ତମ ଦ୍ୱିଜବରେ ॥
ତାନାମ ବାସୁଦେବ ପଣ୍ଡ । ବହୁତ ଥିଲା ତା ସମ୍ପତ୍ତି ॥
ସପତ ଗୋଟି ତାର ଭ୍ରାତ । ଏକ ମାତାର ଷଡ଼ପୁତ୍ର ॥
ବାସୁ ନାମକ ଯେଉଁ ଦ୍ୱିଜ । ସାବତ ଜନନୀ ତନୁଜ ॥
ତେଣୁ ତାହାଙ୍କୁ ହିଂସାଧରି । ଅହନ୍ତା ଥାଇ ସବୁଙ୍କରି ॥
କାଳେ ହୋଇଲା ଅନ୍ୟୋଅନ୍ୟ । ନିଜ ଭାରିଜା ବୁଦ୍ଧି ଘେନି ॥
ତାହାଙ୍କୁ ବୋଲେ ବସୁଦେବ । ହିଅହେ ମୋତେ ଭାଗେ ଦ୍ରବ୍ୟ ॥
ଆଜନ୍ମୁ ଯିବି ଭିନ୍ନ ହୋଇ । ଶୁଣି କୋପିଲେ ଷଡ଼ଭାଇ ॥
ତାହାଙ୍କ ନରାଣ ବଚନେ । ବ୍ରାହ୍ମଣ ବଇରାଗ୍ୟ ମନେ ॥

---

ତନୁଜ — ପୁଅ

କୁଟୁମ୍ବ ବର୍ଜ୍ଜନ କରି ଗଲା । ଅନେକ ଗ୍ରାମରେ ବୁଲିଲା ॥
ଭିକ୍ଷା ମାଗିଣ ପେଟ ପୋଷି । ପଡ଼ିଲା ମହାରଣ୍ୟ ଆସି ॥
ମାଗିଲେ ଭିକ୍ଷା ନ ପାଇଲା । ସେ ରାଜ୍ୟ ଉପେକ୍ଷିଣ ଗଲା ॥
କ୍ଷୁଧାରେ ବୁଲଇ ବନରେ । ମିଳିଲା ନର୍ମ୍ମଦ ଗିରିରେ ॥
ଆହାର ନପାଇ ବ୍ରାହ୍ମଣ । ଅରଣ୍ୟେ ହରାଇଲା ପ୍ରାଣ ॥
ଯହୁଁ ସେ ନୋହିଲା ଦହନ । ନୋହିଲା କ୍ରିୟା ବିଧିମାନ ॥
ତେଣୁଟି ପିଶାଚ ହୋଇଲା । ନଗ୍ନ ହୋଇଣ ବୁଲିଲା ॥
ବ୍ୟାକୁଳ ହୋଇ ଭୋକଶୋଷେ । ନରକେ ଭ୍ରମେ ଦଶଦିଶେ ॥
ଏକେ ହୋଇଛୁ ଦିଗମ୍ବର । ଆହାର ତେଜ ନିରନ୍ତର ॥
କିଛିହିଁ ନପାଇଲା ଯହୁଁ । ବହୁତ କାନ୍ଦିଲାକ ତହୁଁ ॥
ବନେ ବୁଲଇ ଛଟପଟେ । ଏମନ୍ତ ସମୟେ ସେ ବାଟେ ॥
ଆସନ୍ତେ ଏକ ବ୍ରହ୍ମଚାରୀ । ଆଣୁ ଅଛନ୍ତି ଗଙ୍ଗାବାରି ॥
କାଚ ଘଟିରେ ଜଳଭରି । ଧରି ଅଛନ୍ତି ଯତ୍ନକରି ॥
ସେପଥେ ଆସିବାର ବେଳେ । ପିଶାଚ ଦେଖିଲା ତା ଭାଳେ ॥
ଆଗରେ ଓଗାଳିଲା ଆସି । ତାହାଙ୍କୁ ବୋଇଲା ରହସି ॥
ପଥୁକ ଶୁଣିତା ଉତ୍ତର । ସେଠାରେ ରହିଣ ନିର୍ଭର ॥
କି କାର୍ଯ୍ୟ ଅଛଇ ତୋହର । କହତୁ ଆମ୍ଭର ଆଗର ॥
ପିଶାଚ ବୋଲଇ ଉତ୍ତର । ତୃଷାରେ ଆରତ ଶରୀର ॥
ଅତିହିଁ ଆକୁଳ ମୋ କାୟେ । ବୁଲନ୍ତି ତତହିଁ ତୃଷାରେ ॥
ଏବାଣୀ ଶୁଣି ପିଶାଚର । ପଥୁକ ବୋଲଇ ଉତ୍ତର ॥
ଧୂମ୍ର ପ୍ରାୟେକ ରୂପ ଦିଶେ । ଉଲଗ୍ନ ହୋଇଛୁ ବିଶେଷେ ॥
କିମ୍ପାଇଁ ଓଗାଳିଲୁ ଆସି । ଏଥିର ଚରିତ କହସି ॥
ପଥୁକ ମୁଖୁ ଏହା ଶୁଣି । ପିଶାଚ ପୂର୍ବକଥା ଭଣି ॥
ବୋଲଇ ଶୁଣହେ ଗୋସାଇଁ । ଜାତିରେ ବିପ୍ରଅଟେ ମୁହିଁ ॥
ବସୁ ବୋଲିଣ ମୋର ନାମ । କେରଳ ଦେଶରେ ଆଶ୍ରମ ॥
ବିଫଳ ବଞ୍ଚିଥାଇ ଧନ । କିଛି ନକଲି ଦାନପୁଣ୍ୟ ॥
ସକଳଙ୍କୁ ଜୀବରେ ନିନ୍ଦସୁ । ଲୋଭ କୃପଣ ଦୁରାଶ୍ରୟୁ ॥
ଧନ ଅର୍ଜନେ ମନଦେଇ । ନାନା ବାଣିଜ୍ୟ କରୁଥାଇ ॥

---

ଦିଗମ୍ବର — ଶିବ ( ଦିଗଅମ୍ବର ଯାହାର )
ପଥୁକ — ବାଟୋଇ

ଆମିଷ ଗୋରସ ସର୍ବିଣ । ବିକ୍ରୀ କରଇ ମୁଁ ଏମାନ ॥
ସର୍ବଦା ପରଅର୍ଥ ଲୁବ୍ଧ । ଧର୍ମ ନକଲି ମୁଁ ପାପିଷ୍ଠ ॥
ମାଗିଲ ଲୋକସେ ମାଗଇ । ତାହାକୁ ନାଶ କରଇ ॥
ସନ୍ଧ୍ୟା ତର୍ପଣ ମୁଁ ନକଲି । ଏମାନ•ସବୁ ଦୂରକଲି ॥
ଅତି କ୍ଷୁଧାର୍ତ୍ତ ଯେଉଁ ଜନ । ତାହାକୁ ଦେଇନାହିଁ ଅନ୍ନ ॥
ସେ ଅବା ତୃଷାରେ ବିକଳ । ତାହାକୁ ଦେଇନାହିଁ ଜଳ ॥
ଅନ୍ଧ ଦରିଦ୍ର ବୃଦ୍ଧଠାରେ । ଦୟା ମୋ ନଥାଇ ହୃଦରେ ॥
ସେ ଅବା ଆରତ ହୋଇଣ । ଭୟରେ ପଶଇ ଶରଣ ॥
ତାହା ମୁଁ ରକ୍ଷା କରିନାହିଁ । ପାଇବି ସଦଗତି କାହିଁ ॥
ଅନାଥ ପ୍ରାଣୀ ଯେଉଁ ଜନ । ତାକୁ ନଦେଲି ବସ୍ତ୍ରଦାନ ॥
ଖରା ବରଷା କାଳେ ମୁହିଁ । ପିମ୍ପା ପାଣ୍ଡୋଇ ଦେଇନାହିଁ ॥
ସୁଦୟା ନଥାଇ ମୋ ମନେ । ଗ୍ରାସହିଁ ଦେଇନାହିଁ ଧେନେ ॥
ସେ ଗୋରୁ ଲୋମକେ ଦେବତା । ଭିଆଣ କରିଛି ବିଧାତା ॥
ସେଠାରେ ନକଲି ସୁଦୟା । ଏଡ଼େ ନିଷ୍ଠୁର ମୋର କାୟା ॥
ଆଉ କଥାଏ ମୋର ଶୁଣ । ସର୍ବଦା କାଳେ ଲୋଭପଣ ॥
ସୁସ୍ୱାଦୁ ପଦାର୍ଥ ମିଳିଲେ । ତକ୍ଷଣେ ଭୁଞ୍ଜଇ ତା ଭଲେ ॥
ଘରେ କୁଟୁମ୍ବକୁ ନଦେଇ । ଗୁପତ କରିଣ ଭୁଞ୍ଜଇ ॥
ମୋହୋର ଏଡ଼େ ହୀନବୁଦ୍ଧି । ମୁଁ ମୂଢ଼ ଏଡ଼େ ଅପରାଧି ॥
ଯେଅବା ବ୍ୟାଧିବନ୍ତ ନର । ତାର ନକଲି ଉପକାର ॥
ଜାଣି ଔଷଧ ନ ଦିଅଇ । ଦାରୁଣ ଶତ୍ରେ ରହିଥାଇ ॥
ଦେଖିଲେ ବୈଷ୍ଣବ ମାନଙ୍କୁ । ନଯାଇ ତାହାଙ୍କ ପାଶକୁ ।
ଆଦର ନ କରଇ ତାଳେ । ବସଇ ଦୁଷ୍ଟଜନ ମେଳେ ॥
ନ କଲି ବାରବ୍ରତ କିଛି । ଆଉକ ଭଲମନ୍ଦ ଅଛି ॥
ତିଳ କାଞ୍ଚନ ବସ୍ତ୍ର ଦାନ । ବ୍ରାହ୍ମଣେ ନଦେଲି ଏମାନ ॥
ଚନ୍ଦ୍ର ଆଦିତ୍ୟ ଗହଣରେ । କିଛି ନଦେଲି ବିପ୍ରବରେ ॥
ତୁଳ ମାସରେ ହେଳାକଲି । ଆକାଶ ଦୀପ ନ ଜାଳିଲି ॥
ମାଘ ମାସରେ ବଡପୁଣ୍ୟ । ତହିଁକ ନୋହିବେ ଗଣନ ॥
ପ୍ରାଣୀଙ୍କି ଦଣ୍ଡିବାର ବେଳେ । ମୁଁ ଦେଖିଥାଇ ବେନଡୋଳେ ॥

---

ଆକାଶଦୀପ — କାର୍ତ୍ତିକମାସରେ ଯେଉଁ ଦୀପ ଅତି ଉଚ୍ଚରେ
ଗୋଟିଏ ବାଉଁଶ ଉପରେ ରଖାଯାଇ ଥାଏ

ନୋହିଲେ ପୁଣ୍ୟକାଳ ଜାଣି । କଚ୍ଛହିଁ ନ ଦେଲ ମୁଁ ପୁଣି ॥
ହୃଦରେ ବ୍ୟାକୁଳ ନଥାଇ । ବନ୍ଦୀ ଛଡ଼ାଇ ଦେଇନାହିଁ ॥
ମୁଁ କାହିଁ ହୋଇବଟି ମୋକ୍ଷ । ଗୋଟିଏ ନ ରୋପିଲ ବୃକ୍ଷ ॥
ଚୂତ ଅଶ୍ୱତ୍ଥ କଳ୍ପତରୁ । ବୃକ୍ଷ ନ ରୋପିଲି ଏଥିରୁ ॥
କଚ୍ଛ ନକଲ ସଦ୍ଧର୍ମ କର୍ମ । ତେଣୁ ପାଇଲ ଏତେ ଶାସ୍ତି ॥
ଧର୍ମରେ ନ ବଳାଇ ଚିତ୍ତ । ନକଲ ଗୃହ୍ୟାସ୍ପଣ ବ୍ରତ ॥
ସକଳ ଧର୍ମ ତ୍ୟାଗକଲ । ଗୁରୁଙ୍କ ପାଦେ ନ ସେବଲ ॥
କର୍ମରେ ଅର୍ଜି ଅଛି ଯାହା । ଅବଶ୍ୟ ଭୁଞ୍ଜିବ ନା ତାହା ॥
କଚ୍ଛହିଁ ଦେଇନାହିଁ ପୂର୍ବେ । ଲୋଡ଼ିଲେ କେହୁ ଦେବ ଏବେ ॥
ସର୍ପ ପ୍ରାୟେକ ବନେଥାଇ । ପବନ ପିଇଣ ବଞ୍ଚଇ ॥
ଏ ବନେ ଭଲଦ୍ରବ୍ୟ ଅଛି । ତାହା ମୁଁ ନପାଇଲ କଚ୍ଛି ।
ବିଧାତା ଦେଇନାହିଁ ମୋତେ । ମୁଁ ଅବା ଭକ୍ଷିବ କେମନ୍ତେ ॥
ଏସବୁ ଦଇବର କୃତ୍ୟ । ପ୍ରାଣୀର ନୁହଇ ଆୟତ୍ତ ॥
ଯେଅବା ଜ୍ଞାନବନ୍ତ ଲୋକ । ହରିର ଅଟନ୍ତି ସେବକ ॥
ସେମାନେ ଧର୍ମ ଆଚରନ୍ତି । ସାଧୁ ସଙ୍ଗତେ ତାଙ୍କ ପ୍ରୀତି ॥
ସୁବର୍ଣ୍ଣ ସୁରଭି ବସନ । ଯୁବତୀ ସୁଗନ୍ଧ ଚନ୍ଦନ ॥
କଅବା ଭକ୍ଷିବାର ଦ୍ରବ୍ୟ । ଏହା ଯେ ବିପ୍ରେ ଦାନଦେବ ॥
ସେ ଯେବେ ଗିରିଶିଖେ ଯାଇ । ଉତ୍ତମ ପଦାର୍ଥ ମିଳଇ ॥
ବ୍ରହ୍ମରାକ୍ଷସ ଏ ବନରେ । ଭ୍ରମୁ ଅଛନ୍ତି ନିରନ୍ତରେ ॥
ଏଥିକୁ ଭୟ ତୁ ନକର । ତୁହି ସେବକ ଯେ ଆମ୍ଭର ॥
ଯେଅବା ବୈଷ୍ଣବ ଅଟନ୍ତି । ତାଙ୍କର ନାହିଁ କଚ୍ଛଭ୍ରାନ୍ତି ॥
ଚାମୁଣ୍ଡା ବେତାଳ ଡାକିଣୀ । ଆବର ପିଶାଚ ଏସୁଣି ॥
ବ୍ୟାଘ୍ର ଭଲ୍ଲୁକ ସର୍ପମାନେ । ଭକ୍ତକୁ ଦେଖିଲେ ନୟନେ ॥
ପଳାନ୍ତି ଭୟଯୁକ୍ତ ହୋଇ । ଭକ୍ତକୁ ଆପଦ ନଥାଇ ॥
ଆଜ ସଫଳ ମୋର ଦିନ । ତୁମ୍ଭର ପାଇଲି ଦର୍ଶନ ॥
କର୍ମକୁ ଆଦରି ମୋହୋର । କଷ୍ଟେ ରହିଛି ବନଘୋର ॥
ଯେଦିନେ ଦିନ ମୁହିଁ ଗଲି । ଯମୁନା ନଈକୂଳେ ଥିଲି ॥
ସାରସ କହିଲ ସମସ୍ତ । ତୋଷ ହୋଇଲା ମୋର ଚିତ୍ତ ॥
ତାପ ଛୁଟିଲା ମୋର ମନୁ । ଶୋଚନା ନକଲ ସେହିନୁ ॥
ତହୁଁ ପଥିକ ପଚାରିଲା । ସାରସ ତୋତେ କି କହିଲା ॥

ସାରସ — ହଂସ

ସେକଥା କହ ମୋତେ । ଶୁଣି ଶରଧା ମୋର ଚିତ୍ତେ ॥
ପ୍ରେତ ବୋଇଲା ଶୁଣ ତାହା । ତୁ ମୋତେ ପଚାରିଲୁ ଯାହା ॥
ଧୋପ୍ୟାଣୀ ନାମେ ସରୋବର । ନିର୍ମଳ ସୁସ୍ୱାଦୁ ସେ ନୀର ॥
ଦିନେକ ତୃଷାର ଆରତେ । ଗଲି ମୁଁ ଜଳପାନ ଅର୍ଥେ ॥
ଏସନ ସମୟେ ସାରସ । ଆସିଣ ହୋଇଲା ପ୍ରବେଶ ॥
ସଙ୍ଗତେ ଭାରିଯା ତା ଆସି । ମିଳିଲେ ଆସି ଦୁଇପକ୍ଷୀ ॥
ତୃଷାରେ ଜଳପାନ କଲେ । ବାହୁଡ଼ି କୂଳେ ଉଭାହେଲେ ॥
ପ୍ରିୟା ସଙ୍ଗତେ କ୍ରୀଡ଼ାକରି । ଆନନ୍ଦ ହୋଇଣ ବିହରି ॥
ବୃକ୍ଷ ଗୁମ୍ଫାରେ ବାଳକୂଦେ । ସାରସ ବସିଲା ଆନନ୍ଦେ ॥
କ୍ଷଣ ମାତ୍ରକେ ନିଦ୍ରାଗଲା । ପତ୍ନୀ ତା ପାଶେ ବସିଥିଲା ॥
ଶୁଣହେ ଏଥୁ ଅନନ୍ତରେ । ଅଇଲା ଏକଇ ବାନରେ ॥
ଅଟନ୍ତି ବିରୂପ ମର୍କଟ । ବେଗେକେ ହେଉଛି ଛଟପଟ ॥
ଆସି ମିଳିଲା ନଦୀକୂଳେ । ଦେଖିଲା ସାରସକୁ ତୋଳେ ॥
କ୍ଷୁଧାରେ ଆରତ ହୋଇଲା । ଉପରେ ମାଡ଼ିଣ ପଡ଼ିଲା ॥
ଭୟେ ସକଳ ପକ୍ଷୀମାନେ । ପଳାଇ ପଶିଲେ କାନନେ ॥
ଦେଖିଣ ଘରଣୀ ତାହାର । ବିଳାପ କଲାକ ଅପାର ॥
ଜାଗିଲା ନିଜଗତ ଗୃହେଁ । ସାରସ ଉଠିଲା ଚିଆଇଁ ॥
ଦେଖିଲା ଉପରେ ତାହାର । ମାଡିଣ ବସିଛି ବାନର ॥
ସାରସ ବୋଇଲା ହେଗୁଡ । ତୁ କପି ଅଟୁ ବଡ଼ ଗଢ ॥
ବିଅର୍ଥେ ନମାର ତୁ ମୋତେ । କଥାଏ କହିବି ମୁଁ ତୋତେ ॥
ତୋହରେ ନୁହଇ ମୁଁ ଦୋଷୀ । କମ୍ପାଇ ଧରିଛୁ ଆକର୍ଷି ॥
ଯେବଣ ଜନ ଦୋଷକାରୀ । ରାଜାହିଁ ବୁଦ୍ଧି ତାକୁ ମାରି ॥
ନବୁଦ୍ଧି ନକରଇ ନାଶ । କ୍ଷମା କରିବ ମୋର ଦୋଷ ॥
ମୂର୍ଖ ତୋହର ହିତକାରୀ । ତୁ ମୋତେ ପକାଉଛୁ ମାରି ॥
ତୋହର ନାମ ମୁଁ ଜାଣଇ । ସହୁଁ ଜାତକେ ଶୁର ମୁହିଁ ॥
ଶୁଣି ବାନର ଛାଡ଼ିଦେଲା । ସ୍ୱରୂପ କହସି ବୋଇଲା ॥
ପୂର୍ବେ କେବଣ ଜନ୍ମେ ମୁହିଁ । ତୋହ ମୋହୋର ଭେଟଭାହିଁ ॥
ସାରସ ବୋଇଲା ହୋ ଶୁଣ । ତୋ ଆଦ୍ୟ ଜନ୍ମ କଥା ମାନ ॥
ବୈଧନ୍ୟ ମାମେ ଏକଭୂମି । ତହିଁ ତୁ ଥିଲୁ ଦଣ୍ଡଧାରୀ ॥

ମୁହିଁ ପୂର୍ବେହିତ ବ୍ରାହ୍ମଣ । ହୋଇଣ ଥିଲି ତୋ ପୁରେଣ ॥
ତୁ ବଡ଼ ଖଣ୍ଡପଣ କଲୁ । ଜନ ପ୍ରଜାଙ୍କୁ ଦୁଃଖ ଦେଲୁ ॥
ନ ବୁଝି ଦଣ୍ଡିଲୁ ଲୋକଙ୍କୁ । ମୁକତା ନଦେଲୁ ତାହାଙ୍କୁ ॥
କାଳେ ହୋଇଲୁ ପ୍ରାଣେନାଶ । ତଗରେ ନେଲେ ଯମପାଶ ॥
ଯମ ଦେଖିଣ କୋପକଲା । ମନ୍ତ୍ରୀକ ଗୃହିଁଣ ବୋଇଲା ॥
କହ ଏହାର ପୁଣ୍ୟପାପ । କଧର୍ମ କଣଅଛୁ ନୃପ ॥
ରାଜା ଅଗ୍ରରେ ମନ୍ତ୍ରୀ ଦୁଇ । ତତ୍ଷଣେ ପାଞ୍ଜି କାଢ଼ିଫେଇ ॥
ବୋଇଲେ ଶୁଣ ଦଣ୍ଡଧର । ଏମନ୍ତ ଥିଲା ମଞ୍ଚପୁର ॥
ରାଜ ପଣରେ ଧନ ନେଲା । ପ୍ରାଣୀକ ବହୁ ଦୁଃଖ ଦେଲା ।
ନବୁଝି ଦଣ୍ଡଇ ହରଷେ । ସୁଢସ୍ୱା ନକରଇ ଲେଶେ ॥
ଲେଖିଲେ ଏହ ବଡ଼ଦୋଷୀ । ଯେ ତୁମ୍ଭ ବସ୍ତୁରକୁ ଆସି ॥
ଏହା ବସ୍ତୁର ଯମ ଧର୍ମ । ଏ ଯେଉଁ କଲା ପାପକର୍ମ ॥
ପୃଥିରେ ହୋଇଣ ନୃପତି । ଏ ତେବେ କଲାକ ଅମାତ ॥
ତହିଁକ ଶାପ ଏବେ ପାଉ । ସମସ୍ତେ ନର୍କେ ପଡ଼ିଥାଉ ॥
ନରକେ ଅଛଲେ ପକାଇ । କେତେହେଁ କାଳ ଗଲା ବହି ॥
ତହୁଁ ବାହାର କରଆଣି । ମର୍କଟ ଜୀବ କଲେ ପୁଣି ॥
ତେଣୁ ତୁ ବାନର ହୋଇଲୁ । ତୁ ମୋତେ ଚିହ୍ନି ନ ପାରିଲୁ ॥
ଶୁଣି ସନ୍ତୋଷ ଦଣ୍ଡଧାରୀ । ପ୍ରଶଂସା ସାରସକୁ ସତ୍ତ ॥
ବଚନ କହଇ ମଧୁର । ପୂର୍ବେତୁ ଅଟୁ ଗୁରୁମୋର ॥
ଏବେ ହୋଇଲୁ ମୋର ଗୁରୁ । ଭେଟିଲି ଈଶ୍ୱର ଭାଗ୍ୟରୁ ॥
ତୋ ପାଦେ ମୋର ନମସ୍କାର । ବୋଲିଣ ଶିରେ ଦେଲାକର ॥
ପୁଣିହିଁ କୃତ୍ୟ କୃତ୍ୟ ହୋଇ । ବୋଲଇ ସାରସକୁ ଗୃହିଁ ॥
ହେପ୍ରଭୁ କର ଅନୁଗ୍ରହ । ଆଉ କଥାଏ ମୋତେ କହ ॥
ପୂର୍ବେ ପ୍ରାଣୀଙ୍କି ଦେଇକଷ୍ଟ । ଏଜନ୍ମେ ହୋଇଲି ମର୍କଟ ॥
ପୁଣି ଆଗତ ଜନ୍ମେ ମୁହିଁ । କଦେହ ପାଇବ ଗୋସାଇଁ ॥
ଏକଥା କହିବ ହେଗୁରୁ । ଶୁଣିବ ତୁମ୍ଭର ମୁଖରୁ ॥
ସାରସ ବୋଲଇ ବଚନ । କହିବା ତୁମ୍ଭର ବିଧାନ ॥
ପୂର୍ବେ ନୃପତି ହୋଇଥିଲୁ । ଅଦୋଷ ପ୍ରାଣୀଙ୍କି ଦଣ୍ଡିଲୁ ॥
ଅନ୍ୟାୟ କଲୁ ତୁ ଅପାର । ଅନ୍ତେ ପଡ଼ିଲୁ ତମ ଘୋର ॥
ଏମନ୍ତେ କପି ଦେହ ବହି । ବନେ ରହିଲୁ ଦୁଃଖ ପାଇ ॥

ଲେଶେ — ଅଳ୍ପକରେ     ମର୍କଟ — ମାଙ୍କଡ଼

ଏଦେହ ଗଲେ କିଛି ଦିନେ । ଗୋରୁ ହୋଇବୁ ଆରଜନ୍ମେ ॥
ଗୋଜନ୍ମ ହୋଇ ତହିଁଥିବୁ । ଅନେକ ଭାର ତୁ ସହିବୁ ॥
ତଦାନନ୍ତରେ ଶୁଣ ତୁହି । ଜନ୍ମିବୁ ହଂସ ଦେହ ନେଇ ।
ଛାଡ଼ିଲେ ପକ୍ଷୀ କଳେବର । ପାଇବୁ ମନୁଷ୍ୟ ଶରୀର ॥
ଶୁଣ ନୃପତି ନରନାହା । ତୁ ମୋତେ ପଚାରିଲୁ ଯାହା ॥
ଗତ ଆଗତ ଯେତେ କଥା । କହିଲି ସକଳ ବ୍ୟବସ୍ଥା ॥
ଶୁଣି କହିଲା ଶାଖାମୃଗ । ଯେତେ କହିଲୁ ମୋର ଆଗ ॥
ଏକଥା ଅଟଇ ସ୍ୱରୂପ । ଭୁଞ୍ଜିଲି ସର୍ବକର୍ମ ପାପ ॥
ମୋ ଆଦ୍ୟ ଜନ୍ମ ମୁଁ ଶୁଣିଲି । ତୋ ଜନ୍ମ କଥା ନ ଶୁଣିଲି ॥
ତୁତ ବ୍ରାହ୍ମଣ ହୋଇଥିଲୁ । କିଦୋଷେ ପକ୍ଷୀ ଜନ୍ମ ହେଲୁ ॥
ଏକଥା ବଖାଣି କହିବା । ଯେଣେ ମନକୁ ପ୍ରତେଯିବା ।
ସାରସ ବୋଲଇ ରାଜନ । ଶୁଣ ମୋ ଜନ୍ମ କଥାମାନ ॥
ମୁଁ ଯେ ବ୍ରାହ୍ମଣ ହୋଇଥିଲି । ତୋ ସଙ୍ଗେ ଦିନକାଳ ନେଲି ॥
ମୋଠାରୁ ସର୍ବ ଶାସ୍ତ୍ର ଶିଖୁ । ଗୁରୁ ପ୍ରାପ୍ତେକ ମୋତେ ଦେଖୁ ॥
ଦିନେ ତୁ ଧର୍ମ ବାଞ୍ଛାକଲୁ । ମୋଠାରେ ଧନ ସମର୍ପିଲୁ ॥
ଲକ୍ଷେ ଭରଣ ଧାନ ଦେଇ । ବୋଇଲୁ ଶୁଣିମା ଗୋସାଇଁ ॥
ଏଥୁରୁ ଧାନ ତୁମ୍ଭେ ନିଅ । ବିପ୍ରଙ୍କୁ ସବୁ ବାଣ୍ଟି ଦିଅ ॥
ମୁଁ ତାହା କଲି ସନମତ । ଲୋଭ ବଳିଲା ମୋର ଚିତ୍ତ ॥
ସେ ଧାନ ଗ୍ରହଣ ମୁଁ କଲି । ବିପ୍ରଙ୍କୁ ଗୋଟିଏ ନ ଦେଲି ॥
ତେଣୁ ଲାଗିଲା ମୋତେ ଦୋଷ । କାଳେ ହୋଇଲା ପ୍ରାଣେନାଶ ॥
ଆଣିଲେ କୃତାନ୍ତକ ଦୂତେ । ରାଜା ଛାମୁରେ ଦେଲେ ମୋତେ ॥
ମୋତେ ଦେଖିଣ ଜନ୍ତୁରାଣ । ବୁଝିଲା ମୋର ପାପପୁଣ୍ୟ ॥
କୋପେଣ ହୋଇଲା ପ୍ରଚଣ୍ଡ । ବହୁତ ମୋତେ କଲା ଦଣ୍ଡ ॥
ଏମନ୍ତେ କେତେ ଦିନ ଅନ୍ତେ । ସାରସ ପକ୍ଷୀ କଲା ମୋତେ ॥
ଏନାରୀ ମୋହର ଘରଣୀ । ପୂର୍ବେ ଏ ଅଟଇ ଧରଣୀ ॥
ପରକୁ ହୃଦେ କରି ହିଂସା । ବହୁତ ଶ୍ରେଷ୍ଠ କଲା କଂସା ॥
ଏଯେଣୁ କଂସା ଶ୍ରେଷ୍ଠକଲା । ତେଣୁଟି ପକ୍ଷୀ ଜନ୍ମହେଲା ॥
ଯାହାର କର୍ମେ ଯାହାଥାଇ । କେବେହେଁ ଅନ୍ୟଥା ନୁହଇ ॥
ଶୁଣିଣ ସନ୍ତୋଷ ହୋଇଲା । ବାହୁଡ଼ି ନିଜପୁରେ ଗଲା ॥

---

କୃତାନ୍ତକ — ଯମ

ସାରସ ମର୍କଟର ବାଣୀ । ମୁଁ ତାହା କହୁଅଛୁ ଶୁଣି ॥
ହୃଦରୁ ଉପେକ୍ଷିଲ ଚିନ୍ତା । ଯାହାସେ ଲେଖିଛୁ ବିଧାତା ॥
କେତାହା କରିବଟି ଆନ । ଭୁଞ୍ଜିଲ ଲଲାଟ ଲେଖନ ॥
ଏମନ୍ତ ମନରେ ବିଚାରି । ରହିଲ କର୍ମକୁ ଆଦରି ॥
ତୁ ମୋତେ ଗଙ୍ଗାଜଳ ଦେଲେ । କୃତାର୍ଥ ହୋଇବି ମୁଁ ଭଲେ ॥
ଶୁଣି ପଥିକ ଦୟାକଲା । ଆପଣା ହୃଦେ ବିଚାରିଲା ॥
ମୋହୋର ପିତାମାତା ପାଇଁ । ନେଉଛୁ ଗଙ୍ଗାଜଳ ମୁହିଁ ॥
ଏଜନେ ସ୍ନାହାନ କରିବେ । ତେବେ ସେ ମୁକତ ହୋଇବେ ॥
ଏବେ ପିଶାଚ ଦେଖି ମୋତେ । ଜଞ୍ଜାଳ କଲା ଏ ଯୁକତେ ॥
ବହୁତ ହୋଇଲା ବିକଳ । ମାଗୁଛୁ ଦିଅ ଗଙ୍ଗାଜଳ ॥
ନଦେଲେ ନିସ୍ତାର ନୋହିବ । ପୁଣି ମୋହର ଧର୍ମଯିବ ॥
ପ୍ରାଣୀଙ୍କୁ କଲେ ଉପକାର । ଅନ୍ତେ ବସିବ ସ୍ୱର୍ଗପୁର ॥
ଏହାକୁ ଦେବି ଗଙ୍ଗାପାଣି । ଆବର ଯିବି ପଚ୍ଛଆଣି ॥
ଏତେ ବିଚାରି ଗଙ୍ଗାମ୍ବର । ନେଇଣ ଦେଲା ତାର କର ॥
ପିଶାଚ ହରଷ ହୋଇଣ । ତୃଷାରେ କଲା ଜଳପାନ ॥
ଥୋକାଏ ଶିରରେ ସିଞ୍ଚିଲା । ତେବେ ସେ ମୁକତ ହୋଇଲା ॥
ସ୍ୱର୍ଗରୁ ଅଇଲା ବିମାନ । ବସିଣ ଗଲା ସ୍ୱର୍ଗସ୍ଥାନ ॥
ଲୋମଶ ଋଷି ଯେ କହିଲା । ବେଦନିଧି ତା ଶୁଣୁଥିଲା ॥
ପିଶାଚ ପିଶାଚୀ ଶୁଣିଣ । ରେବାରେ କଲେ ସେ ସ୍ନାହାନ ॥
ତକ୍ଷଣେ ସେ ରୂପ ଛାଡ଼ିଲେ । ଆପଣା ତନୁ ସେ ପାଇଲେ ॥
ଏଫଳ ମାଘ ସ୍ନାହାନର । ଏହାକୁ ପାଳିବ ଯେନର ॥
ଏଜୀବ ହୋଇବ କାରଣ । ତୁ ଯେ ଅନାଦି ନାରାୟଣ ॥
ରେବା ତୀର୍ଥର ଫଳ ଏହି । ଏବ୍ରତ ପ୍ରତିଫଳ ତୁହି ॥
ଯେଣେ ଖଣ୍ଡିବୁ ପାପସବ । ତୁମ୍ଭର ଯେଣୁ ପ୍ରିୟ ଭାବ ॥
ତେଣୁ କହିଲୁ ତୋତେ ଏହା । ମୋହନ୍ତୁ ନଜାଣୁ ତୁ ତାହା ॥
ଭଣଇ ଗୋପୀକୃଷ୍ଣ ଦାସ । ଦୁଇଣ ତେପନରେ ଶେଷ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଉତ୍ତରଖଣ୍ଡେ ବ୍ରହ୍ମପିଶାଚ ମୋକ୍ଷଣେ ସ୍ୱର୍ଗ ଅପସରା ଅଗ୍ନିକାନ୍ତୀ ଜନ୍ମେ ଲୋମଶ ନିଜ ଆଶ୍ରମ ଗମନେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ମାଘସ୍ନାନ ଫଳ କଥନେ ନାମ ବିଂଶୋଽଧ୍ୟାୟ

—X—

# ଏକବିଂଶ ଅଧ୍ୟାୟ

## ଶ୍ରୀ ଭଗବାନୁବାଚ

କହନ୍ତି ଦେବକୀ ନନ୍ଦନ । ଶୁଣ ଉଦ୍ଧବ ଦେଇମନ ॥
ଏଡ଼େକ ମହିମା ଗଙ୍ଗାର । ତେଡ଼େ ପାତକୀ ହେଲେପାର ॥
ପୁରାଣ ସମ୍ପୂର୍ଣ୍ଣ ହୋଇଲା । ଆବର କଥାଏ ରହିଲା ॥
ତାହା କହିବା ତୋ ଅଗ୍ରତେ । ଶୁଣନ୍ତୁ ଦୃଢ଼ କରଚିତ୍ତେ ॥
ଲୋମଶ ବେଦ ନିଧି ଆଗେ । ଯେତେ କହିଲେ ଅନୁରାଗେ ॥
ସେକଥା ସ୍ୱରୂପ ଅଟଇ । ଶୁଣିଲେ ଦୁରିତ ନାଶଇ ॥
ବ୍ରାହ୍ମଣ ଦେବବ୍ରତ ଭଣି । ଶୁଣହେ ଛତ୍ର ନୃପମଣି ॥
ଯାହାର ଯେତେ ପାପ ଥାଏ । ଗଙ୍ଗା ଦର୍ଶନେ କ୍ଷୟଯାଏ ॥
ତୁ ଏବେ ଶୁଣସି ହୋ ରାଜା । ଗଙ୍ଗା ତୀର୍ଥକୁ ବେଗେ ଯାଯା ॥
ପ୍ରୟାଗ ଅଗମ୍ୟ ଅଟଇ । ସେଠାକୁ ନ ପାରିଲେ ଯାଇ ।
ନିକଟେ ଅଛି ଗଙ୍ଗାତୀର୍ଥ । ତହିଁକି ଚଳ ନରନାଥ ॥
ମାଘ ସ୍ନାହାନ ତହିଁକର । ଖଣ୍ଡିବ ସର୍ବପାପ ତୋର ॥
ଶୁଣି ପିଶାଚ କୃତ୍ୟାକୃତ୍ୟ । ବିପ୍ରକୁ କଲା ପ୍ରଣିପାତ ॥
ମେଲାଣି ମାଗି ତହୁଁ ଗଲା । ଗଙ୍ଗା ତୀର୍ଥରେ ପ୍ରବେଶିଲା ॥
ରହିଲା ସାହାଡ଼ା ବୃକ୍ଷରେ । ଚଳେସେ ନିଶି ପ୍ରଭାତରେ ॥
ଗଙ୍ଗା ଜଳରେ ନିତ୍ୟସ୍ନାନ । କରଇ ଶିବ ଦରଶନ ॥
ସହିଲା କ୍ଷୁଧା ତୃଷା ଦୁଃଖ । ମନରେ ନହୋଇ ବିମୁଖ ॥
ଏକେ ମକର ମାସ ଶୀତ । ହେମେ ଜଡ଼ିତ ହୁଏ ଗାତ୍ର ॥
ତହିଁକି ନକରଇ ଭୟେ । ଶୀତେ ଶରୀର କମ୍ପ ଥାଏ ॥
ଘଡ଼ଏ ରାତ୍ର ଥାଉଁ ଉଠି । ଜଳେ ବୁଡ଼ାଇ ଶିର ଗୋଟି ॥
ଏହି ପ୍ରକାରେ ପ୍ରତିଦିନ । ଗଙ୍ଗାରେ କରଇ ସ୍ନାହାନ ॥
ମକର ମାସ ଶେଷ ଯାଏ । ସ୍ନାହାନ କଲାକ ସେଠାଏ ॥
ଖଣ୍ଡିଲା ଗତ ଜନ୍ମ ପାପ । ଛାଡ଼ିଲା ପିଶାଚ ସ୍ୱରୂପ ॥
ତକ୍ଷଣେ ଦିବ୍ୟ ଦେହଧରି । ସାନନ୍ଦ ହେଲା ଦଣ୍ଡଧାରୀ ॥

---

ଦେବକୀ ନନ୍ଦନ — କୃଷ୍ଣ

ଗନ୍ଧର୍ବ ଯକ୍ଷ ବିଦ୍ୟାଧରୀ । ବିବିଧ ରଙ୍ଗେ ନୃତ୍ୟ କରି ॥
ଢାଳନ୍ତି ଆଲଟ ଚାମର । ବେଢ଼ି ଅଛନ୍ତି ସର୍ବପୁର ॥
ଅମର ଭୁବନକୁ ଗଲେ । ଦେବଙ୍କ ଆସ୍ଥାନେ ବସିଲେ ॥
କହନ୍ତି କମଳା ବିଳାସ । ଶୁଣ ଉଦ୍ଧବ ଦିବ୍ୟରସ ॥
ଚାରି ନୃପତି ମୋକ୍ଷ ହେଲେ । ସେ ଯାଇ ସ୍ୱର୍ଗରେ ବସିଲେ ॥
ଏଥୁ ଅନ୍ତରେ କଥା ଶୁଣ । କହିବା ତୋହର ଆଗେଣ ॥
ଲୋମଶ ବଚନ ବୋଲନ୍ତି । ଶୁଣହେ ବେଢ଼ ଋଷି ପତି ॥
ଚାଲ ସମସ୍ତେ ଆମ୍ଭେ ଯିବା । ପ୍ରୟାଗ ସ୍ନାହାନ କରିବା ॥
ଏମାନେ ଶାପରୁ ତରିବେ । ପିଶାଚ ସ୍ୱରୂପ ଛାଡ଼ିବେ ॥
ପାଇବେ ନିଜ କଳେବର । ଚାଲହେ ବିଳମ୍ବ ନକର ॥
ସମସ୍ତେ ସନମତ କଲେ । ପ୍ରୟାଗ ତୀର୍ଥକୁ ଚଳିଲେ ॥
ଲୋମଶ ବେଦନିଧି ଋଷି । ଆବର ପଞ୍ଚ ଶୁଭ୍ରକେଶୀ ॥
ଅଗ୍ନିକା ସହ ଆଠଜଣ । ମିଳିଲେ ପ୍ରୟାଗ ତୀର୍ଥେଣ ॥
ସେଦିନ ମକର ସଂକ୍ରାନ୍ତି । ଆସି ଅଛନ୍ତି ସର୍ବଯତି ॥
ବ୍ୟାସ ନାରଦ ମାରକଣ୍ଡ । ଶୁକ ଦୁର୍ବାସା ଛହିଁ ଚୁଣ୍ଡ ॥
ଅଗସ୍ତି ଭୃଗୁ ପରାଶର । ଅଙ୍ଗିରା ସଂସଙ୍କ ରୁଚିର ॥
କଣ୍ୱ କପିଳ ଧୂମ ଯତି । ଋଷ୍ୟ ଶୃଙ୍ଗହିଁ ଆସିଛନ୍ତି ॥
ବିଶ୍ୱାମିତ୍ରହିଁ ବାଲ୍ମୀକ । ଜନକ ଆଦି ଅଷ୍ଟବଙ୍କ ॥
ପୁଣିହିଁ ଭରଦ୍ୱାଜ ମୁନି । ସଙ୍ଗତେ ବହୁ ଋଷି ଘେନି ॥
ସମସ୍ତେ ଲୋମଶକୁ ଦେଖି । ମନେ ହୋଇଲେ ମହାସୁଖୀ ॥
ଯେଯାହା ମାନ୍ୟ ଧର୍ମକଲେ । କୁଶଳ ପୁଚ୍ଛାପୁଚ୍ଛି ହେଲେ ॥
ରହିଲେ ତୋଷମନ ହୋଇ । ବଞ୍ଚିଲେ ଫଳ ମୂଳ ଖାଇ ॥
ସମସ୍ତେ ପ୍ରୟାଗର ତୀର୍ଥେ । ସ୍ନାହାନ କଲେ ଯେଝା ମତେ ॥
ପିଶାଚ ପିଶାଚୁଣୀ ଯାଇ । ସେମାନେ ସ୍ନାନକଲେ ତହିଁ ॥
ଲୋମଶ ବୋଇଲେକ ଗୀର । ଶୁଣ ସକଳ ମୁନିବର ॥
ଏଥିରେ ପୂର୍ବେ ଦେବକାଶୀ । ମାଘ ସ୍ନାହାନ କଲେ ଆସି ॥
ତେଣୁ ସେମାନେ ଧର୍ମପାଇ । ଅଛନ୍ତି ଅଜରାମର ହୋଇ ॥
ହୋଇଲେ ଅତି ବଳୀୟାର । ମାଇଲେ ତ୍ରିପୁର ଅସୁର ॥
ରୂପ ଦିଶିଲା ଅତି ଶୋଭା । ହୋଇଲେ ପାର୍ବତୀଙ୍କୁ ବିଭା ॥

---

ଦଣ୍ଡଧାରୀ — ରାଜା

ଜାଣନା ପୂର୍ବେ ବେଦପଣ୍ଡ । ମାଘ ସ୍ନାହାନ କଲେ ଏଥି ॥
ହୋଇଲେ ବ୍ରହ୍ମାଣ୍ଡ କରତା । ଜଗତ ଜନଙ୍କର ପିତା ॥
ଏହି ତୀର୍ଥରେ ଭଗବାନ । ଆସିଣ କଲେ ମାଘସ୍ନାନ ॥
ତେଣୁଟି ଲକ୍ଷ୍ମୀକୁ ପାଇଲେ । କମଳା ପତି ବୋଲାଇଲେ ॥
ଏସନ ଶୁଣି ସର୍ବ ଋଷି । ତୀର୍ଥକୁ ବହୁତ ପ୍ରଶଂସି ॥
ମାଘ ସ୍ନାହାନ କରିସାରି । ଯାଇ ଦେଖିଲେ ତ୍ରିପୁରାରି ॥
ସେ ରୁଦ୍ରନାମ ଶଙ୍କରଙ୍କ । ତାହାଙ୍କ ମହିମା ଅନେକ ॥
ତାଙ୍କୁ ଯେ ଦର୍ଶନ କରଇ । ସେ ସର୍ବ ଦୁରିତ ହରଇ ॥
ତାହାଙ୍କୁ ଦର୍ଶନ କରିଣ । ଅଇଲେ ସର୍ବ ଋଷିଗଣ ॥
ଚଞ୍ଚଳ ଚିତ୍ତ ସ୍ଥିରକରି । ଧ୍ୟାନେ ବସିଲେ ତପସ୍ବୀ ॥
ଗୋବିନ୍ଦ ପାଦେ ମନଦେଇ । ତପ ସାଧିଲେ କଷ୍ଟସହି ॥
ତିନି ଦିବସ ଏପ୍ରକାରେ । କରନ୍ତି ସର୍ବ ମୁନିବରେ ॥
ମକର ମାସକ ରହିଲେ । ସ୍ନାହାନ ପ୍ରୟାଗରେ କଲେ ॥
ଅଧିକ ବିକାଶିଲା ପୁଣ୍ୟ । ସିଦ୍ଧ ହୋଇଲା ତପମାନ ॥
ପିଶାଚ ପିଶାଚୁଣୀ ମାନେ । ସ୍ନାହାନ କଲେ ସେହିସ୍ଥାନେ ॥
ସେମାନେ ପାଇଲେ କାରଣ । ପାପୁଁ ହୋଇଲେ ପରିତ୍ରାଣ ॥
ଛାଡ଼ିଲେ ପିଶାଚ ଶରୀର । ପାଇଲେ ନିଜ କଳେବର ॥
ରୂପ ସହସ୍ର ଗୁଣେବଳି । ସୁନ୍ଦର ଦିଶିଲେକ ବାଳୀ ॥
ଅଗ୍ନିକା ମହା ଶୋଭାପାଏ । ଦିଶଇ କାମଦେବ ପ୍ରାୟେ ॥
ମନରେ ଆନନ୍ଦ ହୋଇଲା । ପିତାଙ୍କୁ ନମସ୍କାର କଲା ॥
କଲ୍ୟାଣ ବେଦନିଧି କଲେ । ପୁତ୍ରଙ୍କୁ ଗୃହିଁଣ ବୋଇଲେ ॥
ଲୋମଶ ଋଷିଙ୍କ ପ୍ରସାଦେ । ମୁକତ ହେଲେ ଅପ୍ରମାଦେ ॥
ତାହାଙ୍କୁ ନମସ୍କାର ହୁଅ । ଚରଣେ ଗଡ଼ିଯାଇ ଶୁଅ ॥
ଶୁଣି ଅଗ୍ନିକା ବେଗେଗଲେ । ନମିଲେ ମୁନି ପାଦତଳେ ॥
କଲ୍ୟାଣ କଲେ ମୁନିବର । ଆରୋଗ୍ୟ ହେଉ ତୋ ଶରୀର ॥
ପଞ୍ଚ କନ୍ୟାଏ କରଯୋଡ଼ି । ଲୋମଶ ଚରଣରେ ପଡ଼ି ॥
କଲ୍ୟାଣ କଲେ ମହାଯତି । ଉଠ ଅପୂର୍ବ ରୂପବତୀ ॥
ତୁମ୍ଭଙ୍କୁ କଲ୍ୟାଣ କରିବା । ଦେଇଣ ଅଗ୍ନିକାକୁ ବିଭା ॥
ଶୁଣି ଯୁବତୀମାନେ ତୋଷ । ଅଗ୍ନିକା ମନରେ ହରଷ ॥

---

ଦୁରିତ — ପାପ

ସେସ୍ଥାନେ ଯେତେ ଋଷିଥିଲେ । ଅଗ୍ନିକ ନମସ୍କାର କଲେ ॥
କଲ୍ୟାଣ କଲେ ତପଶୀଳେ । ଥାଅରେ ବାଳକ କୁଶପ୍ରେ ॥
ଯୋଗେଣ ମହାତପୀ ହୁଅ । ପରମ ବ୍ରହ୍ମ ଭେଟ ପାଅ ॥
ପଞ୍ଚ କନ୍ୟାଏ ପୁଣ ଗଲେ । ଋଷିମାନଙ୍କୁ ଓଳଗିଲେ ॥
କଲ୍ୟାଣ କଲେ ସର୍ବଯନ୍ତ । ପ୍ରାପତ ହୁଅ ଦିବ୍ୟପତି ॥
ସ୍ୱାମୀର ସଙ୍ଗଭାଗୀ ହୁଅ । ଶୁଭେଣ ଦିନକାଳ ନିଅ ॥
ଲୋମଶ ବୋଲନ୍ତି ବଚନ । ଶୁଣ ସକଳ ତପୀଗଣ ॥
ଏହାଙ୍କୁ ବିଭା କରାଇବା । କନ୍ୟାଙ୍କ ବାଞ୍ଛା ପୂରାଇବା ॥
ସଂସାରେ ଆମ୍ଭ କୀର୍ତ୍ତି ଥାଉ । ଋଷିଏ ବୋଇଲେ ତା ହେଉ ॥
ବୋଇଲେ ଖୋଜ ଭଲଦିନ । କରିବା ବିବାହ ବିଧାନ ॥
ନାରଦ ବୋଇଲେ କହିବା । ହୋଇବ ଯେଉଁଦିନ ବିଭା ॥
କୁମ୍ଭ ଶୁକ୍ଳ ଏକାଦଶୀ । ପଡ଼ୁଛି ବିଭାଲଗ୍ନ ଆସି ॥
ସେଦିନ ତୁମ୍ଭେ ବିଭାକର । ଏଥିରେ ବିଳମ୍ବ ନକର ॥
ସମସ୍ତେ ସନମତ କଲେ । ଏକଥା ଯୋଗାଇ ବୋଇଲେ ॥
ଏମନ୍ତେ କେତେଦିନ ଗଲା । ବିବାହ ଲଗ୍ନ ପ୍ରବେଶିଲା ॥
ଆପଣେ ବେଦନିଧି ଯାଇ । ବିବାହ ବିଧାନ ଭିଆଇ ॥
ପଞ୍ଚ କନ୍ୟାଙ୍କ ତାତମାତ । ପାଶକୁ ପଠାଇଲେ ଦୂତ ॥
ଯେସନେ ବାରତା ପାଇଣ । ଆସି ମିଳିଲେ ତତକ୍ଷଣ ॥
ବେଦ ସ୍ୱସ୍ତ୍ୟାଦି କରାଇଲେ । ଶ୍ରୀଫଳ ଘୃତ ଅଣାଇଲେ ॥
ପୁଷ୍ପ ତଣ୍ଡୁଳ ଦୁର୍ବାକ୍ଷତ । ଆଣିଲେ ନବତନ ବସ୍ତ୍ର ॥
ଅଗ୍ନିକା ପରବେଶ ହୋଇ । ବେଦିରେ ବସିଲେକ ଯାଇଁ ॥
ପଞ୍ଚ ଯୁବତୀ କନ୍ୟା ବେଶେ । ବସିଲେ ଅଗ୍ନିକାର ପାଶେ ॥
ବରର ପାଞ୍ଚଟି ଆଙ୍ଗୁଳି । ଧରି ଅଛନ୍ତି ପଞ୍ଚବାଳୀ ॥
ସମସ୍ତେ ବେଢ଼ିଣ ବସିଲେ । ନାରଦ ବିଭାବାକ୍ୟ କଲେ ॥
କୁଶ ବନ୍ଧନ ନେଇକଲେ । ଯୁବତୀ ଅର୍ଦ୍ଧ୍ୟସ୍ଥାଳୀ ଦେଲେ ॥
ବନ୍ଧାନ୍ତି ଦେଇ ହୁଳହୁଳି । ମଥା ପୋଛଣ ଛନ୍ତି ବାଳୀ ॥
ଅଗ୍ନି ମୁଖରେ କଲେ ହୋମ । ସାରିଲେ ବିଭା ବିଧିମାନ ॥
ତକ୍ଷଣେ ଫେଇ କୁଶଗଣ୍ଠି । ସେଠାରୁ ବର କନ୍ୟା ଉଠି ॥
ସବୁ ଋଷିଙ୍କ ପାଦତଳେ । ବର କନ୍ୟାଯେ ଓଳଗିଲେ ॥

---

ତଣ୍ଡୁଳ — ଚାଉଳ, ଦୁର୍ବାକ୍ଷ — ଦୁବ ଓ ଅକ୍ଷତ ମିଶିକରିଥାଏ

କଲ୍ୟାଣ କଲେ ମୁନିଗଣ । ସୁଖେଣ ଥାଅ ଛଅଜଣ ॥
ବେଦ ନିଧିଙ୍କି ଡାକକରି । ବୋଲନ୍ତି ସର୍ବ ତପଗୁରି ॥
ଯାଅହେ ପୁତ୍ର ବଧୂ ଘେନି । ଯାଆନ୍ତୁ କନ୍ୟାଙ୍କ ଜନନୀ ॥
ଭୁଞ୍ଜିତ ଗଲେ ଆମ୍ଭେ ପିବୁ । ଆଜ୍ଞା କମ୍ପାଇଁ ଏଥିଥିବୁ ॥
ସାନନ୍ଦ ବେଦନିଧି ଶୁଣି । ମୁନିଙ୍କୁ ମାଗିଲେ ମେଲାଣି ॥
ହାଣ୍ଡୋଳା ମାନଙ୍କେ ବସାଇ । ପୁତ୍ର ବଧୂଙ୍କୁ ଘେନିଯାଇ ॥
ଆନନ୍ଦେ ପୁରରେ ପ୍ରବେଶ । ହୋଇଣ ରହିଲେ ହରଷ ॥
ଶୁଣହେ ଏଥୁ ଅନନ୍ତରେ । ମୁନିଏ ଥିଲେ ପ୍ରୟାଗରେ ॥
ଯେ ଯାହା ଆଶ୍ରମକୁ ଗଲେ । ପୂର୍ଣିହ୍ନି ତପ ଆଶ୍ରେକଲେ ॥
ଲୋମଶ ତାହୁଁ ଗଲେ ଚଳି । ମେରୁ ଶିଖରେ ଯାଇଁମିଳି ॥
କହନ୍ତି ପୁରୁଷ ଉତ୍ତମ । ଶୁଣ ଉଦ୍ଧବ ଦେଇମନ ॥
ଦେଖ ପିଶାଚ ହୋଇଥିଲେ । ମାଘ ସ୍ନାହାନେ ମୋକ୍ଷ ହେଲେ ॥
ଉଦ୍ଧବ ହେତୁ କରିଥିବୁ । ମାଘ ସ୍ନାହାନ ନ ଛାଡ଼ିବୁ ॥
ସଂସାରେ ଯେତେ ବ୍ରତ କରି । ଏଥକୁ କେହୁ ନୁହେଁ ସରି ॥
ଏ ମାଘ ମହାତମ ଗ୍ରନ୍ଥ । ଶୁଣିଲେ ହୋଇବ ମୁକତ ॥
ଦରିଦ୍ର ଯଦ୍ୟପି ଶୁଣଇ । ଅବଶ୍ୟ ଧନବନ୍ତ ହୋଇ ॥
ଯେଅବା ଅପୁତ୍ରିକ ପ୍ରାଣୀ । ସେ ଯେବେ କର୍ଣ୍ଣପଥେ ଶୁଣି ॥
ନଷ୍ଟପୁତ୍ର ଲଭନ୍ତି ସନ୍ତତି । ପୁଣି ନଥାଇ ଯମଭୀତି ॥
ରୋଗୀ ଶୁଣିଲେ ଏ ଚରିତ । ରୋଗରୁ ହୁଅନ୍ତି ମୁକତ ॥
ଉଦ୍ଧବେ କହେ ଗୋପୀନାଥ । ଭଣେ ନୃସିଂହ ଦାସ ସୁତ ॥
ପାମର କୃଷ୍ଣ ଦାସ କହି । ହରି କରିବେ ମୋତେ ହାହି ॥
ସୁଜନେ କର ଏହି ବ୍ରତ । ଶତେ ତେତିଶେ ସମାପତ ॥

ଇତି ଶ୍ରୀ ମାଘମାହାତ୍ମ୍ୟେ ମହାପୁରାଣେ ଉତ୍ତର ଖଣ୍ଡେ ଉଦ୍ଧବ ସମ୍ବାଦେ ମାଘସ୍ନାନ ଫଳ କଥନେ ପିଶାଚ ପିଶାଚୀ ମୋକ୍ଷଣେ ଅଗ୍ନିକା ପଞ୍ଚକନ୍ୟା ସହ ବିବାହେ ଲୋମଶାଦି ନିଜ ଆଶ୍ରମେ ଗମନେ ନାମ ଏକତ୍ରିଂଶୋଽଧ୍ୟାୟଃ

—×—

---

ହାଣ୍ଡୋଳା — ସବାରି